ଜାତୀୟ ଜୀବନଚରିତ ମାଳା

# ହରେକୃଷ୍ଣ ମହତାବ

ସୌରୀବନ୍ଧୁ କର



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ସୂଚୀ

# ଭୂମିକା

ବହୁମୁଖୀ ପ୍ରତିଭାର ଅଧିକାରୀ ଡକ୍ଟର ହରେକୃଷ୍ଣ ମହତାବଙ୍କର ଜୀବନୀ ରଚ଼ନା କରିବା କଷ୍ଟସାଧ୍ୟ ଓ ଆୟାସସାଧ୍ୟ । ସେ ଭାରତର ସ୍ୱାଧୀନତା ସଂଗ୍ରାମରେ ପ୍ରମୁଖ ସଂଗ୍ରାମୀ ଭାବେ ଅଗ୍ରଗଣ୍ୟ । ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବା ନେତୃମଣ୍ଡଳୀଙ୍କ ମଧ୍ୟରେ ମହତାବ ଥିଲେ ସବା ଆଗ ଧାଡ଼ିର ନେତା । ଗୋପବନ୍ଧୁଙ୍କ ପରେ ଓଡ଼ିଶାରେ କଂଗ୍ରେସକୁ ନେତୃତ୍ୱ ଦେଇ ସ୍ୱାଧୀନତା ସଂଗ୍ରାମକୁ ସଫଳତାର ସହ ପରିଚାଳନା କରିବାର ଦାୟିତ୍ୱ ଥିଲା ମହତାବଙ୍କର ।

ଛାତ୍ର ଜୀବନରୁ ସ୍ୱାମୀ ବିବେକାନନ୍ଦଙ୍କ ଆଦର୍ଶରେ ବିଶ୍ୱାସ ରଖିଥିବା ମହତାବ ଦେଶ ଓ ଜାତି ପାଇଁ ନିଜକୁ ଉତ୍ସର୍ଗ କରବା, ତାଙ୍କ ବଳିଷ୍ଠ ଦେଶପ୍ରେମର ନିଦର୍ଶନ । ଗାନ୍ଧୀ ଓ ଗାନ୍ଧୀ ଦର୍ଶନର ଏକାନ୍ତ ଅନୁରକ୍ତ ମହତାବ ସତ୍ୟାଗ୍ରହ ଓ ଅସହଯୋଗକୁ ଆୟୁଧ କରି, ନିଜ ଜୀବନକୁ ପରଚାଳିତ କରିବା ସହିତ ସାମଗ୍ରିକ ଜୀବନ ସହିତ ଯେ ସମପରିମାଣରେ ମିଶାଇ ପାରିଥିଲେ, ତାହା ତାଙ୍କ ବ୍ୟକ୍ତିତ୍ୱ ଓ ନେତୃତ୍ୱର ବଳିଷ୍ଠ ଦିଗକୁ ସୂଚ଼ିତ କରେ ।

ନ୍ୟାସନାଲ ବୁକ୍ ଟ୍ରଷ୍ଟ ଦ୍ୱାରା ଉଦ୍ଦିଷ୍ଟ ହୋଇ ଶ୍ରୀ ମହତାବଙ୍କ ପରି ଏକ ମହାନ ବ୍ୟକ୍ତିଙ୍କର ଜୀବନୀ ଲେଖିବା ବେଳେ, ଯେପରି ଗଭୀର ପ୍ରସ୍ତୁତି ଓ ଅନୁଧ୍ୟାନ ଆବଶ୍ୟକ, ତାହା ମୋ ପାଇଁ ଥିଲା ଅତ୍ୟନ୍ତ ଦୁରୂହ । ଅବଶ୍ୟ ଏକଥା ସତ୍ୟ ଯେ ମହତାବଙ୍କ ସଂପର୍କରେ ଅନେକ ପୁସ୍ତକ ପ୍ରକାଶିତ ହୋଇଛି । କିନ୍ତୁ ତାଙ୍କ ବ୍ୟକ୍ତିତ୍ୱର ସାମଗ୍ରିକ ମୂଲ୍ୟାଙ୍କନ ହୋଇ ନାହିଁ । ଶ୍ରୀ ମହତାବଙ୍କ ପରେ ଓଡ଼ିଶାରାଜନୀତିରେ ତାଙ୍କ ସହିତ ସହକର୍ମୀ ଭାବରେ କାର୍ଯ୍ୟ କରିବା ତଥା ବିଭିନ୍ନ ନେତାମାନଙ୍କର ଆତ୍ମଜୀବନୀ ଓ ଜୀବନୀ ପ୍ରକାଶ ପାଇ ଥିବାରୁ କିଛିଟା ତୁଳନାତ୍ମକ ବିଚାର ପ୍ରକାଶ କରିବା ସମ୍ଭବ ହୋଇଛି ।

ଭୁବନେଶ୍ୱରକୁ ୧୯୬୪ ମସିହାରେ ଆସିବା ପରଠାରୁ ତାଙ୍କୁ ମୁଁ ଦୂରରୁ ଓ ନିକଟରୁ ଦେଖିବାର ସୌଭାଗ୍ୟ ଲାଭ କରିଥିଲି ଏବଂ ତାଙ୍କ ବ୍ୟକ୍ତିତ୍ୱ ପ୍ରତି ମୋର ଅଗାଧ ସମ୍ମାନ ଓ ଶ୍ରଦ୍ଧା ରହିଥିଲା ଏବଂ ଏ ପର୍ଯ୍ୟନ୍ତ ତାହା ମଧ୍ୟ ଅତୁଟ ରହିଛି । ଆଜି ଆମେ ଯେଉଁ ଓଡ଼ିଶାରେ ବାସ କରୁଛୁ, ତାହା ମହତାବଙ୍କର ଅବଦାନ ବୋଲି ମୁଁ ବିଚାର କରେ । ଗଡ଼ଜାତ ରାଜ୍ୟମାନଙ୍କର ଆମ ପ୍ରଦେଶ ସହିତ ମିଶ୍ରଣରେ ତାଙ୍କର ବଳିଷ୍ଠ ଅବଦାନକୁ ଏ ଜାତି ଚିରଦିନ ମନେ ରଖିବ ।

ନ୍ୟାସନାଲ ବୁକ୍ ଟ୍ରଷ୍ଟ ଯେତେବେଳେ ମୋତେ ତାଙ୍କ ଜୀବନୀ ଲେଖିବାର ଦାୟିତ୍ୱ ଦେଲେ, ମୁଁ ନିଜକୁ ଅଶେଷ ଗୌରବାନ୍ୱିତ ମନେ କଲି ଯଦିଓ ଏହାକୁ ଲେଖିବା ଥିଲା ମୋ

ସାମର୍ଥ୍ୟର ବାହାରେ । ବହୁଲୋକ ଯଦି ବିଭିନ୍ନ ଭାବରେ ଓ ବିଭିନ୍ନ ଢଙ୍ଗରେ ଜଣେ ମହାନ୍ ବ୍ୟକ୍ତିଙ୍କର ଜୀବନକୁ ଆକଳନ କରନ୍ତି, ତେବେ ସେହି ବ୍ୟକ୍ତି ବିଶେଷଙ୍କର କାର୍ଯ୍ୟ ଓ ବ୍ୟକ୍ତିତ୍ୱର ଉଦ୍ଦେଶ୍ୟ ସଂପର୍କରେ ଏକ ନିର୍ଭୁଲ ବିଚାର ପ୍ରକାଶ ପାଇବ । ବର୍ତ୍ତମାନର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଅବସ୍ଥାରେ ମହତାବଙ୍କର ଚିନ୍ତା ଓ କାର୍ଯ୍ୟକୁ ଅଧିକ ଯତ୍ନଶୀଳ ଭାବରେ ଅଧ୍ୟୟନ ଓ ଅନୁଶୀଳନ କରିବାର ଆବଶ୍ୟକତା ରହିଛି । ସେହି ଦୃଷ୍ଟିକୁ ଆଖି ଆଗରେ ରଖି ମୋର ସୀମିତ ଜ୍ଞାନ ଓ ବିଚାରକୁ ମୁଁ ଏହି ପୁସ୍ତକରେ ପ୍ରୟୋଗ କରିବାକୁ ଚେଷ୍ଟା କରିଛି ।

ପାଣ୍ଡୁଲିପିକୁ ପଢ଼ି ଏଥିରେ କିଛି ସଂଶୋଧନ କରିବାକୁ ସୁଚିନ୍ତିତ ପରାମର୍ଶ ଦେଇଥିବାରୁ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପ୍ରଫେସର ମନୋରଂଜନ ମହାନ୍ତିଙ୍କ ପ୍ରତି ମୁଁ କୃତଜ୍ଞ । ମୋର କୃତଜ୍ଞତା ନ୍ୟାସନାଲ ବୁକ୍ ଟ୍ରଷ୍ଟର ପୂର୍ବତନ ଅଧ୍ୟକ୍ଷ ବିଶିଷ୍ଟ କବି ଶ୍ରୀ ସୀତାକାନ୍ତ ମହାପାତ୍ରଙ୍କୁ ଯାହାଙ୍କର ଦୃଢ଼ ନିଷ୍ପତ୍ତି ଫଳରେ ଏହି ଜୀବନୀଟି ପ୍ରକାଶ କରିବାର ଦାୟିତ୍ୱ ମୋତେ ଦିଆଗଲା । ପ୍ରଜାତନ୍ତ୍ର ପ୍ରଚାର ସମିତିର ଅଧ୍ୟକ୍ଷ ଶ୍ରୀ ଭର୍ତ୍ତୃହରି ମହତାବ ଓ ମହତାବ ଫାଉଣ୍ଡେସନ୍‌ର ସଂପାଦକ ଶ୍ରୀ ନୃସିଂହ ଚରଣ ସାହୁଙ୍କ ପରାମର୍ଶ ଓ ସାହାଯ୍ୟ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆର ମାନସ ରଂଜନ ମହାପାତ୍ର ଓ ଡକ୍ଟର ପ୍ରମୋଦ ସରଙ୍କର ବାରମ୍ବାର ଅନୁରୋଧ ଫଳରେ ବିଳମ୍ବ ସତ୍ତ୍ୱେ ଏହା ଲେଖି ଶେଷ କରିବା ମୋ ଦ୍ୱାରା ସମ୍ଭବ ହୋଇଛି । ଏହି ପୁସ୍ତକଟି ପାଠକମାନଙ୍କର ସଶ୍ରଦ୍ଧ ବିଚାର ପାଇଁ ଛାଡ଼ି ଦେଉଛି ।

– ଗୌରୀବନ୍ଧୁ କର

1

# ପ୍ରାକ୍‌ଭାଷ

ଗଙ୍ଗା, ଯମୁନା ଓ ସରସ୍ୱତୀଙ୍କ ତ୍ରିଧାରା ମିଳନରେ ପ୍ରୟାଗର ସଂଗମ କ୍ଷେତ୍ର ଭାରତୀୟ ଜନଜୀବନର ତୀର୍ଥକ୍ଷେତ୍ର ହେବାପରି, ଡକ୍ଟର ହରେକୃଷ୍ଣ ମହତାବଙ୍କଠାରେ ସାହିତ୍ୟ, ସଂସ୍କୃତି ଓ ରାଜନୀତିର ମିଳନ ଘଟି ତାଙ୍କୁ ପୁଣ୍ୟାତ୍ମା ଗୌରବରେ ଗୌରବାନ୍ୱିତ କରିଛି । ନିର୍ଯ୍ୟାତିତ ନିଷ୍ପେସିତ ଓ ନିଃସହାୟ ଜନଗଣଙ୍କୁ ଏକତ୍ରିତ କରି ସଂଗ୍ରାମ ଦିଗରେ ଆଗେଇ ନେବାର ଦାୟିତ୍ୱ କେତେକ ଆପଣା ଛାଏଁ ଆପଣାର କରିନିଅନ୍ତି । କାରଣ ସେମାନେ ଜାଣନ୍ତି ଏହି ସଂସାର କାହାକୁ ଖୋଲାହାତରେ ସ୍ୱାଗତ କରେ ନାହିଁ । କିନ୍ତୁ ଯେଉଁମାନେ ସଂଘର୍ଷ କରିବାକୁ ଅଣ୍ଟାଭିଡ଼ି ବାହାରନ୍ତି, ସେମାନଙ୍କୁ ସଂସାରର ଲୋକମାନେ କୋଳାଗ୍ରତ କରନ୍ତି ।

ଡକ୍ଟର ହରେକୃଷ୍ଣ ମହତାବଙ୍କ ସଂଘର୍ଷମୟ ଜୀବନ, ମାନବ ଜାତିକୁ ବିଶେଷ କରି ଓଡ଼ିଶାର ସାଧାରଣ ଲୋକମାନଙ୍କୁ ଏକତ୍ର କରି ସ୍ୱାଧୀନତା ସଂଗ୍ରାମାଭିମୁଖୀ କରାଇବା ଓ ଜାତି ଗଠନରେ ମଣିଷମାନଙ୍କୁ ତିଆରି କରି ରାଷ୍ଟ୍ରଗଠନରେ ସ୍ୱକୀୟ ଭୂମିକା ନିଭାଇବା କେବଳ ଏକ ଐତିହାସିକ ଦସ୍ତାବିଜ ନୁହେଁ ବରଂ ଏକ ଜ୍ୱଳନ୍ତ ଅନୁଷ୍ଠାନର ପ୍ରତୀକ ହୋଇଯାଇଛି ।

ମହତାବଙ୍କ ଜୀବନ ଆଶା, ଆଶ୍ୱାସନା ଓ ଆତ୍ମବିଶ୍ୱାସର ଏକ ତ୍ୟାଗପୂତ ଜୀବନ । ଏହି ଜୀବନ ସଂପର୍କରେ ଲେଖିବା ଦୁରୂହ ଓ ଆୟାସସାଧ୍ୟ । କିନ୍ତୁ ଏହା ପ୍ରତ୍ୟେକ ବ୍ୟକ୍ତିର ଚିନ୍ତା ଓ ଚେତନାରେ ପ୍ରଭାବ ପକାଏ ଯଦିଓ ସେ ହୋଇଯାଇଛନ୍ତି ଇତିହାସ ।

ଜୀବନୀ ସାହିତ୍ୟ ବଡ଼ ବିଚିତ୍ର । ବିଶେଷ କରି ସେହି ମହାନ୍ ପୁରୁଷମାନଙ୍କର ଜୀବନୀ ଯେଉଁମାନଙ୍କ ଜୀବନ ଦ୍ୱାରା ପ୍ରଭାବିତ ହୋଇ ସାଧାରଣ ମଣିଷଟିଏ ଅତ୍ୟୁଚ୍ଚ ଶିଖରରେ ପହଞ୍ଚିଥାଏ । କେତେକ ମହାପୁରୁଷଙ୍କ ଜୀବନୀ ଦ୍ୱାରା ପ୍ରଭାବିତ ହୋଇ ମହତାବଙ୍କ ଜୀବନ ଯେପରି ସେଇ ଛାଞ୍ଚ ଓ ଢାଞ୍ଚାରେ ଗଠିତ ହୋଇ ପାରିଲା ତାହା ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାକୁ ସାମାଜିକ, ରାଜନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ ଯୋଗ ଦେଇଥିବା ବ୍ୟକ୍ତି ବିଶେଷଙ୍କର ଜୀବନକୁ ପ୍ରଭାବିତ କରି ପାରିଥିଲା ।

୧୮୯୨ ମସିହା ନଭେମ୍ବର 21 ତାରିଖ ମଙ୍ଗଳବାର ଦିନ ବାଲେଶ୍ୱର ଜିଲ୍ଲାର ଅଗରପଡ଼ାରେ ତାଙ୍କର ଜନ୍ମ । ପିତାଙ୍କ ନାମ କୃଷ୍ଣ ଚରଣ ଦାସ ଓ ମା' ତୋହଫା ବିବି । ଅଗରପଡ଼ା ଜମିଦାର ଜଗନ୍ନାଥ ମହତାବ ନିଃସନ୍ତାନ ଥିବା ହେତୁ ହରେକୃଷ୍ଣ ସାତମାସ

ବୟସ ବେଳେ ତାଙ୍କ ଆଈ ଧନିବିବିଙ୍କର ପୋଷ୍ୟ ପୁତ୍ର ହୋଇ ଅଗରପଡ଼ାର ଜମିଦାର ହୋଇଥିଲେ ଏବଂ ଜମିଦାରିର ପରିଚାଳନା ଦାୟିତ୍ୱ ତାଙ୍କ ପିତା କୃଷ୍ଣଚରଣ ଦାସ ପରିଚାଳକ ଭାବେ ତୁଲାଇ ଥିଲେ ।

ଛାତ୍ରଜୀବନରେ ମହତାବ ସ୍ୱାମୀ ବିବେକାନନ୍ଦଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇଥିଲେ ଓ ତାହା ତାଙ୍କ ଜୀବନକୁ ସଂପୂର୍ଣ୍ଣଭାବେ ନିୟନ୍ତ୍ରିତ କରି ପରିଚାଳିତ କରିବାରେ ସାହାଯ୍ୟ କରିଥିଲା । ସେ ଏ ସଂପର୍କରେ ଉଲ୍ଲେଖ କରିଛନ୍ତି,"ଛାତ୍ରାବସ୍ଥାରେ ମୁଁ ଯେତେବେଳେ ଥାର୍ଡକ୍ଲାସରେ ପଢୁଥିଲି, ଭଦ୍ରକ ସବ୍‌ଡିଭିଜନର କେତେକ ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଲା । ଅନ୍ନଛତ୍ର ଖୋଲିବା ପାଇଁ ରାମକୃଷ୍ଣମିଶନର ସ୍ୱାମୀ ପୂର୍ଣ୍ଣାନନ୍ଦ ଆମ ଅଞ୍ଚଳକୁ ଯାଇ ଆମ ଘରେ କେତେ ମାସ ରହିଲେ । ସେ ମୋତେ ପ୍ରଥମେ ପଢ଼ିବା ପାଇଁ 'ଇମିଟେସନ ଅଫ୍ କ୍ରାଏଷ୍ଟ' ପୁସ୍ତିକା ଖଣ୍ଡିଏ ଦେଇଥିଲେ । ତାଙ୍କ ସଂପର୍କରେ ଆସି ମୁଁ ସ୍ୱାମୀ ବିବେକାନନ୍ଦ ଓ ଶ୍ରୀ ରାମକୃଷ୍ଣଙ୍କ ପ୍ରତି ଆକୃଷ୍ଟ ହୋଇଥିଲି । ଦରିଦ୍ର-ସେବା, ଅଦମ୍ୟ ସାହସ, ରଜୋଗୁଣର ତାଣ୍ଡବ, ଉଦ୍ଦୀପନା ଏସବୁ ସେତେବେଳେ ମୋ ମନକୁ ଏପରି ପ୍ରଭାବିତ କରିଥିଲା ଯେ ମୋର ମନେ ହୁଏ ବର୍ତ୍ତମାନ ସୁଦ୍ଧା ଯେପରି ମୁଁ ସେହି ପ୍ରେରଣା ଫଳରେ ଚାଲିଛି । ଏହି ସମୟରେ ବିବେକାନନ୍ଦଙ୍କର ସମସ୍ତ ଲେଖା ପଢ଼ିଥିଲି । କେତେକ ବୁଝିପାରୁଥିଲି ଓ କେତେକ ପାରୁନଥିଲି । ମାତ୍ର ସେ ଲେଖାସବୁ ମୋତେ ଯେପରି ଚାବୁକ୍ ଦେଇ ସାଧାରଣ ସେବା ଓ ଦେଶ କାମ ପ୍ରତି ଦୌଡ଼ାଉଥିଲା ପରି ବୋଧ ହେଉଥିଲା । ମ୍ୟାଟ୍ରିକୁଲେସନ୍ ପାଶ କଲା ବେଳକୁ ମୋର ମନ ନିର୍ଦ୍ଦିଷ୍ଟ ମାର୍ଗ ଧରି ଯାଇଥିଲା, ମାତ୍ର ଯେଉଁ ସବୁ କାରଣ ଅନେକ ସମୟରେ ମନୁଷ୍ୟକୁ କୌଣସି ସ୍ଥିରୀକୃତ ପନ୍ଥାରୁ ଅପସାରି ଥାଏ, ସେ କାରଣମାନ ମଧ୍ୟ ମୋ ପକ୍ଷରେ ଉପସ୍ଥିତ ଥିଲା ।"

ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ଦ୍ୱାରା ଉଦ୍‌ବୁଦ୍ଧ ଛାତ୍ର ମହତାବ ପରବର୍ତ୍ତୀ ସମୟରେ ତାଙ୍କରି ବାଣୀକୁ ଜୀବନର ଆଦର୍ଶ ଭାବେ ଗ୍ରହଣ କରିଥିଲେ । ତାଙ୍କର ବାଲ୍ୟ ଜୀବନର ଏକ ଦୁଃଖଦ ଘଟଣା ମଧ୍ୟ ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ପ୍ରତି ତାଙ୍କର ଅକୁଣ୍ଠ ଆଗ୍ରହ ଓ ଏକନିଷ୍ଠ ମନଯୋଗିତାକୁ ବଢ଼ାଇ ଦେଇଥିଲା । ଭଦ୍ରକ ହାଇସ୍କୁଲରେ ପ୍ରଥମ ଶ୍ରେଣୀରେ ପଢ଼ିବା ବେଳେ ତାଙ୍କର ଜନ୍ମଦାତ୍ରୀ ମା'ଙ୍କର ଦେହାନ୍ତ ହେଲା । ମା'ଙ୍କର ତାଙ୍କ ପ୍ରତି ମମତା ଏଇମିତି କ୍ଷଣିକ ମାତ୍ରରେ ଶେଷ ହୋଇଯିବ, ଏହା ଥିଲା ତାଙ୍କ କଳ୍ପନାର ବାହାରେ । ମାଆଙ୍କର ମୁହଁ ସଦାସର୍ବଦା ତାଙ୍କ ଆଖି ଆଗରେ ନାଚିବାକୁ ଲାଗିଲା । ଭଦ୍ରକ ଫେରିଯିବା ପରେ ମଧ୍ୟ ସେଇ ଅବସ୍ଥା । ସେହି ସମୟରେ ରାମକୃଷ୍ଣ ମିଶନର ସନ୍ନ୍ୟାସୀମାନଙ୍କର ସ୍ନେହପୂର୍ଣ୍ଣ କଥା ଓ ସ୍ୱାମୀ ବିବେକାନନ୍ଦଙ୍କର ବାଣୀ ତାଙ୍କ ଭିତରେ କିପରି ଶକ୍ତି ଓ ସାମର୍ଥ୍ୟ ଦେଇଥିଲା ତାହା ଉଲ୍ଲେଖ କରି ସେ କହିଥିଲେ, "ସେ ସମୟରେ ରାମକୃଷ୍ଣ ମିଶନର ସ୍ୱାମୀ ବ୍ରହ୍ମାନନ୍ଦ ଓ ସ୍ୱାମୀ ଶଙ୍କରାନନ୍ଦ ଭଦ୍ରକରେ କିଛିକାଳ ପାଇଁ ଅବସ୍ଥାନ କରୁଥାନ୍ତି । ନିୟମିତ ଭାବରେ ଏମାନଙ୍କ ପାଖକୁ ମୁଁ ଯାଉଥିଲି । ଏମାନେ ମୋତେ ବଡ଼ ସ୍ନେହ କରୁଥିଲେ ଓ ନାନା ପ୍ରକାର ଗଳ୍ପ କହୁଥିଲେ । କଥା ପ୍ରସଙ୍ଗରେ ସ୍ୱାମୀ ବ୍ରହ୍ମାନନ୍ଦ ମାୟାର ତତ୍ତ୍ୱ ବୁଝାଇଲେ । କିଏ କାହାର ମାତା, କିଏ କାହାର ପିତା, କିଏ କାହାର ବନ୍ଧୁ, ପରମାତ୍ମାଙ୍କର ସତ୍ତା ମାୟାରେ ଘେରା ଇତ୍ୟାଦି । ତାପରେ ସ୍ୱାମୀ ବିବେକାନନ୍ଦଙ୍କ ଲେଖା

ପଢ଼ି ମନ ଟିକିଏ ଆଶ୍ୱସ୍ତ ହେଲା । ତାକୁ ଏଡ଼ି ଅଗ୍ରସର ହେବାକୁ ହେବ । କେତେ ଦୁଃଖ ମନରେ ମାରିଦେବାକୁ ହେବ । କେତେକ ସୁଖର ଉଲ୍ଲାସ ମଧ୍ୟ ମନରେ ମାରିଦେବାକୁ ହେବ, ଅଗ୍ରସର ହେବାକୁ ହେବ ।"

ତାଙ୍କ ମା'ଙ୍କ ମୃତ୍ୟୁ ତାଙ୍କୁ ଯେଉଁ ଧକ୍‌କା ଦେଲା, ତାହା ତାଙ୍କ ମନରେ ବୈରାଗ୍ୟ ସହିତ ସଂସାରର ପ୍ରତିବନ୍ଧକକୁ ସାମନା କରିବାର ସଂକଳ୍ପକୁ ଦ୍ୱିଗୁଣିତ କଲା ଏବଂ ବିବାହ ପ୍ରସ୍ତାବ ଯେତେବେଳେ ଆସି ପହଞ୍ଚିଲା, ସେତେବେଳେ ମନରେ ତାଙ୍କର ସୃଷ୍ଟି ହେଲା ଦ୍ୱନ୍ଦ୍ୱ ।

"ବିବେକାନନ୍ଦଙ୍କର ପ୍ରେରଣା, ଦେଶ ପାଇଁ କାମ କରିବାର ପ୍ରବଳ ଇଚ୍ଛା, ସାଧାରଣ ଜୀବନ ପରିବର୍ତ୍ତେ ଆଉ କିଛି ଭିନ୍ନ ରକମର ଜୀବନଯାପନ କରିବା ଏସବୁ ଯେ ମନରେ ଭରି ଯାଇଥିଲା, ତାହା କଅଣ ନଷ୍ଟ ହୋଇଯିବ ? ସାମାନ୍ୟ ଟିକିଏ ଇଂରାଜୀ ପଢ଼ି ଘରେ ବସି ଜମିଦାରଟିଏ ହୋଇ ରହିବି, ଏହା ମୋତେ ଏତେ ବ୍ୟସ୍ତ କରି ଦେଲା ଯେ ଏଥିରେ ମଧ୍ୟ ଟିକିଏ ବ୍ୟାଘାତ ଘଟିଲା ।" ମନରେ ଆଶା, ଆଶଙ୍କା ଓ ଆବେଗ ମଧ୍ୟରେ ବିବାହ ହୋଇଥିଲା ସୁଭଦ୍ରାଦେବୀଙ୍କ ସହିତ ଏବଂ ସେହି ବିବାହ ସଂପର୍କରେ ମହତାବଙ୍କର ଧାରଣା ଥିଲା, "ଜୀବନଯାକ ମୋ ସହିତ ବନ୍ଧା ହେଲୁ, ତୋତେ ମୁଁ କାନ୍ଧରେ ନେଇ ଚ଼ାଲିବି, ତୋତେ ସୁଖୀ କରିବା ପାଇଁ ଚେଷ୍ଟା କରିବି, ମାତ୍ର ମୋ ସହିତ ବୋଧହୁଏ ତୋ ଜୀବନ ସୁଖୀ ହେବ ନାହିଁ ।"

ବିବାହ ବନ୍ଧନରେ ବାନ୍ଧି ହେବା ସତ୍ତ୍ୱେ ଛାତ୍ର ମହତାବ ମାଟ୍ରିକ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାଶ୍ କଲେ । ଜମିଦାରୀ କାମ ମଧ୍ୟରେ ମନ ବୁଡ଼ାଇ ରହିଯିବା ପାଇଁ ତାଙ୍କ ଘରେ ବାବା ଓ ସ୍ତ୍ରୀଙ୍କର ଦୃଢ଼ ମତ ରହିଥିଲା । କିନ୍ତୁ ଛାତ୍ର ଜୀବନରୁ ଦେଶ ଓ ଦେଶର ସେବା କରିବା ପାଇଁ ମାନସିକ ଭାବରେ ଦୃଢ଼ତା ପ୍ରକାଶ କରୁଥିବା ମହତାବଙ୍କୁ ଜମିଦାରି ଓ ପରିବାର ବାନ୍ଧିରଖି ପାରିଲା ନାହିଁ ।

"ଏକମାତ୍ର ଝୁଙ୍କ ମୋର ଚ଼ାଲିଥାଏ ସାଧାରଣ ଗୃହସ୍ଥଠାରୁ ଆଉ ବେଶି କିଛି ହେବା । ସାଧାରଣଙ୍କର କିଛି ନା କିଛି ସେବା କରିବା । ଦେଶ କାମ କିଛି କରିବା । ମାତ୍ର ମୋର ବିଶ୍ୱାସ ଥାଏ ଯେ କଲେଜରେ ନ ପଢ଼ିଲେ ମୁଁ ଦେଶ କାମ କିଛି କରିପାରିବି ନାହିଁ ।"

ଏହି ତୀବ୍ର ମାନସିକ ସଂଘାତ ମଧ୍ୟରେ ମଫସଲର ଏକ ଖମାର ଘରେ ଅବସ୍ଥାନ କରୁଥିବା ତାଙ୍କ ବାବାଙ୍କୁ ଦେଖା କରି ସେ କଟକ ଯିବା କଥା କହିଲେ । ବାବାଙ୍କର ଅନିଚ୍ଛା ସତ୍ତ୍ୱେ କଲେଜରେ ଅଧ୍ୟୟନ କରି ଜମିଦାରି ପରିଚାଳନା କରିବା ପରିବର୍ତ୍ତେ ଦେଶସେବା ପରି ମହାନ୍ କାର୍ଯ୍ୟରେ ବ୍ରତୀ ହେବାର ଯେଉଁ ସଂକଳ୍ପ ସେ ନେଲେ, ତାହା ତାଙ୍କୁ ଓଡ଼ିଶା ବା ଭାରତର ପ୍ରମୁଖ ସ୍ୱାଧୀନତା ସଂଗ୍ରାମୀ ହେବା ସହିତ ନବ ଉତ୍କଳର ଜନ୍ମଦାତା ଭାବେ ଓଡ଼ିଆ ଜନମାନସରେ ଚିର ଉଜ୍ଜୀବିତ କରି ରଖିଲା । ସଂସାର ଭିତରେ ରହି ସଂଗ୍ରାମ କରି ନୂଆ ସଂସାର ଗଢ଼ିବାର କଳ୍ପନା ଯାହା ମହତାବଙ୍କୁ ବାଲ୍ୟକାଳରୁ ଘାରିଥିଲା, ତାହାର ପରିପ୍ରକାଶ ଘଟିଲା ତାଙ୍କର କଲେଜ ପଢ଼ିବା ପାଇଁ କଟକ ଯାତ୍ରାରୁ ।

**(କ) ସମକାଳୀନ ଅବସ୍ଥା :** "ରାତ୍ରୀ ଶେଷରେ ଅନ୍ଧକାର ଗର୍ଭରୁ ସୂର୍ଯ୍ୟର ଆଲୋକ ଯେତେବେଳେ ଦିଗ୍‌ବଳୟ ଭେଦକରି ଜନ୍ମଲାଭ କରେ, ସେତେବେଳେ ପ୍ରକୃତିର ଗର୍ଭ ବେଦନାରେ କି ଆଲୋଡ଼ନ ସୃଷ୍ଟି ନ ହୁଏ ! ନିରାଶାର ଉଦ୍‌ବେଗ ଓ ଅଧୀରତା ସେ ସମୟରେ ଅତି ତୀବ୍ର ହୁଏ । ପୁଣି ପ୍ରତ୍ୟୁଷର ଆଶ୍ୱାସନାରେ ଶାନ୍ତ ହୁଏ । ଶେଷ ରାତ୍ରୀ ଓ ପ୍ରତ୍ୟୁଷର ସନ୍ଧିକାଳ ହେଉଛି ପ୍ରାଚୀନର ଗର୍ଭରୁ ନୂତନର ଜନ୍ମ ମୁହୂର୍ତ୍ତ । 1920 ମସିହାଟି ହେଉଛି ଭାରତର ଜାତୀୟ ଜୀବନର ସେହିପରି ସନ୍ଧି ସମୟ । ଓଡ଼ିଶା ଇତିହାସରେ ମଧ୍ୟ ସେହି ବର୍ଷଟି ଘୋର ସନ୍ଧିମୟ ।"

ମହତାବଙ୍କ ନିଜ ଭାଷାରୁ ସେ ସମୟର ଅବସ୍ଥା ବୁଝାପଡ଼େ, ଯେତେବେଳେ ସେ ହୋଇଥାନ୍ତି କଟକଠାରେ ଥିବା ଏକମାତ୍ର କଲେଜ ରେଭେନ୍‌ସା କଲେଜର ଛାତ୍ର । ପ୍ରଥମ ବିଶ୍ୱଯୁଦ୍ଧର ଘନଘଟା ଓ ତା' ପ୍ରଭାବରେ ଆର୍ଥିକ ବିପର୍ଯ୍ୟୟ ସାଙ୍ଗକୁ ବିଦେଶୀ ଶାସନର ନିର୍ମମ ଅତ୍ୟାଚାର ଲାଗି ରହିଥାଏ । 'ପ୍ରତିରୋଧ'ର ଚିତ୍କାର ସର୍ବବ୍ୟାପୀ ହୋଇ ଉଠିଥାଏ । ଭାରତର ନୈରାଶ୍ୟ ମାନଚିତ୍ରରେ ଓଡ଼ିଶାର ନୈରାଶ୍ୟକୁ କିଏ ବା ଆକଳନ କରିବ ? ଓଡ଼ିଶା କହିଲେ କେଉଁଠି ଓ ସେଠାରେ କ'ଣ ଘଟୁଛି ବା ନଘଟୁଛି ଏହାକୁ ଜାଣିବାର କିଛି ଉପାୟ ନଥିଲା । 1816 ରେ ଘଟିଥିଲା ପାଇକ ବିଦ୍ରୋହ । ଇଂରେଜ ଶାସନ ତା ପରଠାରୁ ଅତ୍ୟନ୍ତ ଚତୁରତା ଓ ନିପୁଣତାର ସହିତ ଓଡ଼ିଶାର ଆର୍ଥନୀତିକ ଓ ସାମାଜିକ ମେରୁଦଣ୍ଡକୁ ଭାଙ୍ଗିବା ପାଇଁ ତାଙ୍କର ଚେଷ୍ଟା ଜାରି ରଖିଥାନ୍ତି ।

ମହତାବଙ୍କ ଭାଷାରେ, "ବଙ୍ଗ ଦେଶରେ ସ୍ଥାୟୀ ବନ୍ଦୋବସ୍ତ ପ୍ରଚଳନ କରି ଓ ଆଧୁନିକ ଶିକ୍ଷାର ବିସ୍ତାର କରି ଏକ ଶକ୍ତିଶାଳୀ ମଧ୍ୟବିତ୍ତ ଶ୍ରେଣୀ ସୃଷ୍ଟି କରିବାରେ ଇଂରେଜ ଶାସନ ଯେପରି ସହାୟକ ହୋଇଥିଲେ, ଓଡ଼ିଶାର ପାଞ୍ଚବର୍ଷିଆ ତିନିବର୍ଷିଆ ବନ୍ଦୋବସ୍ତ ପ୍ରଚଳନ କରି, ନିଷ୍କର ଜାଏଗିରି ସତ୍ତ୍ୱକୁ ସବୁ ଲୋପ କରିଦେଇ, ସୂର୍ଯ୍ୟାସ୍ତ ଆଇନ୍ ଜାରି କରି, କଲିକତାରେ ଜମିଦାରି ସବୁ ନିଲାମ କରିଦେଇ, ଲବଣ ଶିଳ୍ପକୁ ଧ୍ୱଂସ କରି ଓଡ଼ିଶାରୁ ମଧ୍ୟବିତ୍ତ ଶ୍ରେଣୀକୁ ସମୂଳେ ଲୋପ କରିଦେବାରେ ସେହିପରି ତତ୍‌କାଳୀନ ଶାସନ ସମର୍ଥ ହୋଇଥିଲା । ଓଡ଼ିଆଭାଷୀ ଅଞ୍ଚଳମାନ ବିଭିନ୍ନ ପ୍ରଦେଶର ଶେଷଭାଗରେ ଥାଇ କୌଣସି ପ୍ରାଦେଶିକ ଶାସନର ଦୃଷ୍ଟି ଆକର୍ଷଣ କରିପାରିଲେ ନାହିଁ । ନିୟମିତ ଅତ୍ୟାଚାର ଫଳରେ ଓଡ଼ିଶାର ପ୍ରତିରୋଧ ଶକ୍ତି ମଧ୍ୟ ଲୁପ୍ତ ହୋଇ ଯାଇଥିଲା ।"

ସେତେବେଳକୁ ଭାରତୀୟ ଜନମାନସକୁ ନୂତନ ନେତୃତ୍ୱ ଓ ଦିଗ ନିର୍ଦ୍ଦେଶ ଦେବାକୁ ଗାନ୍ଧିଜୀଙ୍କର ଅଭ୍ୟୁଦୟ ଘଟିଥିଲା । ତାଙ୍କର ସରଳ ଜୀବନଯାପନ ନୀତି, ଋଷିସୁଲଭ ଚରିତ୍ରବତ୍ତା, ଭାରତୀୟ ଭାଷା ପ୍ରତି ଆଦର ଓ ପ୍ରୟୋଗ ପାଇଁ ଆଗ୍ରହ ଏବଂ ସର୍ବୋପରି ସାଧାରଣ ଗାଉଁଲି ମଣିଷଙ୍କର ଜୀବନ ପ୍ରତି ସଚେତନତା, ତାଙ୍କୁ ସାଧାରଣ ଲୋକଙ୍କ ହୃଦୟରେ ସ୍ଥାନ ଦେଇଥିଲା ।

ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ତାଙ୍କର ସଂଗ୍ରାମର ଅସ୍ତ୍ର ସତ୍ୟାଗ୍ରହକୁ ସେ ବିହାରର ଚମ୍ପାରଣ, ଗୁଜୁରାଟର କଇରା ଓ ଅହମ୍ମଦାବାଦରେ ପ୍ରୟୋଗ କରିଥିଲେ । ଏବଂ ତାହାର ସଫଳତା ସ୍ୱାଧୀନତା ଆନ୍ଦୋଳନର ମୌଳିକ ଅସ୍ତ୍ର ଭାବରେ ଗ୍ରହଣୀୟ ହୋଇଥିଲା । 1919 ମସିହା ଏପ୍ରିଲ ମାସରେ ରାଓଲାଟ୍ ଆଇନ୍ ବିରୁଦ୍ଧରେ ଗାନ୍ଧିଜୀ

ସାରା ଦେଶରେ ହରତାଳ ପାଳନ କରି ଆଇନ୍ ଅମାନ୍ୟ କରିବାକୁ ଆହ୍ୱାନ ଦେଲେ । ଏହି ହରତାଳ ଅଭୂତପୂର୍ବଭାବେ ସଫଳତା ପାଇଲା । ଏପ୍ରିଲ 13 ତାରିଖ ଦିନ ପଞ୍ଜାବର ଜାଲିଓ୍ୟାନାୱାଲାବାଗ ହତ୍ୟାକାଣ୍ଡର ଲୋମହର୍ଷକ କାହାଣୀ ଭାରତୀୟ ଲୋକମାନଙ୍କୁ ଅଧିକ ଉତ୍ତେଜିତ କରିବା ସହିତ ସ୍ୱାଧୀନତା ଆନ୍ଦୋଳନର ଗତି ତୀବ୍ର ହେଲା ଓ ଛାତ୍ର, ଯୁବକମାନେ ନିଜକୁ ଏଥିରେ ମିଶାଇ ଦେବାକୁ ଆଗଭର ହେଲେ । ଗାନ୍ଧିଜୀ ହେଲେ ମହାମନ୍ତ । ମହତାବ ଗାନ୍ଧିଜୀଙ୍କର ବ୍ୟକ୍ତିତ୍ୱ ଓ ତାଙ୍କର ଆହ୍ୱାନ ପ୍ରତି ଆକୃଷ୍ଟ ହେଲେ ।

ତାଙ୍କ ମନଭିତରେ ଝଡ଼ ଲାଗି ରହିଥିଲା । କେବଳ ଅପେକ୍ଷା ଥିଲା ସମୟ ଓ ସୁଯୋଗକୁ । ମହତାବ ଏହି ସମୟରେ ଭାରତ ସେବକ ସମିତିର ସଭ୍ୟ ଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁଙ୍କ ସଂସ୍ପର୍ଶରେ ଆସିଥିଲେ । ସେ କଟକରେ ଗୋଟିଏ ସେବା ସମିତି ସ୍ଥାପନ କଲେ ଯାହାର ସମବାୟ ବିଭାଗ ଦାୟିତ୍ୱରେ ରହି ଲକ୍ଷ୍ମୀନାରାୟଣବାବୁଙ୍କଠାରୁ ଅଫିସ କାର୍ଯ୍ୟ, ରିପୋର୍ଟ ଲେଖିବା, ତଥ୍ୟ ସଂଗ୍ରହ କରିବା ଇତ୍ୟାଦି ଶିକ୍ଷା କରିଥିଲେ । ସାଧାରଣ ଜୀବନ ସଂପର୍କରେ ତାଙ୍କର ଧାରଣା ଲକ୍ଷ୍ମୀନାରାୟଣବାବୁଙ୍କଠାରୁ ହୋଇଥିଲା ।

1918 ମସିହାରେ କଟକରେ ଉତ୍କଳ ସମ୍ମିଳନୀ ଅଧିବେଶନ ହେଲା । ମଧୁବାବୁଙ୍କ ଚିନ୍ତା, ସାହସ ଓ ଉତ୍ସାହ ଦ୍ୱାରା ଅନୁପ୍ରାଣିତ ମହତାବ ସେହି ଅଧିବେଶନରେ ହୋଇଥିଲେ ସ୍ୱେଚ୍ଛାସେବକ । ଦେଶର ସ୍ୱାଧୀନତା ପାଇଁ ଯଦିଓ ମଧୁବାବୁଙ୍କର ଚର୍ଚ୍ଚା ପ୍ରାୟତଃ ନଥିଲା, କିନ୍ତୁ ଓଡ଼ିଶାର ସେତେବେଳର ଏକମାତ୍ର ରାଜନୈତିକ ଚିନ୍ତା ଥିଲା ଓଡ଼ିଆଭାଷୀ ପ୍ରଦେଶମାନଙ୍କର ଏକତ୍ରୀକରଣ ।

ଅବଶ୍ୟ ସେତେବେଳକୁ ଓଡ଼ିଶାର ରାଜନୈତିକ ଜୀବନରେ ଗୋପବନ୍ଧୁ ଓ ସତ୍ୟବାଦୀ ବନ ବିଦ୍ୟାଳୟର କାର୍ଯ୍ୟ ଜଣାଶୁଣା ହେବାକୁ ଲାଗିଥାଏ । ଗୋପବନ୍ଧୁ 'ସମାଜ' କାଗଜ ସଂପାଦନ କରୁଥାନ୍ତି ଏବଂ ସରକାରୀ ଅବହେଳାର ନିଖୁଣ ଚିତ୍ର ଏହି କାଗଜରେ ପ୍ରକାଶ ପାଉଥାଏ । ଓଡ଼ିଶାର ପୁରୀରେ ପଡ଼ିଥିବା ଦୁର୍ଭିକ୍ଷ ଗୋପବନ୍ଧୁଙ୍କ ଲେଖନୀ ସ୍ପର୍ଶରେ ମହତାବଙ୍କ ପରି ଯୁବପିଢ଼ିଙ୍କୁ ଆକୃଷ୍ଟ କରିଥାଏ । ଓଡ଼ିଶାରେ ସେବା ଭାବର ପ୍ରଥମ ପ୍ରବର୍ତ୍ତକ ପଣ୍ଡିତ ଗୋପବନ୍ଧୁ, ଏହା ମହତାବ ସେତେବେଳୁ ହିଁ ବୁଝିଥିଲେ । ଯଦିଓ ଗୋପବନ୍ଧୁଙ୍କ ସହିତ ତାଙ୍କର ସେ ପର୍ଯ୍ୟନ୍ତ ସାକ୍ଷାତ ହୋଇନଥିଲା । କିନ୍ତୁ ଗୋପବନ୍ଧୁ ଓ ସତ୍ୟବାଦୀ ଅନୁଷ୍ଠାନ ପ୍ରତି ମହତାବଙ୍କର ଉଚ୍ଚ ବିଚାର ଥିବା ଜଣା ପଡ଼େ । ସେ ଲେଖିଥିଲେ, "ପ୍ରକୃତ ଶିକ୍ଷିତ ଲୋକ କେତେ ଜଣ ଏ ବିଦ୍ୟାଳୟରୁ ବାହାରିଥିଲେ ସେ କଥା କହିବା କଠିନ; କିନ୍ତୁ ଏହା ନିଃସନ୍ଦେହ ଯେ ଏ ଅନୁଷ୍ଠାନ ଓ ଅନୁଷ୍ଠାନର ତ୍ୟାଗୀକର୍ମୀ ଓଡ଼ିଶାର ନୂତନ ଜୀବନ ଓ ନୂତନ ଆଦର୍ଶ ସୃଷ୍ଟି କରିଥିଲେ ।"

ଉତ୍କଳ ସମ୍ମିଳନୀ ପରଠାରୁ ମହତାବ ରାଜନୀତିରେ ଯୋଗ ଦେବାକୁ ଚାହୁଁଥିଲେ ମଧ୍ୟ ସେ ପର୍ଯ୍ୟନ୍ତ କଂଗ୍ରେସର ସଭା ଓଡ଼ିଶାରେ ପ୍ରବେଶ କରିନଥିଲା । ଭାରତୀୟ ଚିନ୍ତାଧାରାକୁ ଓଡ଼ିଶାରେ ପ୍ରବେଶ କରାଇବା ଲକ୍ଷ୍ୟରେ 1919 ମସିହାର ଶେଷ ବେଳକୁ କଟକର ବାଖରାବାଦଠାରେ ଭାରତୀ ମନ୍ଦିର ସ୍ଥାପନ ହେଲା । ଏହାର ନେତୃତ୍ୱ ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ ଓ ଭାଗୀରଥି ମହାପାତ୍ର ନେଇଥିଲେ । ମହତାବ ପୂର୍ଣ୍ଣପ୍ରାଣରେ ସାହାଯ୍ୟ କରିଥିଲେ । ଏହି ସମୟରେ କଂଗ୍ରେସର ଏକ ବିଶେଷ ଅଧିବେଶନରେ

ଯୋଗ ଦେବା ପାଇଁ ମହତାବ ଭାରତୀ ମନ୍ଦିରର ସଭ୍ୟମାନଙ୍କ ଦ୍ୱାରା ମନୋନୀତ ହୋଇ କଲିକତା ଗଲେ । କଂଗ୍ରେସ ଅଧିବେଶନରେ ମହତାବ, ଚିତ୍ତରଂଜନ ଦାସ, ମୋତିଲାଲ ନେହେରୁ, ଲାଲା ଲାଜପତ୍ ରାୟ୍, ମହାତ୍ମାଗାନ୍ଧୀ ଓ ପଣ୍ଡିତ ମଦନମୋହନ ମାଲବ୍ୟଙ୍କ ଭାଷଣ ଶୁଣିଲେ । "ବିଦେଶୀ ଶାସନରୁ ମୁକ୍ତି ପାଇବା ପାଇଁ ସଶସ୍ତ୍ର ବିଦ୍ରୋହ ପରିବର୍ତ୍ତେ ଅଂହିସାତ୍ମକ ଅସହଯୋଗ ହିଁ ଏକମାତ୍ର କାର୍ଯ୍ୟକାରୀ ପନ୍ଥା, ଦେଶବାସୀଙ୍କ ସହଯୋଗ ଅପସରି ଗଲେ ବିଦେଶୀ ଶାସନ ଚାଲି ପାରିବ ନାହିଁ, ଏହା ହିଁ ଉତ୍କୃଷ୍ଟ କାର୍ଯ୍ୟକାରୀ ପନ୍ଥା ବୋଲି ମହାତ୍ମାଗାନ୍ଧୀ ସୁନ୍ଦର ଭାବରେ ବୁଝାଇ ଦେଲେ," ଯାହାର ପ୍ରଭାବରେ ମହତାବ ସଂପୂର୍ଣ୍ଣ ଅଭିଭୂତ ହୋଇ ଯାଇଥିଲେ । ସେ କଲିକତାରୁ ଫେରି ନିଜର ସଦ୍ୟ ଅନୁଭୂତିକୁ 'ଭାରତୀ ମନ୍ଦିର' ରେ ଆଲୋଚ଼ନା କଲେ ଓ କଲେଜ ଛାଡ଼ି ଆନ୍ଦୋଳନରେ ଝାସ ଦେବାକୁ ନିଷ୍ପତ୍ତି ନେଇଥିଲେ ମଧ୍ୟ ମାନସିକ ସ୍ତରରେ କେବେ ଏହା କରିବେ ସ୍ଥିର କରି ପାରୁ ନଥିଲେ ।

1921 ମସିହାରେ କଂଗ୍ରେସର ଅଧିବେଶନ ନାଗପୁରଠାରେ ହେଲା । ଏହି ଅଧିବେଶନରେ ଯୋଗ ଦେବାକୁ ସେ ଓ ଭାଗୀରଥି ମହାପାତ୍ର ଯାଇଥିଲେ ଏବଂ ଓଡ଼ିଶାରେ ପ୍ରାଦେଶିକ କମିଟୀ ନ ଥିବାରୁ ଓଡ଼ିଶାର ପ୍ରତିନିଧିମାନେ ବିହାର କଂଗ୍ରେସରେ ଯୋଗ ଦେଲେ । ଏହି ନାଗପୁର କଂଗ୍ରେସରେ ପଣ୍ଡିତ ଗୋପବନ୍ଧୁଙ୍କ ସହିତ ତାଙ୍କର ପ୍ରଥମ ପରିଚ଼ୟ ହେଲା । ସେହି ପରିଚ଼ୟ ସଂପର୍କରେ ଉଲ୍ଲେଖ କରି ମହତାବ କହିଛନ୍ତି,"ତାଙ୍କର ହୃଦୟ ଏତେ କୋମଳ ଓ ଅନୁକମ୍ପାଭରା ଯେ, ମୁଁ ଦେଖି ବିସ୍ମିତ ହୋଇଥିଲି । ସେ ମୋର ସମସ୍ତ କଥା ଶୁଣିଲେ । ମୁଁ ଯେ ବିବ୍ରତ ଥିଲି, ତା ମଧ୍ୟ ସେ ଜାଣି ପାରିଲେ । ମୁଁ ତାଙ୍କୁ ପଚାରିଲି, "କ'ଣ କରିବି, ବି.ଏ. ପରୀକ୍ଷା ଦେବି କି ନାହିଁ ?" ସେ ଟିକିଏ ଚିନ୍ତା କରି କହିଲେ, "ଦେଇ ଦିଅ, ତା'ପରେ ଏଥିରେ ଯୋଗ ଦେବ ।"

କଟକଠାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟୀ ଗଠନ କରାଗଲା । ଗୋପବନ୍ଧୁ ପୂର୍ଣ୍ଣ ସମୟ ଦେଇ ଦେଶ କାମରେ ଲାଗିଥିବାରୁ ସେ ନୂତନ ଓଡ଼ିଶାର ନ୍ୟାୟ ସଙ୍ଗତ ନେତା ଥିଲେ । ଗୋପବନ୍ଧୁ ସଭାପତି ଭାବେ ନିର୍ବାଚିତ ହେଲେ ଓ ମହତାବ କାର୍ଯ୍ୟ ନିର୍ବାହିକା ସମିତିର ସଭ୍ୟ ରୂପେ ମଧ୍ୟ ନର୍ବାଚିତ ହେଲେ ।

ଏହି ନିର୍ବାଚନ ପରଠାରୁ ତାଙ୍କର ଛାତ୍ର-ଜୀବନରେ ପୂର୍ଣ୍ଣଚ୍ଛେଦ ଟାଣି ହୋଇଗଲା ।

(ଖ) ଛାତ୍ର ଜୀବନରୁ ସାମାଜିକ ଜୀବନ : ସାମାଜିକ ଜୀବନ ପ୍ରତି ପିଲାଦିନରୁ ଆକୃଷ୍ଟ ଥିବା ସତ୍ତ୍ୱେ ସେହି ଜୀବନକୁ ତ୍ୱରାନ୍ୱିତ ଗ୍ରହଣ କରିବା ନେଇ ମହତାବଙ୍କ ମନରେ ସଦା ସର୍ବଦା ଗଭୀର ଉଦ୍‌ବିଗ୍ନତା ଲାଗି ରହିଥାଏ କାରଣ ତାଙ୍କ ବାବା, ପାଳିତା ମା' ଓ ସ୍ତ୍ରୀ ଏହା ଚାହୁଁନଥିଲେ । ସେଥିପାଇଁ ସେମାନଙ୍କୁ ଠକିବାକୁ ପଡ଼ିଥିଲା ଓ ଏହା ମହତାବଙ୍କର ଅନ୍ତର ଆତ୍ମାକୁ ଗଭୀର ଦୁଃଖ ଦେଇଥିବା କଥା ସେ ଏପରି ଉଲ୍ଲେଖ କରିଛନ୍ତି, "ମୋର ଏହି ଆଚ଼ରଣ ଯୋଗୁଁ ଆଜି ପର୍ଯ୍ୟନ୍ତ ମୋ ମନ ଭିତରେ ଦୁଃଖ ଓ ଅନୁତାପର ଗୋଟିଏ ସ୍ରୋତ ଅନ୍ତଃସଲିଳା ହୋଇ ବରାବର ବହି ଆସୁଛି - ବୋଧ ହେଉଛି, ଏହା ଜୀବନ

ସାରା ବହିବ । ସମସ୍ତଙ୍କୁ ବୁଝାଇ ସୁଝାଇ ମୋର କର୍ତ୍ତବ୍ୟ ପଥ ଆଶ୍ରା କରିଥିଲେ, ବୋଧହୁଏ ବିଳମ୍ବ ହୋଇଥାନ୍ତା । ମାତ୍ର ଆଜୀବନ ଏକ ଦୁଃଖର ଛାୟା ମନ ଭିତରେ ପଡ଼ି ନଥାନ୍ତା । ଠକି ଦେବା ଫଳରେ ମନ ଅନୁସାରେ କାମ ବିଳମ୍ବ ହୋଇଗଲା ସତ; ମାତ୍ର ଯେଉଁମାନଙ୍କୁ ଠକିଲି, ସେମାନଙ୍କ ପ୍ରତି ଯେ ଅନ୍ୟାୟ ଆଚରଣ କଲି, ତା'ର ପ୍ରତିକ୍ରିୟା ଚିରଦିନ ପାଇଁ ହୃଦୟ ଉପରେ ପ୍ରଭାବ ପକାଇ ଦେଇଛି । ସେ ପ୍ରତିକ୍ରିୟାକୁ ଠେଲି ପେଲି ବରାବର ଚାଲିଛି । ସେଥିପାଇଁ ପ୍ରବଳ ଉଦ୍ୟମ ସଦାବେଳେ ଦରକାର ପଡୁଛି ।"

ଗାଁରେ ସ୍ଥାପିତ ହୋଇଥିବା ସ୍କୁଲରେ ପ୍ରାଥମିକ ଶିକ୍ଷା ଶେଷକରି ମହତାବ ଭଦ୍ରକ ହାଇସ୍କୁଲକୁ ପଢ଼ିବାକୁ ଯାଇଥିଲେ । ପ୍ରାଥମିକ ବିଦ୍ୟାଳୟରେ ପଢ଼ିବାବେଳେ ଇଂରାଜୀ ଶିକ୍ଷକ କୃପାସିନ୍ଧୁ ମହାନ୍ତି ଓ ହେଡ୍ ପଣ୍ଡିତ ଭଗବାନ ଚରଣ ମହାପାତ୍ରଙ୍କ ଦ୍ୱାରା ବଡ଼ ମଣିଷ ହେବାର ପ୍ରେରଣା ପାଇ ଜଣେ ସାଧାରଣ ମଣିଷଠାରୁ ଅନ୍ୟ କିଛି ହେବାର ସ୍ପୃହା ତାଙ୍କ ମନରେ ଜାଗ୍ରତ ହୋଇଥିଲା । ସେ ଗାଁ ସ୍କୁଲରେ ପଢୁଥିବା ବେଳେ ରାମାୟଣ କଥାକୁ ଗଦ୍ୟ ଆକାରରେ ଲେଖିଥିଲେ ।

ଭଦ୍ରକ ହାଇସ୍କୁଲରେ ପଢ଼ିବା ବେଳେ ସେ ଯଦିଓ ଭଲ ଛାତ୍ର ଥିଲେ କିନ୍ତୁ ତାଙ୍କର ଆଗ୍ରହ ଥିଲା ସାଧାରଣ ସେବା କାର୍ଯ୍ୟ ପ୍ରତି । ଭଦ୍ରକ ସ୍କୁଲରେ ପଢ଼ିବା ବେଳେ ପ୍ରଚାରକ ଅନନ୍ତମିଶ୍ରଙ୍କ ପାଇଁ ଗାଁରେ ସଭାକରିବା, କମିଶନରଙ୍କୁ ରାସ୍ତା ନ ଛାଡ଼ିବା, ଭଦ୍ରକ ସବ୍‌ଡିଭିଜନ ଅଫିସର ରାୟ ବାହାଦୁର ଉପାଧି ସମ୍ବର୍ଦ୍ଧନା ସଭାକୁ ଭଣ୍ଡୁର କରିବା ଇତ୍ୟାଦି ଘଟଣା ତାଙ୍କ ସ୍ୱାଧୀନତା ସଂଗ୍ରାମ ଆଡ଼କୁ ଆକୃଷ୍ଟ ହେବାର ଆନ୍ତରିକତା, ଅନୁସନ୍ଧିତ୍ସା ଓ ଅନାବିଳ ଦେଶପ୍ରେମର ପରିଚୟ ଦିଏ ।

ବିବାହକୁ 'ଜୀବନର ଏକ ଆଘାତ' ବୋଲି ବିଚାର କରୁଥିବା ମହତାବ ମାଟ୍ରିକ୍ ପରୀକ୍ଷା ଦେବା ପୂର୍ବରୁ ସୁଭଦ୍ରାଦେବୀଙ୍କ ସହିତ ବିବାହ ବନ୍ଧନରେ ବାନ୍ଧିହେବା ସତ୍ତ୍ୱେ ପ୍ରଥମ ଶ୍ରେଣୀରେ ପାସ୍ କଲେ । କିପରି ନିଜର ସଂକଳ୍ପ ଅନୁଯାୟୀ କଲେଜରେ ଅଧିକ ଅଧ୍ୟୟନ କରିବେ, ତାହା ତାଙ୍କ ମନକୁ ଘାରୁଥିଲା । ଘରେ ତାଙ୍କର ବାବା ଓ ପାଳିତା ମା' ଏହାକୁ ବିରୋଧ କରୁଥିବା ବେଳେ, ସ୍ତ୍ରୀ ଅଧିକ ପାଠ ପଢ଼ିବାରେ କିଛି ଲାଭ ନାହିଁ ବୋଲି ବୁଝାଇ ଚାଲିଥାନ୍ତି । କିନ୍ତୁ ନିଜର ଝୁଙ୍କ ଯେ ସେ "ସାଧାରଣ ଗୃହସ୍ଥଠାରୁ ଅଧିକ କିଛି ହେବେ," ଏହା ତାଙ୍କୁ ସମସ୍ତ ବିରୋଧ ସତ୍ତ୍ୱେ କଟକ ଯାଇ ଏକମାତ୍ର କଲେଜ ରେଭେନ୍‌ସା କଲେଜରେ ନାମ ଲେଖାଇବାରେ ସାହାଯ୍ୟ କରେ ।

ଆଇ ଏସ୍ ସି ନେଇ ତାଙ୍କର ପଢା ଆରମ୍ଭ ହେଲା । ସେଠାରେ ସେ ନବକୃଷ୍ଣ ଚୌଧୁରୀ ଓ ପ୍ରହ୍ଲାଦ ସାହୁଙ୍କ ସହିତ ପରିଚିତ ହେଲେ । ତାଙ୍କ ରହୁଥିବା ମେସ୍‌ରେ ନାନାଦି ଆଲୋଚନା ଚାଲେ ଏବଂ ସେଠାରୁ ସେ 'ମଳୟ' ପତ୍ରିକା ଓ ଇଂରାଜୀରେ 'ଡଷ୍ଟବିନ୍' ନାମକ ସାପ୍ତାହିକ ପତ୍ରିକା ଦୁଇଟି ପ୍ରକାଶ କଲେ । ରୀତିମତ ଓ ଧାରାବାହିକ ଭାବେ ଅଧ୍ୟୟନ କରିବା ତାଙ୍କ ପକ୍ଷରେ ସମ୍ଭବ ନ ହେବାରୁ ସେ ଆଇ ଏସ୍ ସି ପାଶ୍ କରିବା ପରେ ବି.ଏ. ପଢ଼ିଲେ । ଉତ୍କଳ ଦୀପିକା କାଗଜରେ କଟକ ସହରରେ ପୁଲିସ ବା ସରକାରୀ ଜୁଲୁମକୁ ସେ ଇଂରାଜୀ ଓ ଓଡ଼ିଆରେ ଲେଖି ପ୍ରକାଶ କରୁଥିଲେ । ବାଖରାବାଦଠାରେ ଭାରତୀ ମନ୍ଦିର ନାମରେ ପାଠାଗାର ସ୍ଥାପନା ତାଙ୍କ ଛାତ୍ର ଜୀବନର ରାଜନୈତିକ କ୍ଷେତ୍ର ହୋଇଥିଲା ଏବଂ ଏହିଠାରେ ବିଭିନ୍ନ ରାଜନୈତିକ ବିଚାର ଆଲୋଚନା ତାଙ୍କୁ କଂଗ୍ରେସ

ଅଧିବେଶନରେ ଯୋଗଦେବାର ସୁଯୋଗ ପ୍ରଦାନ କରିଥିଲା । ନାଗପୁର କଂଗ୍ରେସ ଅଧିବେଶନରୁ ଫେରିବା ପରେ, ଗାନ୍ଧିଜୀଙ୍କ ନେତୃତ୍ୱରେ ଆନ୍ଦୋଳନରେ ସାମିଲ ହେବା ପାଇଁ ବ୍ୟଗ୍ର ମହତାବ ବି.ଏ. ପରୀକ୍ଷା ଦେବା ଓ ନ ଦେବା ମଧ୍ୟରେ ଦୋଦୁଲ୍ୟମାନ ଅବସ୍ଥାରେ ଥିବା ବେଳେ କଟକଠାରେ ମଧୁବାବୁଙ୍କ ମନ୍ତ୍ରୀ ପଦକୁ ସ୍ୱାଗତ କରିବା ପାଇଁ ଏକ ସଭା ହେଲା । ସେହି ସଭାରେ ତାଙ୍କ ବିରୋଧରେ ନିନ୍ଦାବାଦ କରିବାକୁ ମହତାବ ଓ ଅନ୍ୟ ବନ୍ଧୁମାନେ ସ୍ଥିର କଲେ । ସେଥିପାଇଁ ଅଣିବର୍ଷରେ 'ମଧୁବାବୁ ଚାକିରିଆ' ନାମରେ ଏକ ପ୍ରଚାର ପତ୍ର ବଣ୍ଟା ଗଲା । କଟକ ଟାଉନହଲରେ ସଭା ହେବାର ଥିଲା । ମାତ୍ର ସ୍ଥାନାଭାବ ଯୋଗୁଁ ଟାଉନହଲ୍ ପଡ଼ିଆରେ ସଭା ହେଲା । ସଭାପତି ଆସନ ପାଇଁ ବାଦବିସମ୍ବାଦ ଆରମ୍ଭ ହୋଇ ଉଦ୍ୟୋକ୍ତାମାନେ ସଭା ଛାଡ଼ି ଚାଲିଯିବାରୁ ସେହି ସଭାରେ ମଧୁବାବୁଙ୍କ ବିରୋଧରେ ନିନ୍ଦା ପ୍ରସ୍ତାବ ଗ୍ରହଣ ମହତାବଙ୍କ ଛାତ୍ରଜୀବନରେ ପୂର୍ଣ୍ଣଛେଦ ପକାଇଲା, କାରଣ ପ୍ରିନ୍‌ସପାଲ ଲେମ୍ବାଟ ସାହେବ ଏ ସଂପର୍କରେ ତାଙ୍କ ବାବାଙ୍କ ପାଖକୁ ଚିଠି ପଠାଇଥିଲେ । ପ୍ରିନ୍‌ସପାଲଙ୍କ ଚିଠି ପାଇ ବାବା ତାଙ୍କୁ ଘରକୁ ଡକାଇଲେ । ମହତାବ ଘରକୁ ଫେରିଲେ । ବି.ଏ. ପରୀକ୍ଷା ଦେବା ନୋହିଲା ସତ କିନ୍ତୁ ଘରେ ରହି ସଂସାର ଭିତରେ ବାନ୍ଧି ହୋଇ ରହିବାକୁ ସେ ଗ୍ରହଣ କରି ପାରିଲେ ନାହିଁ । ଘରେ ମିଛ କହି ସେ ଚାଲି ଆସିଥିଲେ କଟକ ଏବଂ ମହାତ୍ମାଗାନ୍ଧୀଙ୍କ ଓଡ଼ିଶା ଗସ୍ତରେ ଅଂଶ ଗ୍ରହଣ କରିଥିଲେ ।

ଗାନ୍ଧୀଜୀ ଥିଲେ ବାସ୍ତବ ଜନନାୟକ ଯାହାଙ୍କର ପ୍ରତ୍ୟେକ ପ୍ରଦେଶ ଓ ଅଞ୍ଚଳ ସହିତ ପ୍ରତ୍ୟକ୍ଷ ସଂପର୍କ ସ୍ଥାପିତ ହୋଇଥିଲା । ତାଙ୍କ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ତଡ଼ିତ୍ ବେଗରେ ଦୂର ଦୂର ଗାଁଠାରୁ ସହର ପର୍ଯ୍ୟନ୍ତ ବ୍ୟାପୀ ଯାଉଥିଲା । ଗାନ୍ଧିଜୀଙ୍କର ବ୍ରହ୍ମପୁର ଷ୍ଟେସନରେ କର୍ମୀମାନଙ୍କୁ ଦେଇଥିବା ଉପଦେଶ,"ଅନେକ ଗୁଡ଼ାଏ ବିଷୟ ଭାବ ନାହିଁ ; ଗୋଟିଏ ବିଷୟ ଭାବ ଓ ତାକୁ କାମରେ ପରିଣତ କର."ଯେପରି ମହତାବଙ୍କ ନିକଟରେ ମନ୍ତ୍ର ହୋଇଯାଇଥିଲା ।

ଗାନ୍ଧିଜୀଙ୍କ ଓଡ଼ିଶା ଗସ୍ତ ପରେ, ସେ କଂଗ୍ରେସ ମେମ୍ବର ସଂଗ୍ରହ, କଟକରେ ସ୍ୱରାଜ୍ୟ ଶ୍ରମ ସଂଗଠନ ଇତ୍ୟାଦି କାର୍ଯ୍ୟରେ ଲାଗିପଡ଼ିଲେ । ତାଙ୍କ ଉପରେ ବାଲେଶ୍ୱର ଜିଲ୍ଲାରେ କଂଗ୍ରେସକୁ ସଂଗଠିତ କରିବାର ଦାୟିତ୍ୱ ପଡ଼ିଲା । ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟୀର ସଭାପତି ହେଲେ ଶ୍ରୀ ବିପିନ ବିହାରୀ ଦାସ ଓ ମହତାବ ସଂପାଦକର ଦାୟିତ୍ୱ ନେଲେ ।

# 2

## ସ୍ୱାଧୀନତା ଆନ୍ଦୋଳନର ରଥୀ

ବାଲେଶ୍ୱର ଜିଲ୍ଲାର କଂଗ୍ରେସ ସଂପାଦକ ଭାବରେ ଦାୟିତ୍ୱ ନେବା ପରେ ମହତାବଙ୍କର କାର୍ଯ୍ୟ ହେଲା ନିଶା ଦୋକାନରେ ପିକେଟିଂ କରିବା, ବିଦେଶୀ ଲୁଗା ବନ୍ଦ କରିବା, କଂଗ୍ରେସ ସଭ୍ୟ ସଂଗ୍ରହ କରିବା ତିଳକ ସ୍ୱରାଜ୍ୟ ପାଣ୍ଠି ସଂଗ୍ରହ କରିବା ଓ ସ୍ୱରାଜ୍ୟ ମନ୍ଦିରର ଖାଇବା ଖର୍ଚ୍ଚର ବ୍ୟବସ୍ଥା କରିବା ପାଇଁ ମୁଷ୍ଟିଭିକ୍ଷା ସଂଗ୍ରହ କରିବା । ପିକେଟିଂ କରିବା ଦ୍ୱାରା ନିଜ ଭିତରେ ସହନଶୀଳତା ବଢ଼ିଗଲା । ଦେଶ କାମ ପାଇଁ ସବୁ ପ୍ରକାର ଅବସ୍ଥାକୁ ଉତ୍ସାହ ସହକାରେ ଗ୍ରହଣ କରିବା ଦ୍ୱାରା ତାଙ୍କର କର୍ମକୁଶଳତା ବହୁଗୁଣରେ ବଢ଼ିଗଲା । ବିଭିନ୍ନ ପ୍ରକାର କାର୍ଯ୍ୟକ୍ରମ ମଧ୍ୟରେ କଂଗ୍ରେସ କର୍ମୀମାନଙ୍କ ମଧ୍ୟରେ ବନ୍ଧୁତାର ନିବିଡ଼ତା ଓ ଉଷ୍ମତା ଗଢ଼ି ଉଠିଥିଲା । ଏହି ଉଷ୍ମତାର ସବୁଠାରୁ ଶକ୍ତିଶାଳୀ ଯୋଗସୂତ୍ର ଥିଲେ ପଣ୍ଡିତ ଗୋପବନ୍ଧୁ ଓ ତାଙ୍କର ଉଦାର ହୃଦୟବତ୍ତା ।

ଡିସେମ୍ବର 1921 ମସିହାରେ ଅହମ୍ମଦାବାଦରେ କଂଗ୍ରେସ ଅଧିବେଶନ ହେଲା । ଏହି ଅଧିବେଶନରେ ଓଡ଼ିଶାରୁ 127 ଜଣ ଯୋଗ ଦେଇଥିଲେ । ସେଥିମଧ୍ୟରୁ 53 ଜଣ ଥିଲେ ବାଲେଶ୍ୱରର । ଏହି ଅଧିବେଶନରେ କଂଗ୍ରେସ ଆଇନ୍ ଅମାନ୍ୟ ଆନ୍ଦୋଳନ କରିବାର ସ୍ଥିର କରାଗଲା ଓ ମହାତ୍ମାଗାନ୍ଧୀଙ୍କୁ ଏହାର ନେତୃତ୍ୱ ଦିଆଗଲା । ଆଇନ୍ ଅମାନ୍ୟ ଆନ୍ଦୋଳନର ରୂପ ହେଲା ଦେଶ ବ୍ୟାପୀ ଗୃହଦାହ । କଟକରେ ପ୍ରଥମେ ଘରପୋଡ଼ି ଆରମ୍ଭ ହୋଇ ପ୍ରତିଦିନ ଚାଲିଲା । କେଉଁ ଦୁର୍ବୃତ୍ତମାନେ ଏପରି ଅମାନୁଷିକ କାର୍ଯ୍ୟ କରୁଥିଲେ ତାର ଟେର ପୋଲିସ ବା ସାଧାରଣ ଲୋକେ ପାଉ ନଥାନ୍ତି । ପୋଲିସ ଏହା କଂଗ୍ରେସ ଲୋକମାନଙ୍କର କାମ ବୋଲି କହୁଥିବା ବେଳେ ସାଧାରଣ ଲୋକେ ଭାବୁଥାନ୍ତି ଏହା ପୁଲିସର କାର୍ଯ୍ୟ । ମହତାବ କଟକ ସ୍ୱରାଜ୍ୟ ଆଶ୍ରମରୁ ବାଲେଶ୍ୱର ଫେରିଲେ । ବାଲେଶ୍ୱରରେ ସେଇ ଏକା କଥା । ମହତାବ ଜିଲ୍ଲା ମାଜିଷ୍ଟ୍ରେଟ ଶ୍ୟାମଲାଲ ଗୁପ୍ତା ଓ ପୋଲିସ ସାହେବ ହଡ଼ସନଙ୍କ ନିକଟକୁ ପତ୍ର ଲେଖି ତାଙ୍କର ସହଯୋଗ କାମନା କଲେ ଏବଂ ମ୍ୟୁନିସିପାଲଟି ଅଫିସ ପଡ଼ିଆ ନିକଟରେ ଏକ ସଭା ଡାକିଲେ । ବିପଦର ପ୍ରତିକାର ପାଇଁ ସହର ସଂରକ୍ଷଣ ସମିତି ନାମରେ ଏକ କମିଟୀ ଗଠନ କରିବାର ପ୍ରସ୍ତାବ ସେହି ସଭାରେ ଗୃହୀତ ହେଲା । ଏହାର ସଭାପତି ଜିଲ୍ଲା ମାଜିଷ୍ଟ୍ରେଟ, ଉପସଭାପତି ପୋଲିସ ସାହେବ ଓ ସଂପାଦକ ରହିଲେ ମହତାବ । ରାତିସାରା ସହର ତମାମ ପହରା ଦେବା ଦ୍ୱାରା ଅଗ୍ନିଦାହ ବିପଦକୁ

ଏଡ଼ାଇ ଦିଆ ଯାଇପାରିଲା । ଏହାକୁ କିଏ କରୁଥିଲା, କାହିଁକି କରୁଥିଲା ଯଦିଓ ଏହାର ସତ୍ୟାସତ୍ୟ ନିରୂପଣ କରାଯାଇ ପାରିନାହିଁ ବା କୌଣସି ଇନ୍‌କ୍ୱାରୀ କମିଟୀ ଗଠନ ହୋଇନି କିନ୍ତୁ ଏହା କୁହାଯାଇ ପାରିବ ଯେ କଂଗ୍ରେସ ଲୋକଙ୍କର ବିଶ୍ୱାସଭାଜନ ଥିବା ସହିତ ସରକାରୀ କଳର ମଧ୍ୟ ବିଶ୍ୱାସକୁ ଆସି ପାରିଲା ।

**(ଙ) କନିକା ପ୍ରଜା ଆନ୍ଦୋଳନ :** କଟକ ଓ ବାଲେଶ୍ୱରର ସମୁଦ୍ର ଉପକୂଳ ଅଞ୍ଚଳର ଛାମୁକା ଓ ପାଞ୍ଚମୁକା ଅଞ୍ଚଳ ଥିଲା କନିକା ଗଡ଼ଜାତ ଯାହାର ରାଜା ଉତ୍କଳ ସମ୍ମିଳନୀରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । 1922 ମସିହାରେ କନିକା ରାଜା ଜମି ବନ୍ଦୋବସ୍ତ କରି ଖଜଣା ବଢ଼ାଇବାକୁ ସ୍ଥିର କଲେ । କନିକା ବ୍ରିଟିଶ ଶାସନ ବ୍ୟବସ୍ଥାର ଅଂଶ ହୋଇଥିଲେ ମଧ୍ୟ ରାଜା ନିଜ ମନମୁତାବକ 1920 ମସିହାରେ ଦୁର୍ଭିକ୍ଷକୁ ପିରଚାଳନା କରିଥିଲେ ଯାହା ସେଠାକାର ଲୋକମାନଙ୍କ ମଧ୍ୟରେ ନୂତନ ଚେ଼ତନା ଓ ଜାଗୃତି ସୃଷ୍ଟି କରିଥିଲା । ସେମାନେ ରାଜାଙ୍କର ବନ୍ଦୋବସ୍ତକୁ ଗ୍ରହଣ ନକରି ସରକାର କରନ୍ତୁ ଏହା ଚାହୁଁଥିଲେ । ପ୍ରଜାମାନେ ଖଜଣା କେନ୍ଦ୍ରାପଡ଼ା ସରକାରୀ ଟ୍ରେଜେରୀରେ ଜମା କଲେ । ରାଜା ଅତ୍ୟନ୍ତ ଚାଲାଖିରେ ପ୍ରଜାମାନଙ୍କର ବିରୋଧ ଅସହଯୋଗ ଆନ୍ଦୋଳନର ରୂପ ବୋଲି ବଡ଼ ଲାଟଙ୍କୁ ବିଶ୍ୱାସ ଜନ୍ମାଇଲେ । ଏପରିକି କମିଶନର ସାହେବ ଛାମୁକା ଅଞ୍ଚଳକୁ ତଦନ୍ତ ପାଇଁ ଯାଇଥିବା ବେଳେ ଶହ ଶହ ପ୍ରଜା ତାଙ୍କ ନିକଟରେ ଆପତ୍ତି କରିବାକୁ ଆସିଲେ । ତାଙ୍କୁ ବୁଝାଇ ଦିଆଗଲା ଯେ ପ୍ରଜାମାନେ ଆକ୍ରମଣ କରିବାକୁ ଆସୁଛନ୍ତି । ପୋଲିସକୁ ଗୁଳି ଚ଼ଳାଇବାକୁ ହେଲା । ଦୁଇଜଣ ପ୍ରଜା ମୃତ୍ୟୁ ଲାଭ କଲେ । ପୋଲିସର ଅକଥନୀୟ ଅତ୍ୟାଚାର ସହିତ ଛାମୁକା ଇଲାକାରେ ଗୁଳି ଓ ଲୁଟତରାଜ ଲାଗି ରହିଥିଲା । କିନ୍ତୁ ପାଞ୍ଚମୁକା ଅଞ୍ଚଳ ଏଥିରୁ ବାଦ୍ ପଡ଼ିଲା । ମହତାବ ପୋଲିସ ସାହେବ ହଡ଼ସନଙ୍କୁ ପ୍ରତିଶ୍ରୁତି ଦେଲେ ଯେ କଂଗ୍ରେସ ଲୋକେ କନିକା ଇଲାକା ମଧ୍ୟକୁ ପ୍ରବେଶ କରିବେ ନାହିଁ ।

ମହତାବ କନିକା ରାଜାଙ୍କ ଟିକସ ନୀତିକୁ ବିରୋଧ ନକରି ଗୋଟିଏ ପ୍ରଚାରପତ୍ର ଲେଖି ବାଣ୍ଟିଲେ ଏବଂ ସେଥିରେ କନିକା ରାଜା କିପରି ଅସହଯୋଗ ଆନ୍ଦୋଳନକୁ ଦବାଇ ଦେବାକୁ ଚାହୁଁଛନ୍ତି ତାହା ମଧ୍ୟ ଉଲ୍ଲେଖ କରିଥିଲେ । ସେ ସେହି ପ୍ରଚାର ପତ୍ରରେ ଲେଖିଥିଲେ, "କନିକା ସରକାର ଭାବୁଛନ୍ତି ଯେ ସେ ଅସହଯୋଗ ଆନ୍ଦୋଳନ ରୂପକ ଉଠୁଥିବା ଢେଉକୁ ତାଙ୍କ ହାତ ବଢ଼ାଇ ବନ୍ଦ କରି ଦେଇ ପାରିବେ । କିନ୍ତୁ ଏହା ମନେ ରଖିବାକୁ ହେବ ଯେ ଅସହଯୋଗ ଆନ୍ଦୋଳନ ଫଳରେ ଉଠୁଥିବା ଜାଗରଣ କେବଳ କନିକା ସରକାରର ମୁଣ୍ଡକୁ ନୁଆଁଇ ଦେବନି ବରଂ ଦିଲ୍ଲୀ ସରକାରର ମଥାନତ କରିଦେବ । ବର୍ତ୍ତମାନ ଆମ୍ଭେମାନେ ଜାଗ୍ରତ । ଯେଉଁ ସାମାନ୍ୟ ଆଲୋକ ଆମ ହୃଦୟରେ ଜାଗ୍ରତ ହୋଇଛି, ତାହା ଆମ ହୃଦୟରେ ରହିଥାଉ । ଏହା ଜଙ୍ଗଲରେ ନିଆଁ ଲାଗିବା ପରି ବ୍ୟାପିଯିବ, ଭୟଙ୍କର ହେବ ଏବଂ ବହୁରାଷ୍ଟ୍ରର ମାର୍ଗ ଦର୍ଶକ ହେବ ।"

କନିକା ସଂପର୍କରେ ସଭାସମତି ହୋଇପାରିବ ନାହିଁ ବୋଲି ଭଦ୍ରକ ସବ୍‌ଡିଭିଜନ ଅଫିସର 144 ଧାରା ଜାରି କରିଥା'ନ୍ତି । କଂଗ୍ରେସ ସଭାପତି ଗୋପବନ୍ଧୁ ଦାସ ଓ ଭାଗୀରଥି ମହାପାତ୍ର ଭଦ୍ରକରେ ସଭା କଲେ ଏବଂ କନିକା ଅତ୍ୟାଚାର ବିରୋଧରେ ମହତାବଙ୍କ

ଦ୍ୱାରା ଆଗତ ଏକ ନିନ୍ଦା ପ୍ରସ୍ତାବ ମଧ୍ୟ ଗୃହୀତ ହେଲା । ମହତାବ ପୋଲିସ ସହିତ ସହଯୋଗ କରି ବାଲେଶ୍ୱର କଂଗ୍ରେସ କମିଟୀକୁ ଏହି ଆନ୍ଦୋଳନରେ ସାମିଲ କରି ନଥିବାରୁ ତାଙ୍କ ବିରୋଧରେ ଅଭିଯୋଗ ହେଲା । ପ୍ରାଦେଶିକ କଂଗ୍ରେସ କମିଟୀ ବାଲେଶ୍ୱରରେ ବସି ଏ ସଂପର୍କରେ ଆଲୋଚନା କଲା ଏବଂ ଭୋଟ୍‌ରେ ସପକ୍ଷ ଓ ବିପକ୍ଷରେ ସମାନ ଭୋଟ ପଡ଼ିବା ହେତୁ ସଭାପତି ଗୋପବନ୍ଧୁ ଦାସଙ୍କୁ ଭୋଟ ଦେବାକୁ ପଡ଼ିଥିଲା । ଗୋପବନ୍ଧୁ ମହତାବଙ୍କ ସପକ୍ଷରେ ଭୋଟ ଦେଇଥିଲେ ମଧ୍ୟ କେତେକ କଂଗ୍ରେସ ନେତା ମହତାବଙ୍କ ବକ୍ତବ୍ୟକୁ ଗ୍ରହଣ କରି ପାରିନଥିଲେ । 144 ଧାରା ଭଙ୍ଗ ଅପରାଧରେ ଗୋପବନ୍ଧୁ ଓ ଭାଗୀରଥିଙ୍କୁ କଟକରୁ ବାଲେଶ୍ୱର ଅଣାଗଲା । ଛଅମାସ ଜେଲ ହେଲା । ସେମାନଙ୍କ ବିରୋଧରେ ମିଥ୍ୟା ଆରୋପ ଲଗାଗଲା ଯେଉଁଥିରେ କନିକା ଲୋକମାନଙ୍କୁ ମତେଇବା ଏବଂ ଘରପୋଡ଼ି ବେଳେ ପୋଲିସକୁ ପିଟିବା ଲେଖା ଯାଇଥିଲା ।

ଚୌରୀଚୌରା ଘଟଣା ପରେ ଅସହଯୋଗ ଆନ୍ଦୋଳନକୁ ଗାନ୍ଧୀ ବାତିଲ କରି ଦେଲେ । ଗାନ୍ଧୀଙ୍କର ଏହି ତରବରିଆ ନିଷ୍ପତ୍ତିରେ ମହତାବ ଓ ଅନ୍ୟମାନେ ସହମତ ନଥିଲେ । କିନ୍ତୁ ଅଖିଳ ଭାରତ କଂଗ୍ରେସ କମିଟୀ ବୈଠକରେ ସେ ଯୋଗ ଦେବା ପରେ ଏବଂ ଗାନ୍ଧିଜୀଙ୍କ ବକ୍ତବ୍ୟ ଓ ନିଷ୍ପତ୍ତିକୁ ଶୁଣିବା ପରେ ତାଙ୍କୁ ଗାନ୍ଧିଜୀଙ୍କର ନିଷ୍ପତ୍ତି ସଠିକ୍ ବୋଲି ହୃଦ୍‌ବୋଧ ହୋଇଥିଲା । ଗାନ୍ଧୀଙ୍କୁ ଆରେଷ୍ଟ କରାଯାଇ ଛଅବର୍ଷ ଜେଲ ଦଣ୍ଡ ଦିଆଯିବା ଦ୍ୱାରା ମହତାବ ହତୋତ୍ସାହ ହୋଇଥିଲେ । ମହତାବ ଓ ନିରଂଜନ ପଟ୍ଟନାୟକ ଲକ୍ଷ୍ନୌ ଯାଇ ପଣ୍ଡିତ ମଦନମୋହନ ମାଲବ୍ୟଙ୍କୁ କନିକା ପ୍ରଜା ଆନ୍ଦୋଳନ ସଂପର୍କରେ ଅବଗତ କରାଇଥିଲେ । ମାଲବ୍ୟ ଓଡ଼ିଶା ଆସି 144 ଧାରା ଅମାନ୍ୟ କରି କନିକା ଯିବେ ବୋଲି କହିଲେ । ମହତାବ କଟକ ଆସି ମାଲବ୍ୟଙ୍କ ଆସିବା ଖବର ଓ ଆନୁସଙ୍ଗିକ ବନ୍ଦୋବସ୍ତ କରି ବାଲେଶ୍ୱର ଫେରିବା ମାତ୍ରେ ତାଙ୍କୁ 108 ଦଫାରେ ଗିରଫ କରାଗଲା ଓ ରାଜଦ୍ରୋହ ଅପରାଧରେ ଏକ ବର୍ଷ ସଶ୍ରମ କାରାଦଣ୍ଡ ଦିଆଗଲା । ତାଙ୍କୁ ବନ୍ଦୀ କରାଯାଇ ଯେତେବେଳେ କୋର୍ଟରେ ହାଜର କରାଗଲା, ତାଙ୍କ ବିରୋଧରେ ସେ 1921 ମସିହା ପୂର୍ବରୁ ଦେଇଥିବା ଭାଷଣ ଏବଂ 'ସ୍ୱରାଜ୍ୟ ସମାଚାର'ରେ ତାଙ୍କ ଦ୍ୱାରା ଲିଖିତ ଲେଖାକୁ ଅପରାଧ ଭାବେ ନିଆଗଲା । ବିଚାର ସମୟରେ ମହତାବ ନିଜକୁ ରକ୍ଷା କରିବା ପାଇଁ ଆଦୌ ଚାହିଁଲେ ନାହିଁ । କିନ୍ତୁ ପରବର୍ତ୍ତୀ ସମୟରେ ତାଙ୍କ ବିରୋଧରେ ହୋଇଥିବା ଆରୋପକୁ ଖଣ୍ଡନ କରି ସେ ଏକ ଲିଖିତ ବକ୍ତବ୍ୟ ଦେଇଥିଲେ, "ମୁଁ ଅତ୍ୟନ୍ତ ଦୃଢ଼ଭାବରେ କହିପାରେ ଯେ ଯାହା କିଛି ମୁଁ କହିଛି ବା କରିଛି, ତାହା କ୍ରିମିନାଲ ପ୍ରୋସିଡ଼ିୟୋର କୋର୍ଡର 124 ଧାରା ଦ୍ୱାରା ଦଣ୍ଡନୀୟ । ମୁଁ ଗାନ୍ଧୀଙ୍କ ବିଚାରକୁ ବାଲେଶ୍ୱର ଜିଲ୍ଲାରେ ପ୍ରଚାର କରିବାରେ ସୁଯୋଗ ପାଇଥିଲି ଏବଂ ଗାନ୍ଧୀ ସେହି କାର୍ଯ୍ୟ କରି ଜେଲଦଣ୍ଡ ଭୋଗିଛନ୍ତି । ମୁଁ ଯାହା କିଛି ଦୃଢ଼ଭାବରେ ବିଶ୍ୱାସ କରେ, ତାହାକୁ ପ୍ରଚାର କରେ । ଏବଂ ମୁଁ ଲୋକମାନଙ୍କୁ ଏହାକୁ ବିଚାର କରି ଗ୍ରହଣ କରିବାକୁ ନିବେଦନ କରୁଛି । ମୁଁ ମୋର ମତ ଲୋକମାନେ ଗ୍ରହଣ କରନ୍ତୁ ଏଥିପାଇଁ ବାଧ୍ୟ କରି ନାହିଁ । ମୋର ମତ ଯେ ବର୍ତ୍ତମାନର ସରକାର ଅତ୍ୟନ୍ତ ଅନୈତିକ ଏବଂ ସ୍ୱେଚ୍ଛାଚାରୀ ଏବଂ କ୍ଷଣେ ମାତ୍ର ଶାସନରେ ରହିବାର ଅଧିକାର ନାହିଁ । ଏଥିରେ କେହି ବାଧା ଦେବା ମଧ୍ୟ ଉଚିତ ନୁହେଁ । ଏହି ସରକାର ତୁରନ୍ତ ଉଭେଇ ଯିବା ଦରକାର ଏବଂ

ଏହା ହିଁ ମୋର ଦୃଢ଼ବିଶ୍ୱାସ ।"

"ଗୋଟିଏ ସଂଖ୍ୟାଲଘୁ ସରକାର ବିଶ୍ୱଲୋକସଂଖ୍ୟାର ଏକ ତୃତୀୟାଂଶ ଲୋକଙ୍କ ଉପରେ ଶାସନ କରିବ ଏବଂ ସେମାନଙ୍କୁ କ୍ରୀତଦାସ କରି ରଖିବ, ଏହାକୁ ପ୍ରତ୍ୟେକ ଆତ୍ମ ସମ୍ମାନ ଥିବା ବ୍ୟକ୍ତି ନିଜ ଜୀବନ ବିନିମୟରେ ବିରୋଧ କରିବା ଆବଶ୍ୟକ ।"

"ବାସ୍ତବରେ କହିବାକୁ ଗଲେ ମାନବିକତା ଦୃଷ୍ଟିରୁ ରାଜନୈତିକ ଦୃଷ୍ଟିଭଙ୍ଗୀରୁ ନ ହେଲେ ମଧ୍ୟ ପ୍ରତ୍ୟେକ ବ୍ୟକ୍ତି ଅସହଯୋଗ ଆନ୍ଦୋଳନରେ ଯୋଗ ଦେବା ଉଚିତ । କୌଣସି ବ୍ୟକ୍ତିର ଜୀବନ କେବଳ ଖାଇବା, ଶୋଇବା ଏବଂ ଟଙ୍କା ରୋଜଗାର କରିବା ଉଦ୍ଦେଶ୍ୟ ହେବା ଉଚ୍ଚିତ ନୁହେଁ । ଅସହଯୋଗର ଜଣେ ସାଧାରଣକର୍ମୀ ହିସାବରେ, ମୁଁ ମୋର ଦାୟିତ୍ୱ ଅତି ନିଷ୍ଠାପର ଭାବରେ ପାଳନ କରିବାକୁ ଚେଷ୍ଟା କରିଛି ଏବଂ ଏହା କରିବା ପୂର୍ବରୁ ମୁଁ କ୍ରିମିନାଲ ପ୍ରସିଡ୍ୟୁୟର କୋର୍ଡ଼ର 124 ଧାରା ଅନୁଯାୟୀ ଦଣ୍ଡନୀୟ ହେବି । ଏହା ମଧ୍ୟ ଉଲ୍ଲେଖ କରାଯିବା ଉଚିତ ଯେ ଯେଉଁମାନେ ପ୍ରତ୍ୟକ୍ଷ ବା ପରୋକ୍ଷରେ ନିର୍ଯ୍ୟାତିତ କରାଇବାର ନୀତିକୁ ସମର୍ଥନ କରୁଛନ୍ତି ସେମାନେ ଈଶ୍ୱରଙ୍କ ସମ୍ମୁଖରେ ଏବଂ ନିଜ ବିବେକ ନିକଟରେ ମଧ୍ୟ ଦୋଷୀ ।"

"ମୁଁ ସମସ୍ତ ସାମରିକ ଓ ବେସାମରିକ ସରକାରୀ କର୍ମଚାରୀମାନଙ୍କୁ ନିବେଦନ କରିଛି ଯେ ସେମାନେ ସରକାରଙ୍କୁ ବାସନ୍ଦ କରନ୍ତୁ । ଏବଂ ଏପରି ନିର୍ଯ୍ୟାତନା ଦେଉଥିବା ଯନ୍ତ୍ରକୁ ଅକାମୀ କରିଦିଅନ୍ତୁ । କାରଣ ଏହି ସରକାର ଅଧୀନରେ ପ୍ରତ୍ୟେକ ବ୍ୟକ୍ତିର ଆତ୍ମସମ୍ମାନ ଏବଂ ମାନବିକତା କ୍ଷୁଣ୍ଣ ହେଉଛି । 1921 ଏପ୍ରିଲ 6 ତାରିଖଠାରୁ ମୁଁ ଏହି କଥା ପ୍ରଚାର କରିଚାଲିଛି ଏବଂ ବାଲେଶ୍ୱରର ସମସ୍ତ ଅଞ୍ଚଳରେ ପ୍ରଚାରପତ୍ର ଏହି ଉଦ୍ଦେଶ୍ୟ ରଖି ବାଣ୍ଟୁଛି ।

ଏହା ଉଲ୍ଲେଖ କରିବା କଥା ଯେ ମୁଁ ହିଂସାରେ ବିଶ୍ୱାସ କରେ ନାହିଁ କିମ୍ବା କୌଣସି ପ୍ରକାର ହିଂସାତ୍ମକ କାର୍ଯ୍ୟ କରାଯିବାକୁ ମୁଁ ପ୍ରଶୟ ଦେଇ ନାହିଁ ବାଲେଶ୍ୱରଠାରେ ହେଉଥିବା ସମସ୍ତ ଅସହଯୋଗ ଆନ୍ଦୋଳନକୁ ହିଂସାତ୍ମକ କହି ଦୋଷ ଦେବା ଠିକ୍ ନୁହେଁ । ମୁଁ ମୋର ବିରୋଧୀ ପକ୍ଷମାନଙ୍କୁ ଏଥିପାଇଁ ଆହ୍ୱାନ କରୁଛି ଯେ ସେମାନେ ଏହି ଆନ୍ଦୋଳନ ହିଂସାତ୍ମକ ମୋଡ଼ କେଉଁଠି ନେଇଛି ବୋଲି ପ୍ରମାଣ କରନ୍ତୁ ଏବଂ ମୁଁ ହିଂସା ପ୍ରଚାର କରିଛି ବୋଲି ମଧ୍ୟ ପ୍ରମାଣ ଦିଅନ୍ତୁ । ମୁଁ ଏହାକୁ ସଂପୂର୍ଣ୍ଣ ବିରୋଧ କରେ । ମୁଁ ମଧ୍ୟ ଜାତିଗତ ବିଦ୍ୱେଷ କରିନାହିଁ । ଏଠାରେ ସରକାର କହିବା ଅର୍ଥ ମୁଁ ଭାରତୀୟମାନଙ୍କୁ ମଧ୍ୟ ନିଏ, ଯେଉଁମାନେ ଏହି ସରକାର ଗଠନ କରିଛନ୍ତି । ମୁଁ ସେମାନଙ୍କୁ କହୁଛି ।"

"ଭଲ ବ୍ୟବହାର ପ୍ରଦର୍ଶନ କଲେ ଜାମିନ ମିଳିବ, ମୁଁ ସେହି ଆଇନ ସହିତ ସହମତ ନୁହେଁ । ମୁଁ ଯେତେ ଲମ୍ବା ବନ୍ଦୀଜୀବନ କାଟିବାକୁ ହେବ, ସେଥିପାଇଁ ପ୍ରସ୍ତୁତ । କିନ୍ତୁ କୌଣସି ଲିଖିତ ପ୍ରତିଜ୍ଞା ପତ୍ର ଦେବି ନାହିଁ ।"

(ଖ) ଜେଲ ଜୀବନ : ସ୍ୱାଧୀନତା ସଂଗ୍ରାମର ଇତିହାସ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଆତ୍ମଗୋପନ ଓ ଜେଲ ଯିବାର ଇତିହାସ । ମହତାବଙ୍କୁ ଅଧାଜଂଘିଆ ଓ ହାତକଟା ଜାମା ପିନ୍ଧେଇ ହାତରେ ହାତକଡ଼ି ଓ ଗୋଡ଼ରେ ବେଡ଼ି ଦେଇ ବାଲେଶ୍ୱର ଜେଲରୁ କଟକ

ଜେଲକୁ ନିଆ ଯାଇଥିଲା । ପ୍ରଥମେ 14 ସେର ନଡ଼ିଆକତା ରସି ବଳିବାକୁ ଦିଆହେଲା । କଟକଠାରୁ ତାଙ୍କର ଆରମ୍ଭ ହୋଇଥିବା ଜେଲ ଜୀବନ ସଂପର୍କରେ ଉଲ୍ଲେଖ କରି ସେ କହିଛନ୍ତି, "ଦୁଇଖଣ୍ଡ ଜଂଘିଆ, ଯାହା ମୋର ଜଂଘର ଅଧେ ପର୍ଯ୍ୟନ୍ତ ଆସୁଥିଲା, ଦୁଇଖଣ୍ଡ ହାତ ନଥିବା ଜାମା ଓ ଖଣ୍ଡେ ଛୋଟ କନା ମିଳିଥାଏ ଗାମୁଛା କରିବା ପାଇଁ । ଆଉ ଖଣ୍ଡେ ଟୋପି, ତିନିକୋଣିଆ ଏକଇଞ୍ଚ ମୋଟା କାଠ ଖଣ୍ଡିକରେ କଇଦି ନମ୍ବର, କେତେ ମାସ ସଜା, ଜେଲ ହେବା ତାରିଖ ତାରି ଉପରେ ଗରମ ଲୁହାରେ ଦାଗା ହୋଇଥାଏ । ତାହା ପତଳା ଲୁହାଛଡ଼ରେ ଗୁଛା ହୋଇ ମାଳପରି ବେକର ପଛପାଖରେ ଏପରି ଆଣ୍ଠି ଦିଆ ହୋଇଥାଏ ଯେ, ସେ କାଠମାଳ ଆଉ ବାହାରି ପାରିବ ନାହିଁ । xxx ଏହା ଛଡ଼ା ଆଉ ଦୁଇଖଣ୍ଡ ଥାଳି, ଖଣ୍ଡେ ବଡ଼ ଆଉ ଖଣ୍ଡେ ଟିକିଏ ସାନ ମିଳିଥାଏ । ଖଣ୍ଡକରେ ଖାଇବା ପାଇଁ ଓ ଆଉ ଖଣ୍ଡକରେ ପାଣି ପିଇବା ପାଇଁ ବା ଲୋଟା ପରି କାରବାର କରିବା ପାଇଁ । ସେଇଥିରେ ପାଣି ନେଇ ଝାଡ଼ା ଫେରିଯିବାକୁ ହୁଏ । ଅନେକ ପୁରୁଣା କଇଦି ଇଟାଗୁଣ୍ଡରେ ଭଲ କରି ମାଜି ଏଇ ଲୁହାଥାଳିକୁ ଜକ୍ ଜକ୍ କରି ରଖିଥାଆନ୍ତି । ମୋତେ ଅନ୍ତତଃ ଘଣ୍ଟାଏ ଏହା ପଛରେ ପ୍ରତିଦିନ ଲାଗିବାକୁ ପଡୁଥିଲା, ଏହାକୁ ସାଫ୍ ରଖିବା ପାଇଁ । ଝାଡ଼ା ଫେରିବା ପାଇଖାନାର ବନ୍ଦୋବସ୍ତ ଏପରି ଯେ ସମସ୍ତେ ଏକ ସାଙ୍ଗରେ ଏକା ସମୟରେ ଝାଡ଼ା ଫେରିଯିବେ, ପରଦାର ବ୍ୟବସ୍ଥା ନାହିଁ । xxx ଖାଇବାକୁ ମିଳିଥିବା ଭାତ, ଡାଲି, ଶାଗ ଓ ତେନ୍ତୁଳି । ଭାତରେ ଏତେ ଗୋଡ଼ି ଯେ ଚୋବାଇ ଖାଇବାର ଜୁ ନଥିଲା ।"

କଟକ ଜେଲରେ ମହତାବଙ୍କୁ ବେଶିଦିନ ରହିବାକୁ ହୋଇନଥିଲା । ମାସକ ପରେ ତାଙ୍କର ଭାଗଲପୁର କେନ୍ଦ୍ରୀୟ ଜେଲକୁ ବଦଳି ହେଲା । ଭାଗଲପୁର ଜେଲରେ ମଧ୍ୟ କଠିନ ଶାରୀରିକ ପରିଶ୍ରମ କରିବାକୁ ଦିଆଯାଉଥିଲା । କୌଣସି ଖବର କାଗଜ ପଢ଼ିବାକୁ ମିଳୁନଥିଲା । ବହି ଭିତରେ ମିଳୁଥିଲା ଗୀତା, ଭାଗବତ ଓ ଅନ୍ୟାନ୍ୟ ଧର୍ମ ପୁସ୍ତକ । ମହତାବଙ୍କ ପାଖରେ ସେତେବେଳେ ତିନି ଗୋଟି ବହି ଥିଲା । ତିନକ ଗୀତା, ଖଣ୍ଡିଏ ବାଇବେଲ ଓ ରବୀନ୍ଦ୍ରନାଥଙ୍କ 'ଶାନ୍ତି ନିକେତନ' । ଭାଗଲପୁର ଜେଲରେ ଥିବାବେଳେ ସେ ଗୋଟିଏ ଉପନ୍ୟାସ 'ଅଜବ ଦୁନିଆଁ' ଲେଖିଥିଲେ । ଇଂରାଜୀରେ 'ଫ୍ରି ଥିଙ୍କିଙ୍ଗ'ନାମରେ ଅନ୍ୟ ଏକ ବହି ମଧ୍ୟ ଲେଖିଥିଲେ । 'ଅଜବ ଦୁନିଆଁ' ଉପନ୍ୟାସଟି ଛପା ଆକାରରେ ବାହାରି ପାରିଲା ନାହିଁ କାରଣ 1930 ଆନ୍ଦୋଳନ ସମୟରେ ପୋଲିସ ସ୍ୱରାଜ୍ୟ ମନ୍ଦିର ଖାନତଲାସ କରି ଏହି ପାଣ୍ଡୁଲିପିଟିକୁ ଜବତ କରି ପୋଡ଼ି ଦେଇଥିଲେ ।

ଜେଲ ଅବଧି ପୂରିଯିବା ପରେ ଭାଗଲପୁର ଜେଲରୁ ହଜାରିବାଗ ଯାଇ ଗୋପବନ୍ଧୁଙ୍କୁ ସାକ୍ଷାତ କରି ସେ ବାଲେଶ୍ୱର ଫେରି ଆସିଥିଲେ । କଟକରେ ଥିବାବେଳେ ପ୍ରଚାର ଉଦ୍ଦେଶ୍ୟରେ 'ପ୍ରଜାତନ୍ତ୍ର' ନାମରେ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରିଥିଲେ । ଏହାର ମୂଳ ଉଦ୍ଦେଶ୍ୟ ଥିଲା ଗାନ୍ଧିନୀତି ଓ ଗଠନମୂଳକ କାମର ପ୍ରଚାର । ବାଲେଶ୍ୱରରେ ପ୍ରେସ୍ ପକାଇ ପ୍ରଜାତନ୍ତ୍ର ପ୍ରକାଶିତ ହେଲା । 1923 ମସିହା ଶେଷ ବେଳକୁ ଜିଲ୍ଲାବୋର୍ଡ଼ ଓ ମ୍ୟୁନିସିପାଲିଟି ନିର୍ବାଚନ ହେଲା । କଂଗ୍ରେସ ଏହି ନିର୍ବାଚନରେ ଅଂଶଗ୍ରହଣ କରିବାକୁ ସ୍ଥିର କରିଥିବାରୁ ମହତାବ ସେଥିରେ ଅଂଶ ଗ୍ରହଣ କରିଥିଲେ ଏବଂ ଚେୟାରମ୍ୟାନ ହୋଇଥିଲେ ।

ଜିଲ୍ଲାବୋର୍ଡ ପରିଚାଳନା ସହିତ ସେ କଂଗ୍ରେସ କାର୍ଯ୍ୟକ୍ରମକୁ ବାଲେଶ୍ୱର ଜିଲ୍ଲାରେ ଚଳାଇ ରଖିଥିଲେ ଏବଂ ସ୍ୱରାଜ୍ୟ ମନ୍ଦିର ଏହାର ପ୍ରାଣ କେନ୍ଦ୍ର ଥିଲା । କଂଗ୍ରେସର ନିର୍ଦ୍ଦେଶ ଅନୁସାରେ ସେ ବିହାର-ଓଡ଼ିଶା ଲାଟସଭାକୁ ଛିଡ଼ା ହେବା ପାଇଁ ମନୋନୀତ ହେଲେ ଓ ନିର୍ବାଚିତ ହେଲେ । ସେ ଲାଟସଭାରେ ପ୍ରାୟ ବର୍ଷେ ରହିଥିଲେ । 1927 ମସିହାରେ ବାଲେଶ୍ୱରରେ ପ୍ରବଳ ବନ୍ୟା ସମସ୍ୟା ସହିତ ଅଫିମ ସମସ୍ୟା ଓ କନିକା ସମସ୍ୟା ମଧ୍ୟ ତାଙ୍କୁ ମୁକାବିଲା କରିବାକୁ ହୋଇଥିଲା ।

ଗାନ୍ଧିଜୀଙ୍କର ଓଡ଼ିଶା ଆଗମନ ଓ ଓଡ଼ିଶାରେ ଚାରିଦିନ ରହଣିର ଦାୟିତ୍ୱ ମହତାବ ନେଇଥିଲେ । ଗାନ୍ଧିଜୀଙ୍କ ସହିତ ତାଙ୍କର ଆଲୋଚନା ଓ କଥାବାର୍ତ୍ତା ତାଙ୍କୁ ବେଶ୍ ପ୍ରଭାବିତ କରିଥିଲା ଏବଂ ତାଙ୍କର ସବୁ କାମରେ ପଥ ପ୍ରଦର୍ଶକ ହୋଇଥିବାର ସେ ଉଲ୍ଲେଖ କରିଛନ୍ତି ।

"ମୁଁ ଗାନ୍ଧିଜୀଙ୍କୁ ଓଡ଼ିଶା ରାଜନୀତି ସମ୍ବନ୍ଧରେ ସମସ୍ତ ଖବର ଦେଇଥିଲି । ସେ ସବୁ ଶୁଣି କହିଲେ, ଦୁନିଆରେ ନ୍ୟାୟ ସବୁବେଳେ ଯଶସ୍ୱୀ ହୁଏ । ଧୂର୍ତ୍ତତା ମଧ୍ୟ କିଛିଦୂର ପର୍ଯ୍ୟନ୍ତ ଯଶସ୍ୱୀ ହୁଏ, ମାତ୍ର ଓଡ଼ିଶାରେ ନ୍ୟାୟ ନାହିଁ କି ଧୂର୍ତ୍ତତା ନାହିଁ, ଏଥିରେ ଯଶ କେଉଁଠୁ ଆସିବ ? କର୍ମକୁଶଳତାର ବଡ଼ ଅଭାବ ତୁମର ଏଠି ।"

"ଆଉ ଥରେ ମୁଁ ପଚାରିଲି , ମହାତ୍ମାଜୀ, ଅହିଂସାର ପ୍ରଚାର ଓଡ଼ିଶାରେ କ୍ଷତି କରୁଛି । ଆମ ଏଠି ଲୋକେ ନିତାନ୍ତ ଅସଭ୍ୟ ଭାଷାରେ ଗାଳି ଶୁଣି, ମାଡ଼ ଖାଇ ମଧ୍ୟ କୌଣସି ପ୍ରକାର ପ୍ରତିରୋଧର କଳ୍ପନା ସୁଦ୍ଧା କରୁନାହାନ୍ତି । ସେଠି ମାଡ଼ ଗାଳି ଖାଇ ସୁଦ୍ଧା ସହିଯାଅ ବୋଲି ପ୍ରଚାର ନିରର୍ଥକ ଓ ତମୋଗୁଣର ସହାୟକ ନୁହେଁ କି ?"

ମହାତ୍ମାଜୀ ଏ ବିଷୟକୁ ବୁଝାଇ କହିଥିଲେ – "ମୁଁ ବୁଝୁଛି ତୁମେ ଯା'କହୁଛ । ଅବସ୍ଥା ଅନୁସାରେ କାର୍ଯ୍ୟକରିବା କର୍ମୀ ଉପରେ ନିର୍ଭର କରେ । ଅହିଂସା ହେଉଛି ସର୍ବୋତ୍କୃଷ୍ଟ ପନ୍ଥା । କର୍ମୀ ନିଜ ଉପରେ ଦାୟିତ୍ୱ ନେଇ ଅବସ୍ଥା ଅନୁସାରେ ବ୍ୟବସ୍ଥା କରି ପୂର୍ଣ୍ଣ ଅହିଂସା ବା ସତ୍ତ୍ୱଗୁଣ ଆଡ଼କୁ ଲୋକଙ୍କୁ ନେବାକୁ ଚେଷ୍ଟା କରିବ । ତୁମେ ଯେପରି କହୁଛ ସେପରି ଅହିଂସା ପ୍ରଚାର ମୋର ଉଦ୍ଦେଶ୍ୟ ନୁହେଁ; ତେଣୁ ମୋ ଅହିଂସାକୁ ମୁଁ ଗତିଶୀଳ ଅହିଂସା ବୋଲି କହେ ।"

"ଗାନ୍ଧିଜୀଙ୍କୁ ତାଙ୍କର ଖଦୀ ଆନ୍ଦୋଳନ ସମ୍ବନ୍ଧରେ କହିଥିଲି, ମହାତ୍ମାଜୀ, ଆପଣ ଓଡ଼ିଶାରେ ଖଦୀ ପାଇଁ ଏତେ ଚେଷ୍ଟା କରୁଛନ୍ତି, ମାତ୍ର ଓଡ଼ିଶାର ଇତିହାସ, ସେଟଲମେଣ୍ଟ ରିପୋର୍ଟପ୍ରଭୃତିରୁ ସ୍ପଷ୍ଟ ଜଣା ଯାଉଛି ଯେ, ଓଡ଼ିଶାରେ ଚାଷ ସାଙ୍ଗକୁ ଲୁଣମରା ହିଁ ସହାୟକ ବୃତ୍ତି ଥିଲା । ସେ ଲୁଣମରା ବନ୍ଦ ହେବା ଦିନୁଁ ଓଡ଼ିଶା ଦରିଦ୍ର ହୋଇଗଲା । ଖଦୀ ପରିବର୍ତ୍ତେ ଲୁଣମରା ଚାଲୁ ହେବା ପାଇଁ ଚେଷ୍ଟା କରିବା ଉଚିତ ନୁହେଁ କି ?" ମହାତ୍ମାଜୀ ଅଳ୍ପ ହସି କହିଲେ, "ଆଚ୍ଛା ଖଦୀର ମହତ୍ତ୍ୱ ପଛେ କହିବି, ଲୁଣମରା ଚାଲୁହେବା ପାଇଁ 25 ଜଣ ଲୋକ ଜୀବନ ଦେବାକୁ ବାହାର କର, ମୁଁ ତାହା ଓଡ଼ିଶାରେ କରାଇ ଦେବି । ବାହାର କରି ପାରିବ ?" ମୁଁ ସେତେବେଳେ ଉତ୍ସାହ ସହକାରେ କହିଥିଲି, "ଆଚ୍ଛା ଲୋକ ବାହାରିବେ ।" ଗାନ୍ଧିଜୀ ତାପରେ କହିଥିଲେ, "ଆଚ୍ଛା ଯେଉଁଦିନ 25 ଜଣ ଲୋକ ସେଥିପାଇଁ ଜୀବନ ଦେବାକୁ ପ୍ରସ୍ତୁତ ହେବେ, ମୋତେ ଲେଖିବ, ମୁଁ ଓଡ଼ିଶା ଆସି ସେ ଆନ୍ଦୋଳନ କରିବି ।" ମହତାବ ମାତ୍ର ଦୁଇଜଣ ଲୋକ ପାଇଥିଲେ, ଆନ୍ଦୋଳନ ପାଇଁ ପଚିଶ ଜଣ ବାହାରି ନଥିଲେ ।

ସାଇମନ୍ କମିଶନଙ୍କର ଭାରତ ଗସ୍ତକୁ ଦେଶ ବ୍ୟାପୀ ବିରୋଧ କରାଯାଉଥିବା ବେଳେ ଓଡ଼ିଶାରେ ଓଡ଼ିଶା ପ୍ରଦେଶ ଗଠନ କରିବା ନେଇ କେତେକ କମିଶନକୁ ସ୍ୱାଗତ କରୁଥିବା ବେଳେ କେତେକ ବିରୋଧ କରୁଥାନ୍ତି । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟୀ ଏହା ବିରୋଧରେ ବିକ୍ଷୋଭ କରିବା ନେଇ ପ୍ରସ୍ତାବ ଗ୍ରହଣ କରିଥାଏ । ମହତାବ ବାଲେଶ୍ୱର ଠାରେ ସାଇମନ କମିଶନ ବିରୋଧରେ ବିକ୍ଷୋଭ ଓ ସଭା କରଥିଲେ । ମହତାବ ତାଙ୍କର ରାଜନୈତିକ ଜୀବନର ପ୍ରାରମ୍ଭରେ ବିଭିନ୍ନ କ୍ଷେତ୍ରରେ ନୂତନ ଚେ଼ତନା ଉଦ୍ରେକ କରିପାରିବା ସହିତ ସ୍ୱାଧୀନତା ଆନ୍ଦୋଳନ ସହିତ ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ ହୋଇ କଂଗ୍ରେସର ଅସହଯୋଗ ଆନ୍ଦୋଳନ ଓ ଗଠନମୂଳକ କାର୍ଯ୍ୟକୁ ଲୋକାଭିମୁଖୀ କରି ପାରିଥିଲେ । କନିକା ରାଜାଙ୍କ ଦ୍ୱାରା ତାଙ୍କ ଉପରେ ବାରମ୍ବାର ବ୍ୟକ୍ତିଗତ ଆକ୍ଷେପ ଓ ଆକ୍ରମଣକୁ ସେ ଅତ୍ୟନ୍ତ ଧୈର୍ଯ୍ୟର ସହ ମୁକାବିଲା କରି ନିଜର ବୁଦ୍ଧିମତ୍ତାର ମଧ୍ୟ ପରିଚ଼ୟ ଦେଇଥିଲେ ।

ନିଜ ଜିଲ୍ଲା ବାଲେଶ୍ୱରରେ ମହତାବଙ୍କର ଆଧିପତ୍ୟକୁ କ୍ଷୁଣ୍ଣ କରିବା ପାଇଁ କନିକା ଦଳ ଲାଗି ପଡ଼ିଲେ । ମହତାବଙ୍କ ନେତୃତ୍ୱରେ କଂଗ୍ରେସ ଦ୍ୱାରା ଜିଲ୍ଲା ବୋର୍ଡ ଗଠନକୁ କନିକା ରାଜାଙ୍କ ପକ୍ଷରେ ସହ୍ୟ କରିବା ଥିଲା କଷ୍ଟସାଧ୍ୟ । ତାଙ୍କ ବିରୋଧରେ ଗୋଟିଏ ମକଦମା ରୁଜୁ କରାଗଲା । ବିହାର ଓଡ଼ିଶା ଲାଟସଭାକୁ ମହତାବ ନିର୍ବାଚ଼ିତ ହେବା ବେଳେ ଅଧିକ ଅର୍ଥ ବ୍ୟୟ କରି ମିଥ୍ୟା ଭାଉଚ଼ର ଦେଇଥିବାର ଦର୍ଶାଗଲା । ହାଇକୋର୍ଟ ତାଙ୍କ ରାୟରେ ଭୁଲ୍ ନିର୍ବାଚ଼ନ ଖର୍ଚ୍ଚ ଦେବା ଅଭିଯୋଗରେ ମହତାବଙ୍କ ନିର୍ବାଚନକୁ ଅସିଦ୍ଧ କଲେ । ଏବଂ ସେଥିରେ ମଧ୍ୟ କୁହାଗଲା ଯେ ସେ ଆଗାମୀ ପାଞ୍ଚବର୍ଷ ପାଇଁ ନିର୍ବାଚ଼ନ ଲଢିପାରିବେ ନାହିଁ । ଏ ସଂପର୍କରେ ବହୁ ଲୋକଙ୍କର ଧାରଣା ହୋଇଥିଲା ଯେ କନିକା ରାଜା ମହତାବଙ୍କ ବିରୁଦ୍ଧରେ ନିଷ୍ପତ୍ତି ଦେବା ପାଇଁ ହାଇକୋର୍ଟ ଜଜ୍‌ଙ୍କୁ ଅର୍ଥ ଲାଞ୍ଚ ଦେଇଥିଲେ । କୋର୍ଟର ରାୟ ପ୍ରକାଶ ପାଇବାପରେ ନିର୍ବାଚ଼ନରେ ଅଧିକ ଖର୍ଚ୍ଚ ଦେଖାଇବା ଅଭିଯୋଗରେ ତାଙ୍କ ବିରୋଧରେ କ୍ରିମିନାଲ କେସ୍ କରାକଲା ।

ତତ୍ ସହିତ ଜିଲ୍ଲା ବୋର୍ଡ଼ର ଅଧ୍ୟକ୍ଷ ଭାବେ ମହତାବ ପ୍ରାୟ ଲକ୍ଷେ ଟଙ୍କା ଅଧିକ ଖର୍ଚ୍ଚ କରିଥିବାରୁ, ତାହାକୁ ଫେରାଇବାକୁ ତାଙ୍କୁ କୁହାଗଲା । କମିଶନର ଏହି ଅଭିଯୋଗ ଆଣିବାର କାରଣ ହେଲା ମହତାବ ତାଙ୍କ ବିରୋଧରେ ଆତ୍‌ଭେନଚ଼ର ପତ୍ରିକାରେ ପୂର୍ବରୁ ଏକ ଅଭିଯୋଗ ଆଣିଥିଲେ । ସେ ଅଭିଯୋଗଟି ହେଲା ଜଣେ ରାଜା ଏକ ନାବାଳିକା ଝିଅକୁ ଧର୍ଷଣ କରିଥିଲେ ସୁଦ୍ଧା କମିଶନର ତାଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ନ କରି ତାଙ୍କୁ ଘଣ୍ଟ ଘୋଡ଼ାଇ ଥିଲେ । ଏବଂ ପାଟନା ହାଇକୋର୍ଟ ମଧ୍ୟ ସେହି କମିଶନରଙ୍କ ବିରୋଧରେ ମତ ଦେଇଥିଲେ ।

ମହତାବଙ୍କ ବିରୋଧରେ ଏହି ଅଭିଯୋଗ ଫଳରେ ସେ ହତୋତ୍ସାହ ହୋଇ ପଡ଼ିଥିଲେ ସୁଦ୍ଧା ତାହାକୁ ଧୈର୍ଯ୍ୟ ଓ ସାହସର ସହିତ ମୁକାବିଲା କରିଥିଲେ । ଏହି ବିପଦ ବେଳେ ତାଙ୍କର ବହୁବନ୍ଧୁ ତାଙ୍କୁ ଛାଡ଼ି ଚାଲିଯାଇଥିଲେ । ତାଙ୍କୁ ଧୈର୍ଯ୍ୟ ଓ ସାହସ ଦେଇଥିଲେ ପଣ୍ଡିତ ଗୋପବନ୍ଧୁ ଦାସ । ପାଟନାରୁ ପ୍ରକାଶିତ ହେଉଥିବା ପତ୍ରିକା ସର୍ଚ୍ଚଲାଇଟ ମହତାବଙ୍କ ସପକ୍ଷରେ ଲେଖିଥିଲେ ।

କନିକା ଦଳ ଜାଣିଥିଲେ ଯେ ମହତାବ ଏଥିରୁ ମୁକୁଳି ପାରିବେ ନାହିଁ । କିନ୍ତୁ ସେମାନଙ୍କର

ଚାଲ୍ ସଫଳ ହୋଇ ପାରି ନଥିଲା । ସେ ତାଙ୍କ ଜବାବରେ ଲେଖିଥିଲେ, "ମୁଁ ସେ ଟଙ୍କା ଦେବା ପାଇଁ ପ୍ରସ୍ତୁତ ମାତ୍ର ସେ ଟଙ୍କାରେ ଯେଉଁ କାମ ହୋଇଛି, କୂଅ, ପୋଖରୀ ଓ ଡାକ୍ତରଖାନା ସେସବୁ ମୋର ହେବ । କାରଣ ଜିଲ୍ଲା ବୋର୍ଡ଼ ବା ସରକାର ଟଙ୍କାକୁ ଟଙ୍କା ଓ ସେଥିରେ ହୋଇଥିବା କାମ ଉଭୟ ନେଇ ପାରିବେ ନାହିଁ ।"

ମହତାବଙ୍କ ବିରୋଧରେ ହୋଇଥିବା ଫୌଜଦାରୀ ମକଦମାର ରାୟ ପ୍ରକାଶ ପାଇଲା ଏବଂ ହାକିମ ଶ୍ରୀ ନନ୍ଦଲାଲ ସିଂହ ତାଙ୍କୁ ନିର୍ଦ୍ଦୋଷ କହି ଦୋଷମୁକ୍ତ କଲେ । ଏବଂ ଏକାଉଣ୍ଟାଣ୍ଟ ଜେନେରାଲ୍ ମଧ୍ୟ  ତାଙ୍କର କୈଫିୟତକୁ ଗ୍ରହଣ କରି ତାଙ୍କ ଉପରେ ହୋଇଥିବା ସରଚାର୍ଯ ଆଦାୟ ନିର୍ଦ୍ଦେଶକୁ ରଦ୍ଦ କଲେ ।

ବିପଦରୁ ମୁକ୍ତ ହୋଇ ସେ ବନ୍ଧୁ ଶୁଭେଚ୍ଛୁମାନଙ୍କୁ ଭୋଜି ଦେବାକୁ ପ୍ରସ୍ତୁତ ହେବା ବେଳେ ତାର ଆସି ପହଞ୍ଚିଲା । ପଣ୍ଡିତ ଗୋପବନ୍ଧୁ ସତ୍ୟବାଦୀରେ ହୃଦରୋଗରେ ପ୍ରାଣତ୍ୟାଗ କରିଛନ୍ତି । ଏହା ତାଙ୍କ ମନକୁ ଦୁଃଖିତ କଲା । ତାଙ୍କ ମନର ଉଲ୍ଲାସ ଭାଙ୍ଗିଗଲା । ସେ ଗୋପବନ୍ଧୁଙ୍କ ମୃତ୍ୟୁ ଓ ଓଡ଼ିଶା କଂଗ୍ରେସ ଅନୁଷ୍ଠାନ ସଂପର୍କରେ ଚିନ୍ତିତ ହୋଇ ପଡ଼ିଲେ ।

**(ଗ) ଅସହଯୋଗ ଆନ୍ଦୋଳନ :** 1929 ଡିସେମ୍ବର ମାସରେ ଲାହୋରଠାରେ କଂଗ୍ରେସ ଅଧିବେଶନ ବସି ପୂର୍ଣ୍ଣସ୍ୱରାଜ୍ୟ ପାଇଁ ପ୍ରସ୍ତାବ ଗ୍ରହଣ କରାଗଲା । 1930 ମସିହାରେ ମହତାବ ଉତ୍କଳ ପ୍ରାଦେଶିକ କମିଟୀର ସଭାପତି ଭାବେ ନିର୍ବାଚିତ ହେଲେ । ଗାନ୍ଧିଜୀ ଦାଣ୍ଡିଠାରେ ଲବଣ ସତ୍ୟାଗ୍ରହ ଆରମ୍ଭ କରିବା ପାଇଁ ଘୋଷଣା କଲେ । ଅସହଯୋଗ ଆନ୍ଦୋଳନ ପୂର୍ବରୁ ଲବଣ ସତ୍ୟାଗ୍ରହ କରିବାର ଚିନ୍ତାଧାରା ବୋଧହୁଏ ମହତାବ ଗାନ୍ଧିଜୀଙ୍କୁ ତାଙ୍କର ଓଡ଼ିଶା ଗସ୍ତ ସମୟରେ ଦେଇଥିଲେ । କାରଣ ଲବଣ ସମସ୍ୟାକୁ ନେଇ ଓଡ଼ିଶାର ଜାତୀୟବାଦୀ ନେତାମାନେ ଚିନ୍ତିତ ଥାନ୍ତି । ଏ ସଂପର୍କରେ ଗୋପବନ୍ଧୁ 1918 ମସିହାରେ ବିହାର ଏବଂ ଓଡ଼ିଶା ଆସେମ୍ବ୍ଲିରେ ନିଜର ବକ୍ତବ୍ୟରେ ପ୍ରକାଶ କରିଥିଲେ । ଓଡ଼ିଶାର ଉପକୂଳ ଜିଲ୍ଲା ବିଶେଷ କରି କଟକ, ପୁରୀ ଓ ବାଲେଶ୍ୱରରେ ଲବଣ ଆଇନ୍‌କୁ ନେଇ ବହୁସଂଖ୍ୟାରେ ହିଂସାତ୍ମକ ଘଟଣା ଘଟିଥିଲା ।

ବାଲେଶ୍ୱରର ଇଞ୍ଚୁଡ଼ିଠାରେ ଏହି ଲବଣ ଆନ୍ଦୋଳନକୁ ଆରମ୍ଭ କରିବାକୁ ପ୍ରଦେଶ କଂଗ୍ରେସ କମିଟୀର ବୈଠକରେ 1930 ମାର୍ଚ୍ଚ 16 ତାରିଖ ବାଲେଶ୍ୱରରେ ବସି ମହତାବଙ୍କର ପ୍ରସ୍ତାବକୁ ଗ୍ରହଣ କଲେ ଏବଂ ଏହାର ନେତୃତ୍ୱ ଗୋପବନ୍ଧୁ ଚୌଧୁରୀ ନେବାର ସ୍ଥିର ହେଲା । ଇଞ୍ଚୁଡ଼ି ବାଲେଶ୍ୱରଠାରୁ ବାର କିଲୋମିଟର ଦୂର । ତାଙ୍କୁ ଯଦି ଆରେଷ୍ଟ କରାଯାଏ, ତେବେ ଆଚାର୍ଯ୍ୟ ହରିହର ଦାସ ନେତୃତ୍ୱ ନେବେ ବୋଲି ନିଷ୍ପତ୍ତି ହେଲା । ମହତାବ ଆନ୍ଦୋଳନର ଭିତ୍ତିଭୂମି ପ୍ରସ୍ତୁତ କରିବେ ଏବଂ ଆନ୍ଦୋଳନରେ ଯୋଗ ଦେବା ପାଇଁ ଲୋକ ସଂଗ୍ରହ କରିବେ । ସତ୍ୟାଗ୍ରହୀମାନଙ୍କର ଯିବା ପଥକୁ ସୁଗମ କରିବା ପାଇଁ ନବକୃଷ୍ଣ ଚୌଧୁରୀ ଓ ପ୍ରାଣକୃଷ୍ଣ ପଡ଼ିହାରୀ ସ୍ୱେଚ୍ଛାସେବକମାନଙ୍କୁ ସଂଗ୍ରହ କରିବାର ଦାୟିତ୍ୱ ନେଲେ । ଜିଲ୍ଲା କଂଗ୍ରେସ କମିଟୀ ଏହି କାର୍ଯ୍ୟରେ ସଂପୂର୍ଣ୍ଣ ନିୟୋଜିତ ରହିବାକୁ ନିର୍ଦ୍ଦେଶ ଦିଆଗଲା ।

ବିଟ୍ରିଶ ସରକାର ସତର୍କତା ମୂଳକ ପଦକ୍ଷେପ ସ୍ୱରୂପ ବିଭିନ୍ନ ସ୍ଥାନରେ 144 ଧାରା ଜାରି କଲେ । କଟକର କାଠଯୋଡ଼ି ବାଲିରେ 23 ମାର୍ଚ୍ଚକୁ ଆନ୍ଦୋଳନ ସଂପର୍କରେ

ଲୋକମାନଙ୍କୁ ବୁଝାଇବା ପାଇଁ ଏକ ସଭା ଅନୁଷ୍ଠିତ ହୋଇଥିଲା । ଏହି ସଭାକୁ ସଂବୋଧିତ କରିଥିଲେ ଗୋପବନ୍ଧୁ ଚୌଧୁରୀ ଏବଂ ପୂର୍ଣ୍ଣଚନ୍ଦ୍ର ବୋଷ ।

1930 ମସିହା ଏପ୍ରିଲ 6 ତାରିଖ । ଗାନ୍ଧିଜୀ ଆରମ୍ଭ କଲେ ତାଙ୍କର ଐତିହାସିକ ଦାଣ୍ଡିଯାତ୍ରା । ସେହି ଦିନ ଗୋପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ହରିହର ଦାସ ସାଙ୍ଗରେ 21 ଜଣ ସ୍ୱେଚ୍ଛାସେବକଙ୍କୁ ନେଇ ସ୍ୱରାଜ ଆଶ୍ରମରୁ ପଦଯାତ୍ରା ଆରମ୍ଭ କଲେ । ଦୀର୍ଘ 120 ମାଇଲ ରାସ୍ତାକୁ 7 ଦିନ ମଧ୍ୟରେ ଅତିକ୍ରମ କରି 13 ତାରିଖରେ ଇଞ୍ଚୁଡ଼ିରେ ପହଞ୍ଚି ଲବଣ ଆଇନ୍ ଅମାନ୍ୟ କରିବେ । ଆଇନ୍ ଅମାନ୍ୟ ପୂର୍ବଦିନ ମହତାବଙ୍କର ଦୁଇଜଣ ଅତ୍ୟନ୍ତ ଘନିଷ୍ଠ ସହଯୋଗୀ ସୁରେନ୍ଦ୍ରନାଥ ଦାସ ଓ ଜୀବରାମଜୀ କଲ୍ୟାଣଜୀଙ୍କୁ ପୋଲିସ୍ ଗିରଫ କରି 6 ମାସ ଜେଲ ଦଣ୍ଡ ଶୁଣାଇ ଦେଇଥାନ୍ତି । ତଥାପି ଆନ୍ଦୋଳନ ପାଇଁ ବ୍ୟାପକ ପ୍ରସ୍ତୁତି ଚାଲିଥିଲା ।

ଏପ୍ରିଲ 9 ତାରିଖ ଦିନ ଚାନ୍ଦୋଳଠାରେ ଗୋପବନ୍ଧୁ ଚୌଧୁରୀଙ୍କୁ 144 ଧାରା ଭଙ୍ଗ ଅପରାଧରେ ଗିରଫ କରାଯାଇ 7 ଦିନ ଜେଲ ଦଣ୍ଡ ଦିଆଗଲା । ପୁରୀ, ଗଞ୍ଜାମ ଓ ସମ୍ବଲପୁରଠାରୁ ସତ୍ୟାଗ୍ରହୀମାନେ ଦଳ ଦଳ ହୋଇ ବାଲେଶ୍ୱରଠାରେ ପହଞ୍ଚିବାକୁ ଲାଗିଥିଲେ ।

13 ତାରିଖ ସକାଳେ ଆଚାର୍ଯ୍ୟ ହରିହରଙ୍କ ନେତୃତ୍ୱରେ ସତ୍ୟାଗ୍ରହୀମାନେ ଇଞ୍ଚୁଡ଼ି ଠାରେ ଲବଣ ଆଇନ୍ ଅମାନ୍ୟ କଲେ । ହରିହରଙ୍କ ସହିତ ତାଙ୍କର ଛଅଜଣ ସାଥୀଙ୍କୁ ଗିରଫ କରାଗଲା । ବାଲେଶ୍ୱରଠାରେ ଥିବା ପରମିଟ୍ ବିଲଡ଼ିଂ ସତ୍ୟାଗ୍ରହୀମାନଙ୍କର ରହିବା ସ୍ଥାନ ହୋଇଥାଏ । ମହତାବ ସେହିଠାରେ ରହି ଆନ୍ଦୋଳନକୁ ପରିଚାଳନା କରୁଥିଲେ । ଗୋପବନ୍ଧୁ ଚୌଧୁରୀ 7 ଦିନ ପରେ ଜେଲରୁ ମୁକ୍ତ ହୋଇ ବାଲେଶ୍ୱର ଆସି କଂଗ୍ରେସ କାର୍ଯ୍ୟକାରୀ କମିଟୀ ବୈଠକରେ ଯୋଗ ଦେଲେ। ଆନ୍ଦୋଳନକୁ ଆହୁରି ବ୍ୟାପକ କରିବାକୁ ସ୍ଥିର କରାଗଲା। ଏହିଠାରେ ଏପ୍ରିଲ 19 ତାରିଖ ଦିନ ଗୋପବନ୍ଧୁ ଚୌଧୁରୀ, ମହତାବ ଓ ଡକ୍ଟର କୃଷ୍ଣ ପ୍ରସାଦ ମହାନ୍ତିଙ୍କୁ ଆରେଷ୍ଟ କରାଗଲା । ଏହି ଲବଣ ସତ୍ୟାଗ୍ରହ ଏତେ ବ୍ୟାପକ ଥିଲା ଯେ ଏଥିରେ ରମାଦେବୀ, ମାଳତୀଦେବୀ ଓ ଜାହ୍ନବୀଦେବୀଙ୍କ ନେତୃତ୍ୱରେ ମହିଳାମାନେ ବହୁସଂଖ୍ୟାରେ ଅଂଶ ଗ୍ରହଣ କରିଥିଲେ । କୁଜଙ୍ଗର ରାଣୀ ଭାଗ୍ୟବତୀ ପାଟ ମହାଦେଇ ପ୍ରାୟ ପାଞ୍ଚଶହ ମହିଳା ସ୍ୱେଚ୍ଛସେବୀଙ୍କ ସହିତ କୁଜଙ୍ଗଠାରେ ଲୁଣ ଆଇନ୍ ଅମାନ୍ୟ କରିଥିଲେ ।

ପ୍ରଜାତନ୍ତ୍ର ସାପ୍ତାହିକୀରୁ ଦୈନିକ ହୋଇ ଯାଇଥିଲା । ଏଥିରେ ଆନ୍ଦୋଳନର ଟିକି ନିଖି ଖବର ପ୍ରକାଶ ପାଉଥିବାରୁ ଏହା ଉପରେ ଜୋରିମାନା ଦଣ୍ଡ ଲାଗୁ କରାଗଲା । ଏହି ଅସହଯୋଗ ଆନ୍ଦୋଳନରେ ପ୍ରାୟ 11700 ଲୋକଙ୍କୁ ଜେଲ ଦଣ୍ଡ ହୋଇଥିଲା ।

ମହତାବ ଓ ଗୋପବନ୍ଧୁ ଚୌଧୁରୀଙ୍କୁ ଦେଢ଼ବର୍ଷ ଲେଖାଏଁ ଜେଲ ଦଣ୍ଡ ହେଲା । ମହତାବ ହଜାରିବାଗ ଜେଲରୁ ପ୍ରଜାତନ୍ତ୍ର ପାଇଁ ଲେଖା ଅବୈଧ ଭାବରେ ପଠାଉଥାନ୍ତି ଯାହାର ସୁରାକ୍ ବ୍ରିଟିଶ୍ କର୍ମକର୍ତ୍ତା ପାଇଯିବା ହେତୁ ତାଙ୍କୁ 'ଖ' ଶ୍ରେଣୀଭୁକ୍ତ କରାଯାଇ ପାଟଣା ଜେଲକୁ ପଠାଇ ଦିଆଗଲା । ଯେଉଁଦିନ ମହତାବ ସେହି ଜେଲରେ ପହଞ୍ଚିଲେ ତାଙ୍କ ସ୍ୱାଗତରେ 'ମହତାବ-ଜିନ୍ଦାବାଦ' ସ୍ଲୋଗାନ ଦିଆ ଯାଇଥିଲା । ମହତାବ ଜେଲ ଭିତରେ ଏକ ବ୍ୟାୟାମଶାଳା ଖୋଲିବା ସହିତ କଇଦୀମାନଙ୍କୁ କେତେକ ଦେଶପ୍ରେମୀ ସଙ୍ଗୀତ ଶିଖାଇଲେ ଏବଂ କଇଦୀମାନେ ରୋଷେଇର ଦାୟିତ୍ୱ ନେବା ଦ୍ୱାରା ଭଲ ଖାଦ୍ୟ

ମଧ୍ୟ ସେମାନଙ୍କୁ ଖାଇବାକୁ ମିଳିଲା । ମହତାବ ସେଠାରେ 'ସ୍ୱରାଜ୍ୟ ସାଧନ' ନାମକ ଏକ ନାଟକ ରଚନା କରି ଅଭିନୀତ କରାଇଥିଲେ ।

1931 ମାର୍ଚ୍ଚ 4 ତାରିଖରେ ଗାନ୍ଧୀ-ଇରଉଇନ ଚୁକ୍ତି ସ୍ୱାକ୍ଷରିତ ହେବା ଫଳରେ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରିଦିଆଗଲା । ସର୍ବଶ୍ରୀ ବିଶ୍ୱନାଥ ଦାସ, ଶଶିଭୂଷଣ ରଥ, ଗୋପବନ୍ଧୁ ଚୌଧୁରୀ, ନିରଂଜନ ପଟ୍ଟନାୟକ, ଯଦୁମଣି ମଙ୍ଗରାଜ, ନିତ୍ୟାନନ୍ଦ କାନୁନ୍‌ଗୋ ଏବଂ ଅନ୍ୟମାନେ ଛାଡ଼ ପାଇବା ବେଳେ ମହତାବଙ୍କୁ ବହୁ ବିଳମ୍ବରେ ମୁକ୍ତ କରାଗଲା । କିନ୍ତୁ ତାଙ୍କର ଏହି ମୁକ୍ତି ଫଳରେ ସେ ବାହାରେ ରହି ବେଶି ଦିନ କାର୍ଯ୍ୟ କରିପାରି ନଥିଲେ । କରାଚୀ କଂଗ୍ରେସ ପରେ ଗାନ୍ଧୀଜୀଙ୍କର ଗୋଲଟେବୁଲ ବୈଠକରେ ବିଫଳତା ପୁନଷ୍ଚ ରାଷ୍ଟ୍ରବ୍ୟାପୀ ଆନ୍ଦୋଳନକୁ ତ୍ୱରାନ୍ୱିତ କରିଦେଲା । କଂଗ୍ରେସ ଅନୁଷ୍ଠାନ ବେଆଇନ୍, ସ୍ୱେଚ୍ଛାସେବକ ଦଳ ବେଆଇନ୍, ଖବର କାଗଜ ଉପରେ କଟକଣା, ନେତା କର୍ମୀ ସମସ୍ତେ ଗିରଫଦାର, ଏସବୁ ଘଟିଥିଲା ।

ମହତାବଙ୍କୁ ବାଲେଶ୍ୱରରେ ଗିରଫ କରାଯାଇ ଛ'ମାସ ଜେଲ ହେଲା ଓ 'ଖ' ଶ୍ରେଣୀଭୁକ୍ତ କରାଗଲା । ହଜାରିବାଗ ଜେଲରେ ଖାଁ ଅବଦୁଲ ଗଫର ଖାଁ ଓ ତାଙ୍କ ଭାଇଙ୍କ ସହିତ ମିଶିବାର ସୁଯୋଗ ମିଳିଲା । ସେ ଦୁହେଁ ଥିଲେ ବିପ୍ଳବୀ ଓ ହିନ୍ଦୁ ମୁସଲମାନଙ୍କ ଭିତରେ ଧର୍ମକୁ ବାଦ ଦେଇ ସାମାଜିକ ସଂପର୍କ ସ୍ଥାପିତ ହେଲେ ଭାରତର ସାଂପ୍ରଦାୟିକ ସମସ୍ୟା ସମାଧାନ ହୋଇପାରିବ ବୋଲି ତାଙ୍କର ମତ ଥିଲା । ମହତାବ ମଧ୍ୟ ସେହି ମତ ପୋଷଣ କରୁଥିଲେ । ହରିଜନ ଆନ୍ଦୋଳନ ବିଷୟକୁ ଆଧାର କରି ସେ ଲେଖିଥିଲେ ଏକ ଉପନ୍ୟାସ 'ନୂତନଧର୍ମ' । ମହତାବ ଗଭୀର ଭାବେ ଗାନ୍ଧିଜୀଙ୍କ ଗତିବିଧିର ସୂଚନା ପାଉଥିଲେ । କେବଳ ସେତିକି ନୁହେଁ ଗାନ୍ଧିଜୀଙ୍କ ବିପ୍ଳବର ପରିକଳ୍ପନା ଅନୁସାରେ ଅସଂଖ୍ୟଲୋକ ଜୀବନ ଅତିବାହିତ କରିବା ଉଚିତ ବୋଲି ସେ ଭାବିବା ସହିତ ନିଜେ ନିଜ ଜୀବନରେ ପ୍ରୟୋଗ କରିବାକୁ ଚେଷ୍ଟା କରୁଥିଲେ । ଗାନ୍ଧିଜୀଙ୍କର ଖଦୀ ଆନ୍ଦୋଳନ ଓ ଅସ୍ପୃଶ୍ୟତାର ପୂର୍ଣ୍ଣ ବର୍ଜନ ପାଇଁ କାର୍ଯ୍ୟ କରିବାକୁ ସେ ବଦ୍ଧ ପରିକର ହୋଇ ନିଜର ପଇତାକୁ କାଢ଼ି ଫୋପାଡ଼ି ଦେଇଥିଲେ ।

ଏହି ଜେଲ ସମୟରେ ତାଙ୍କ ପିତାଙ୍କର ମୃତ୍ୟୁ ତାଙ୍କୁ ଦାରୁଣ ବ୍ୟଥା ଦେଇଥିଲା । ପିତାଙ୍କ ପ୍ରତି ତାଙ୍କର ଆଚରଣ ହେତୁ ସେ ଗଭୀର ଆତ୍ମଗ୍ଲାନି ବୋଧ କରିଛନ୍ତି । ମହତାବ ଓ ତାଙ୍କ ସ୍ତ୍ରୀ ସୁଭଦ୍ରା ଦେବୀ ଜେଲ୍‌ରେ ଥିବା ହେତୁ ପିତୃ କ୍ରିୟାକର୍ମରେ ଯୋଗଦେଇପାରି ନଥିଲେ । ଅଗରପଡ଼ାଠାରେ ମହତାବ କର୍ମୀମନ୍ଦିର ସ୍ଥାପନା କରି ଖଦୀର ପ୍ରସାର ଓ ହରିଜନମାନଙ୍କର ଉନ୍ନତି ପାଇଁ ଗଠନମୂଳକ କାର୍ଯ୍ୟ ହାତକୁ ନେଇଥାନ୍ତି । 1933ରୁ 1937 ମସିହା ପର୍ଯ୍ୟନ୍ତ କଂଗ୍ରେସରେ ଶିଥିଳତା ହେତୁ ମହତାବ ଅଗରପଡ଼ାରେ ରହି ଖଦୀ କାର୍ଯ୍ୟ ଓ ହରିଜନମାନଙ୍କ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ତାଙ୍କର ଏହି କାମରେ ସୁଭଦ୍ରା ଦେବୀ ଯୋଗ ଦେଇ କାର୍ଯ୍ୟ କରୁଥାନ୍ତି । 1934ରେ ଗାନ୍ଧିଜୀଙ୍କର ଓଡ଼ିଶା ଆଗମନ ସମୟରେ ସେ ଗାନ୍ଧିଜୀଙ୍କ ସହିତ ରହି ନିଜକୁ ଉନ୍ନତ ଓ ଦୃଢ଼ମନା ଅନୁଭବ କରିଥିଲେ ।

ଗାନ୍ଧିଜୀଙ୍କର ଓଡ଼ିଶା ଆଗମନ ପୁରୀଠାରୁ ଭଦ୍ରକ ପଦଯାତ୍ରା ଏକ ଐତିହାସିକ ଘଟଣା ।

ଦୈନିକ ସକାଳଓଳି ପାଞ୍ଚମାଇଲ ଓ ଉପର ଓଳି ପାଞ୍ଚମାଇଲ ପଦଯାତ୍ରା କରି ଗାନ୍ଧିଜୀ ଓଡ଼ିଶାର ଆବାଳ ବୃଦ୍ଧ ବନିତାଙ୍କ ମଧ୍ୟରେ ଏକ ନୂତନ ଉନ୍ମାଦନା ଓ ଭାବ ଜାଗ୍ରତ କରି ପାରିଥିଲେ । ମହତାବ ତାଙ୍କର 'ଗାନ୍ଧିଜୀ ଓ ଓଡ଼ିଶା' ପୁସ୍ତକରେ ଏ ସଂପର୍କରେ କେତେକ କଥା ଉଲ୍ଲେଖ କରିଛନ୍ତି, ତାହାର ସମ୍ୟକ୍ ଏଠାରେ ଉଦ୍ଧୃତ କରାଯାଇଛି ।

"ଶେଷ ଦିନ ଭଦ୍ରକରେ ଅତିଥିମାନଙ୍କର ସେବା କରିବାର ଗୌରବ ଯେତେବେଳେ ମୋତେ ମିଳିଗଲା, ମୁଁ ସ୍ଥିର କଲିଯେ ଅତିଥିମାନେ ଯାହା ଚାହିଁବେ ମୁଁ ସେହିପରି ବନ୍ଦୋବସ୍ତ କରିବି । ଗାନ୍ଧିଜୀଙ୍କ ସାଙ୍ଗରେ ବୁଟୋ ପ୍ରଭୃତି ଯେଉଁମାନେ ମାଂସାହାରୀ ଥିଲେ, ସେମାନେ ଗତ କେତେ ଦିନ ହେଲା ଅସ୍ଥିର ଅନୁଭବ କରୁଥିଲେ । ସେମାନଙ୍କ ପାଇଁ ମୁଁ ଭଦ୍ରକ ଡାକ ବଙ୍ଗଳାରେ ସେମାନଙ୍କ ରୁଚି ଅନୁଯାୟୀ ଖାଦ୍ୟର ବନ୍ଦୋବସ୍ତ କଲି । ଯେଉଁମାନେ ମୋ ଘରେ ରହିଲେ ସେମାନଙ୍କ ପାଇଁ ନିରାମିଷ ଭଲ ଖାଦ୍ୟର ବନ୍ଦୋବସ୍ତ କଲି । ସମସ୍ତେ ଖୁସି ହେଲେ, କିନ୍ତୁ ମୀରାବେନ୍ ଗାନ୍ଧିଜୀଙ୍କଠାରେ ଆପତ୍ତି କଲେ ଯେ, ଯାତ୍ରା ଭିତରେ ମୁଁ ଅନେକ ଯାତ୍ରୀଙ୍କ ପାଇଁ ମାଂସାହାରର ବ୍ୟବସ୍ଥା କରିଥିଲି । ଗାନ୍ଧୀଜୀ ମୋତେ ପଚାରିବାରୁ ମୁଁ କହିଥିଲି ଯେ, ଗୃହକର୍ତ୍ତା ହିସାବରେ ମୋର କର୍ତ୍ତବ୍ୟ ଅତିଥିଙ୍କୁ ସନ୍ତୋଷ ପ୍ରଦାନ କରିବା ପାଇଁ ଖାଦ୍ୟର ବ୍ୟବସ୍ଥା କରିବା । ଏ ବିଷୟଟି ଖଡ଼ଗପୁରରେ ଆଲୋଚନା କରିବା ପାଇଁ ଗାନ୍ଧିଜୀ କହିଲେ । ସେଠି ଉଭୟ ପକ୍ଷର ଯୁକ୍ତି ଶୁଣି ଗାନ୍ଧିଜୀ ମତ ପ୍ରକାଶ କରିଥିଲେଯେ, ମୁଁ ଯାହା କରିଥିଲି ତାହା ଠିକ୍ । କ୍ଷୁଦ୍ର ବିଚାରର ବହୁ ଊର୍ଦ୍ଧ୍ୱରେ ଥିଲା ସେ ମହାନ୍ ବ୍ୟକ୍ତିତ୍ୱ ।"

"ବାଲେଶ୍ୱର ଜିଲ୍ଲା ଗସ୍ତରେ ବାପୁଜୀ ଆମର ଏକ କଚେରି ଘରେ ତୋଡ଼ଙ୍ଗାରେ ଦିନକ ପାଇଁ ବିଶ୍ରାମ କରିଥିଲେ ଓ ତା' ପରେ ତାଙ୍କର ଶେଷରାତ୍ର ମୋର ଭଦ୍ରକ ଘରେ ବିଶ୍ରାମ ନେଇଥିଲେ । ଭଦ୍ରକରେ ମହାତ୍ମାଜୀ ମୋତେ ଓ ସୁଭଦ୍ରାଦେବୀଙ୍କୁ ସୂତା କଟାଇ ପରୀକ୍ଷା କରିଥିଲେ । ତାଙ୍କ ଜୀବନର ଦୈନନ୍ଦିନ ଛୋଟ ଛୋଟ କାର୍ଯ୍ୟରୁ ନିଜ ଜୀବନର ଅନେକ ବଡ଼ ବଡ଼ ସମସ୍ୟା ସମାଧାନର ଉପାୟ ଦେଖି ପାରିଲି ।"

**(ଘ) କୃଷକ ଆନ୍ଦୋଳନ :** ଅସହଯୋଗ ଆନ୍ଦୋଳନ ପରେ ପରେ ଓଡ଼ିଶାରେ କୃଷକ ଓ ଆଦିବାସୀମାନଙ୍କୁ ସଂଗଠିତ କରିବା ପାଇଁ ସତ୍ୟାଗ୍ରହୀମାନେ ଲାଗି ପଡ଼ିଲେ । ମହତାବ ଜେଲରୁ ଫେରିଆସି ଗାନ୍ଧିଜୀଙ୍କ ପ୍ରଦର୍ଶିତ ରଚନାତ୍ମକ କାର୍ଯ୍ୟରେ ନିଜକୁ ନିୟୋଜିତ କରିବା ସହିତ କୃଷକ ଓ ଗଡ଼ଜାତ ଅଞ୍ଚଳରେ ରହୁଥିବା ଲୋକମାନଙ୍କର ସମସ୍ୟା ପ୍ରତି ଦୃଷ୍ଟି ପକାଇବାକୁ ଆରମ୍ଭ କଲେ । 1933 ମସିହା ଶେଷ ବେଳକୁ ମହତାବ ବାଲେଶ୍ୱରର କୃଷକ ମାନେ କିପରି ଖଜଣାରୁ ମୁକ୍ତି ପାଇବେ ସେ ସଂପର୍କରେ ଚିନ୍ତାକଲେ । ଏପ୍ରିଲ 1936 ରେ ସର୍ବଭାରତୀୟ କୃଷକ ସଭାର ବୈଠକ ଲକ୍ଷ୍ନୌଠାରେ ବସିଲା ଏବଂ ଏହି ବୈଠକରେ ପ୍ରଦେଶ କଂଗ୍ରେସ ପକ୍ଷରୁ ମହତାବ, ନବକୃଷ୍ଣ ଚୌଧୁରୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଲିଙ୍ଗରାଜ ମିଶ୍ର ଓ ଭାଗୀରଥି ମହାପାତ୍ର ଯୋଗ ଦେଇଥିଲେ ।

1936 ନଭେମ୍ବର 29 ତାରିଖରେ କଲିକତାଠାରେ କମ୍ୟୁନିଷ୍ଟ ନେତା ଶ୍ରୀ ଶରତ ଚନ୍ଦ୍ର ପଟ୍ଟନାୟକ ଓ ଶ୍ରୀ ଗୁରୁଚରଣ ପଟ୍ଟନାୟକ ଏକ କୃଷକ ସମ୍ମିଳନୀ ଆୟୋଜନ କଲେ । ଏହାର ଉଦ୍ଦେଶ୍ୟ ଥିଲା କଲିକତାଠାରେ ରହୁଥିବା ଶ୍ରମିକମାନଙ୍କୁ ଏକାଠି କରି ଶ୍ରମିକ

ଶ୍ରେଣୀର ଆନ୍ଦୋଳନକୁ ମଜଭୁତ କରିବା ଏବଂ ଓଡ଼ିଶାରେ କୃଷକ ଆନ୍ଦୋଳନକୁ ବ୍ୟାପକ କରିବା । ଏହି ସମ୍ମିଳନୀକୁ ମହତାବ ଉଦ୍‌ଘାଟନ କରିଥିଲେ ।

1936 ମେ ମାସରେ ଓଡ଼ିଶାରେ କୃଷକମାନଙ୍କର ଏକ ସମ୍ମିଳନୀ ହୋଇଥିଲା । ମହତାବ ପ୍ରଦେଶ କୃଷକ ସତ୍ୟାଗ୍ରହର ସଭାପତି ଥିବାରୁ ତାଙ୍କ ପ୍ରଚେଷ୍ଟାରେ ଏହି ସମ୍ମିଳନୀ ହେଲା । ଜମିଦାରମାନଙ୍କୁ ସଲାମି ନ ଦେବା ପାଇଁ କୃଷକମାନଙ୍କୁ କୁହାଗଲା ଏବଂ କୃଷିଜାତ ଦ୍ରବ୍ୟର ବିକ୍ରି ପାଇଁ ସଂଗଠନ ଗଢ଼ିବା ଓ ଋଣ ଦେବା ପାଇଁ ବ୍ୟାଙ୍କ ସୃଷ୍ଟି କରିବା ଉପରେ ଗୁରୁତ୍ୱ ଆରୋପ କରାଗଲା । ଏଥିପାଇଁ ଗୋଟିଏ ସବ୍‌କମିଟୀ ଗଠନ କରାଗଲା ଯେଉଁଥିରେ ମହତାବ, ନବକୃଷ୍ଣ ଚୌଧୁରୀ, ରାଜକୃଷ୍ଣ ବୋଷ, ଲିଙ୍ଗରାଜ ମିଶ୍ର ଏବଂ ମାଳତୀ ଚୌଧୁରୀ ସଭ୍ୟ ରହିଲେ । ସେମାନେ କୃଷକମାନଙ୍କର ଅଭିଯୋଗ ଶୁଣି ପ୍ରଦେଶ କଂଗ୍ରେସ କମିଟୀକୁ ରିପୋର୍ଟ ଦେବାର ସ୍ଥିର ହେଲା ।

1937 ଫେବୃୟାରୀ ମାସରେ ବାଲେଶ୍ୱର କୃଷକ ସମ୍ମିଳନୀରେ ସଭାପତିତ୍ୱ କରି ମହତାବ ଜମିଦାରମାନଙ୍କ ଦୌରାତ୍ମ୍ୟକୁ ପ୍ରତିହତ କରିବା ପାଇଁ ଆହ୍ୱାନ ଦେଲେ । 20 ମାର୍ଚ୍ଚରେ ଭୁବନେଶ୍ୱରଠାରେ ସଭାପତିତ୍ୱ କରି ସେ ଗ୍ରାମ୍ୟ ପୁନର୍ଗଠନ କାର୍ଯ୍ୟକ୍ରମ ଆରମ୍ଭ କରି କୃଷକମାନଙ୍କର ଉନ୍ନତି ପ୍ରତି ଦୃଷ୍ଟିନିକ୍ଷେପ କରିବାକୁ ପରାମର୍ଶ ଦେଲେ । 10 ମେ ଝାରସୁଗୁଡ଼ାଠାରେ କୃଷକମାନଙ୍କର ଏକ ସମ୍ମିଳନୀ ହେଲା । ଏହି ସମ୍ମଳନୀରେ ମହତାବ, ବିଶ୍ୱନାଥ ଦାସ, ଲକ୍ଷ୍ମୀ ନାରାୟଣ ମିଶ୍ର, ବୋଧରାମ ଦୁବେ, ପ୍ରହ୍ଲାଦ ରାୟ ଲାଠ, ବି.ଏମ ଯୋଶୀ ପ୍ରମୁଖ ଯୋଗ ଦେଇ ଖଜଣା ହ୍ରାସ, ଜଙ୍ଗଲ ଦ୍ରବ୍ୟ ଉପରେ ଥିବା କଟକଣାକୁ ଲାଘବ କରିବା ଏବଂ ଜମିଦାରମାନଙ୍କ ଦ୍ୱାରା କର ଆବୱାବର ଉଚ୍ଛେଦ କରିବା ଦାବି କରିଥିଲେ ।

ଜୁନ ମାସରେ ବାଣପୁରଠାରେ ପ୍ରାୟ 1500 କୃଷକଙ୍କ ଯୋଗଦାନରେ ଏକ ସମ୍ମିଳନୀ ହୋଇଥିଲା । ଏଥିରେ ମହତାବ ସଭାପତିତ୍ୱ କରିଥିଲେ । ସେ ତାଙ୍କ ଭାଷଣରେ କହିଥିଲେ, "କଂଗ୍ରେସ ସଦାସର୍ବଦା କୃଷକ, ଦରିଦ୍ର ଓ ଅସହାୟମାନଙ୍କ ସହିତ ରହିଛି ଏବଂ ବର୍ତ୍ତମାନ ସେମାନେ ବ୍ରିଟିଶ ସାମ୍ରାଜ୍ୟବାଦର ସବୁଠାରୁ ବଡ଼ ଶତ୍ରୁ । ବର୍ତ୍ତମାନ ଗୋଟିଏ ଅବସ୍ଥା ଦେଖା ଦେଉଛି ଯେ କଂଗ୍ରେସ ସହିତ ସହ ବନ୍ଧନ ନ ହୋଇ କୃଷକ ସଂଘ ଅଲଗା ଚାଲୁଛି । ଏହା ଦ୍ୱାରା କଂଗ୍ରେସର ଶକ୍ତି ଦୁର୍ବଳ ହେବ ଏବଂ ଏହା କୃଷକ ଆନ୍ଦୋଳନକୁ ସାହାଯ୍ୟ କରିବ ନାହିଁ ।"

ସେହି ସମୟରେ କୃଷକ ଆନ୍ଦୋଳନରେ କଂଗ୍ରେସ ସୋସିଆଲିଷ୍ଟ ଗୋଷ୍ଠୀ ବେଶ୍ ସକ୍ରିୟ ଭାବରେ କାର୍ଯ୍ୟ କରୁଥିଲେ ଏବଂ ସେମାନେ କୃଷକ ସଂଘ କଂଗ୍ରେସଠାରୁ ପୃଥକ ବୋଲି ଦାବି କରିବା ସହିତ ଜମିଦାରମାନଙ୍କ ବିରୋଧରେ ଥିଲେ । ମହତାବ ଜମିଦାର ଓ କୃଷକ ମାନଙ୍କ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରିବାକୁ ଚେଷ୍ଟା କରୁଥିଲେ । ଏପରିକି ଭଦ୍ରକର ଜମି ମାଲିକମାନେ ସରକାରଙ୍କ ନିକଟରେ ବିନା ଜୋରିମାନାରେ ଖଜଣା ନେବାକୁ ଦାବି ପତ୍ର ଦେଇଥିଲେ କାରଣ ସେମାନେ ଚାଷୀଙ୍କଠାରୁ ଭୂରାଜସ୍ୱ ସଂଗ୍ରହ କରିବାରେ ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ଏହି ଦାବିପତ୍ରରେ ମହତାବ ଦସ୍ତଖତ କରିଥିଲେ ।

କଂଗ୍ରେସ ସମାଜବାଦୀ ଓ କମ୍ୟୁନିଷ୍ଟମାନେ କୃଷକ ଆନ୍ଦୋଳନ ଉପରେ କ୍ରମାଗତ

ନିଜର ପ୍ରଭାବ ଅକ୍ଷୁଣ୍ଣ ରଖି ଚଳାଇବାରେ ବ୍ରିଟିଶ୍ ସରକାରରେ ରହି କାର୍ଯ୍ୟ କରୁଥିବା କଂଗ୍ରେସ ସରକାର (1937-39) ସମସ୍ୟା ସମାଧାନ ପାଇଁ ଜମିମାଲିକ ଓ ଚାଷୀମାନଙ୍କ ମଧ୍ୟରେ ବୁଝାମଣା ଆଣିବାକୁ ଚେଷ୍ଟା କରିଥିଲେ । ବୋଧହୁଏ ସେ ସମୟର ଏହା କଂଗ୍ରେସ ରାଜନୀତିର ଅଂଶ ବିଶେଷ ଥିଲା ଏବଂ ମହତାବ ସେହି ରାଜନୀତିର ମଞ୍ଚରେ ବସି ଦିଗ ନିର୍ଦ୍ଧାରଣ କରୁଥିଲେ ।

**(ଙ) ପ୍ରଜାମଣ୍ଡଳ ଆନ୍ଦୋଳନ (1938-39) :** ଓଡ଼ିଶାରେ ଗଡ଼ଜାତମାନଙ୍କରେ ଶାସନ କରୁଥିବା ରଜାମାନେ ବ୍ରିଟିଶ ସରକାରର ପ୍ରୋତ୍ସାହନ ଓ ଶାସନ ବ୍ୟବସ୍ଥାରେ ହସ୍ତକ୍ଷେପ ନକରିବା ନୀତି ଦ୍ୱାରା ଉତ୍ସାହିତ ଶାସନକଳକୁ ଥାଣୁ, ପଙ୍ଗୁ ଓ ଅଥର୍ବ ଅବସ୍ଥାରେ ରଖିବା ସହିତ ପ୍ରଜାମାନଙ୍କ ଉପରେ ଅକଥନୀୟ ଶାରୀରିକ, ମାନସିକ, ଆର୍ଥିକ ଅତ୍ୟାଚାର କରୁଥିଲେ । ରାଜାମାନେ ବିଳାସ ବ୍ୟସନ ଓ ଆମୋଦ ପ୍ରମୋଦରେ ମାତି ତାଙ୍କର ଶାସନାଧୀନ ଅଞ୍ଚଳକୁ ନିଜର ବ୍ୟକ୍ତିଗତ ସମ୍ପତ୍ତି ବୋଲି ମଧ୍ୟ ବିଚାର କରୁଥିଲେ । ରାଜାମାନେ ଶାସନ କରୁଥିବା ରାଜ୍ୟମାନଙ୍କରେ କୌଣସି ପ୍ରକାର ରାଜନୈତିକ ବା ସାଂବିଧାନିକ ସଂସ୍କାର ବ୍ୟବସ୍ଥାକୁ ବ୍ରିଟିଶ ସରକାର ଲାଗୁ ନକରିବା ଫଳରେ ସାଧାରଣ ଜନତା ବିଦ୍ରୋହ କରିବାର ଅବସ୍ଥା ସୃଷ୍ଟି କଲେ ଏବଂ ଓଡ଼ିଶାର ବିଭିନ୍ନ ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରଜାମାନଙ୍କ ଦ୍ୱାରା ଆନ୍ଦୋଳନ ଆରମ୍ଭ ହେଲା । ଏବଂ ଏହି ଆନ୍ଦୋଳନ ଭାରତରେ ଥିବା ବିଭିନ୍ନ ରାଜ୍ୟର ଲୋକମାନଙ୍କ ଦ୍ୱାରା ଗଠିତ ସଂଘମାନଙ୍କ ଦ୍ୱାରା ପରିଚାଳିତ ହୋଇଥିବାରୁ ଏହାକୁ ପ୍ରଜାମଣ୍ଡଳ ଆନ୍ଦୋଳନ ବୋଲି କୁହାଗଲା । କଂଗ୍ରେସ ଗଡ଼ଜାତ ରାଜ୍ୟମାନଙ୍କର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରିବ ନାହିଁ ବୋଲି ସ୍ଥିର କରିଥାଏ । 1935 ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ ଲାଗୁ ହେବା ପରେ ଦେଶୀୟ ରାଜାମାନଙ୍କ ବିରୋଧରେ ପ୍ରଜାମାନଙ୍କ ଅସନ୍ତୋଷ ବ୍ୟାପକ ହେବାକୁ ଲାଗିଲା ଯାହା ଫଳରେ କଂଗ୍ରେସ ସେହି ରାଜ୍ୟ ବ୍ୟାପାରରେ ମୁଣ୍ଡ ପୂରାଇବାକୁ ବାଧ୍ୟ ହେଲା ।

1935 ହରିପୁରା କଂଗ୍ରେସରେ ଏହି ପ୍ରଜାମଣ୍ଡଳ ଆନ୍ଦୋଳନରେ କଂଗ୍ରେସର ନେତାମାନେ ବ୍ୟକ୍ତିଗତ ଭାବେ ଆନ୍ଦୋଳନକୁ ସାହାଯ୍ୟ ସହଯୋଗ କରିପାରିବେ ବୋଲି କୁହାଗଲା । ମହତାବ ଦୁଇଟି କାରଣ ଯୋଗୁଁ ଏହି ଆନ୍ଦୋଳନ ସହିତ ସଂଶ୍ଳିଷ୍ଟ ହୋଇଥିଲେ । ଏବଂ କଂଗ୍ରେସର ନିଷ୍ପତ୍ତି ତାଙ୍କୁ ଅଧିକ ଭାବରେ ଏଥିରେ ଲିପ୍ତ ରହିବାରେ ସାହାଯ୍ୟ କଲା । ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ କମିଟୀର ସଦସ୍ୟ ଭାବେ ମହତାବ ଦେଶୀୟ ରାଜ୍ୟ ନୀଳଗିରି, ଢେଙ୍କାନାଳ, ତାଳଚେର ଓ ରଣପୁରରେ କ'ଣ ଘଟୁଛି ତାହାର ଟିକିନିଖି ଖବର ରଖୁଥିଲେ ଏବଂ ସେ ସଂପର୍କରେ ଗାନ୍ଧୀ, ନେହେରୁ, ସୁଭାଷ, ପଟେଲ ଓ ସୀତାରାମାୟଙ୍କ ସହିତ ମଧ୍ୟ ପରାମର୍ଶ କରୁଥିଲେ ।

କନିକା ଆନ୍ଦୋଳନ ବେଳେ ମହତାବ ସେଥିରେ ସକ୍ରିୟ ଭୂମିକା ନେଇଥିବା କାରଣରୁ ତାଙ୍କର ଗଡ଼ଜାତ ରାଜ୍ୟମାନଙ୍କରେ ହେଉଥିବା ଶାସନ ସଂପର୍କରେ ବେଶ୍ ଅବଧାରଣା ଥିଲା । ଏତଦ୍‌ବ୍ୟତୀତ ସେ ନିଜେ ଥିଲେ ଅଗରପଡ଼ାର ରାଜା, ଓଡ଼ିଶାର ରାଜ୍ୟମାନଙ୍କର ଜନସାଧାରଣଙ୍କ ସମ୍ମିଳନୀ (Orissa states' people's conference)ରେ ମହତାବ ଓଡ଼ିଶା ଷ୍ଟେଟସ୍ ଇନକ୍ୱାରୀ କମିଟୀର ଅଧ୍ୟକ୍ଷଭାବେ ମଧ୍ୟ ଦାୟିତ୍ୱ ଗ୍ରହଣ କରିଥିଲେ ।

ଆଇନ୍ ଅମାନ୍ୟ ଆନ୍ଦୋଳନ ସମୟରେ ଦେଶୀୟ ରାଜାମାନଙ୍କ ଦ୍ୱାରା ଶାସିତ ରାଜ୍ୟମାନଙ୍କର ଲୋକମାନଙ୍କୁ ସଂଗଠିତ କରିବାର ଉଦ୍ୟମ ହୋଇଥିଲା । ୧୯୩୧ରେ ଗଠିତ ହୋଇଥିବା ଲୋକମାନଙ୍କର ଏହି ସଙ୍ଗଠନକୁ ସକ୍ରିୟ କରିବା ପାଇଁ ୨ୟ ନିଖିଳ ଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀ ପଟ୍ଟାଭି ସୀତାରାମାୟାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀ ଦେଶୀୟ ରାଜ୍ୟମାନଙ୍କରେ ଚାଲୁଥିବା ରସଦ୍, ମାଗଣା ବେଠି, ବେଗରୀ ଇତ୍ୟାଦି ଅନୈତିକ ବ୍ୟବସ୍ଥା ସଂପର୍କରେ ଅନୁଧ୍ୟାନ କରିବା ପାଇଁ ଗୋଟିଏ କମିଟୀ ଗଠନ କଲେ । ଏହି କମିଟୀର ସଭ୍ୟ ରହିଲେ ସତୀଶ ଚ଼ନ୍ଦ୍ର ବୋଷ, ବଳବନ୍ତ ରାୟ ମେହେଟ୍ଟା, ବ୍ରଜସୁନ୍ଦର ଦାସ, ସାରଙ୍ଗଧର ଦାସ । ସାରଙ୍ଗଧର ଦାସ ଥିଲେ ଏହାର ଆବାହକ । ଏହି କମିଟୀର କାର୍ଯ୍ୟ ଆଗେଇ ପାରିଲା ନାହିଁ ।

ବମ୍ବେଠାରେ କଂଗ୍ରେସ କାର୍ଯ୍ୟକାରୀ କମିଟୀ ବୈଠକ ବସିଲା । ସେଠାରେ ଡକ୍ଟର ପଟ୍ଟାଭି ସୀତାରାମାୟା ମହତାବଙ୍କୁ ଏହି କମିଟୀର ଦାୟିତ୍ୱ ନେବାକୁ ଅନୁରୋଧ କଲେ । ମହତାବଙ୍କର ସେ ସଂପର୍କରେ କୌଣସି ଧାରଣା ନଥିବାରୁ ଦାୟିତ୍ୱ ନେବାକୁ ଅମଙ୍ଗ ହେଉଥିଲେ । କିନ୍ତୁ କେହି ନମିଳିଲେ ଦାୟିତ୍ୱ ଗ୍ରହଣ କରିବେ ବୋଲି ରାଜି ହେଲେ । ସେ ସଂପର୍କରେ ମହତାବ ନିଜର ଆତ୍ମଜୀବନୀ 'ସାଧନାର ପଥେ' ରେ ଯାହା ଉଲ୍ଲେଖ କରିଛନ୍ତି ତାହା ଏହିପରି, "ତୃତୀୟ କାମ ଯାହା ମୋ ଉପରେ ଅପ୍ରତ୍ୟାଶିତ ଭାବରେ ପଡ଼ିଲା, ତାହା ହେଉଛି ସବୁଠାରୁ ବଡ଼ ଓ ଯାହା ଉପରେ ମୋର ଜୀବନର ପ୍ରତିଷ୍ଠା ନିର୍ଭର କରୁଥିଲା ସେ ହେଉଛି ଗଡ଼ଜାତ କାମ ।

"ଓଡ଼ିଶାରେ ଗଡ଼ଜାତ ପ୍ରଜା ସମ୍ମିଳନୀ କେତେ ଥର ହୋଇଯାଇଛି । ମୁଁ ଏଥିରେ ଯୋଗ ଦେଇ ନାହିଁ । କେବଳ 'ପ୍ରଜାତନ୍ତ୍ର'କାମ ଚାଲିଥିବା ବେଳେ କେତେକ ଗଡ଼ଜାତ ସମ୍ବାଦ ପାଉଥାଏ । ଅନ୍ୟଥା ଗଡ଼ଜାତ ସମ୍ବନ୍ଧରେ ସାଧାରଣତଃ ମୋର କିଛି ଜ୍ଞାନ ନଥିଲା । ଓଡ଼ିଶା ଗଡ଼ଜାତ ପ୍ରଜା-ସମ୍ମିଳନୀର ଶେଷ ଅଧିବେଶନରେ ସବୁ ଗଡ଼ଜାତ ଲୋକଙ୍କ ଅଭିଯୋଗ ତଦନ୍ତ କରିବା ପାଇଁ ଏକ କମିଟୀ ଗଠିତ ହୋଇଥିଲା । ଏ ଅଧିବେଶନର ସଭାପତି ଡାକ୍ତର ପଟ୍ଟାଭି ସୀତାରାମାୟା ହୋଇଥିଲେ । କମିଟୀରେ କିଏ କିଏ ଥିଲେ, ତାହା ମଧ୍ୟ ମୋର ମନେ ନାହିଁ । ମାତ୍ର ଅନେକ ଦିନ ପର୍ଯ୍ୟନ୍ତ ତଦନ୍ତ କମିଟୀ କାମ କଲା ନାହିଁ । କମିଟୀର ଜନୈକ ସଭ୍ୟ ରାଜି ନହେବାରୁ ତାଙ୍କ ସ୍ଥାନ ଶୂନ୍ୟ ହେଲା । ଏହି ଅବସ୍ଥାରେ ବମ୍ବେରେ କାର୍ଯ୍ୟନିର୍ବାହିକା ସମିତି ବୈଠକରେ ଯୋଗ ଦେବା ପାଇଁ ମୁଁ ଯାଇଥାଏ । ସେଠାକୁ ସେହି ଉଦ୍ଦେଶ୍ୟରେ ଡାକ୍ତର ପଟ୍ଟାଭି ମଧ୍ୟ ଆସିଥାଆନ୍ତି । ଦିନେ ହଠାତ୍ ଟେଲିଫୋନରେ ଡାକ୍ତର ପଟ୍ଟାଭି ପଚାରିଲେ, "ମୁଁ ସେ ଶୂନ୍ୟ ସ୍ଥାନରେ ତଦନ୍ତ କମିଟୀର ସଭ୍ୟ ହେବା ପାଇଁ ରାଜି କି ନାଁ । ମୁଁ ସେ ବିଷୟ କିଛି ଜାଣି ନଥିଲି । ମାତ୍ର କେହି ନମିଳୁଥିବା ସ୍ଥଳେ ମୁଁ ସଭ୍ୟରୂପେ ନିଆହେଲେ ମୋର କିଛି ଆପତ୍ତି ନାହିଁ ବୋଲି ତାଙ୍କୁ ଜଣାଇଲି । ତଦନୁସାରେ ସେ ସମ୍ମିଳନୀରେ ସଭାପତି ରୂପେ ମୋତେ ତଦନ୍ତ କମିଟୀର ସଭ୍ୟରୂପେ ମନୋନୟନ କଲେ । ସେଇଠି ପ୍ରଥମଥର ନିଖିଳ ଭାରତ ଗଡ଼ଜାତ ପ୍ରଜା ସମ୍ମିଳନୀର ସଂପାଦକ ବଳବନ୍ତ ରାୟ ମେହେଟ୍ଟା ଓ ଅନ୍ୟମାନଙ୍କ ସହିତ ଆଳାପ ହେଲା ଓ ମୁଁ ସେମାନଙ୍କ କାର୍ଯ୍ୟର କିଛି କିଛି ସୂଚନା ପାଇଲି । କ୍ରମଶଃ ଏ କାମରେ ମନ ଦେଉ ଦେଉ ଏହା ମୋତେ ଅତି କୌତୂହଳଜନକ ଓ ଦରକାରୀ ବୋଲି ମନେ ହେଲା- ତା'ପରେ ଧୀରେ ଧୀରେ ଏ କାମରେ ପୂରାମାତ୍ରାରେ ଜଡ଼ିତ ହୋଇଗଲି ।

କମିଟୀରେ ମହତାବ ଅଧ୍ୟକ୍ଷ, ଲାଲମୋହନ ପଟ୍ଟନାୟକ ଏବଂ ବଳବନ୍ତ ରାଓ ମେହେଟ୍ଟା ସଭ୍ୟ ଏବଂ ସାରଙ୍ଗଧର ଦାସ ସଂପାଦକ ଭାବରେ ରହି କାର୍ଯ୍ୟ ଆରମ୍ଭ କଲେ । ନୀଳଗିରିରେ ପ୍ରଥମେ ଆନ୍ଦୋଳନ ଆରମ୍ଭ ହେଲା । ବିଭିନ୍ନ ସଂଗଠନମାନଙ୍କର ରେଜିଷ୍ଟ୍ରେସନ ଏବଂ ସଭାସମିତି ଉପରେ କଟକଣା ଜାରି କରି ରାଜାଙ୍କ ତରଫରୁ ଦୁଇଟି ଆଇନ୍ କରାଯାଇଥାଏ । ଲୋକମାନେ ଏହାକୁ ବିରୋଧ କରି ସଭା ଓ ଶୋଭାଯାତ୍ରା କରିବା ଫଳରେ କେତେ ଜଣଙ୍କୁ ଜେଲ ଓ ଜୋରିମାନା କରାଗଲା ।

ଅନୁସନ୍ଧାନ କମିଟୀର ଅଧ୍ୟକ୍ଷ ଭାବେ ମହତାବ ନିମ୍ନୋକ୍ତ ମର୍ମରେ ପ୍ରେସ ଇସ୍ତାହାର ଜାରି କଲେ । "ନୀଳଗିରି ରାଜ୍ୟରେ ବିଭିନ୍ନ ନିୟମ ପ୍ରଣୟନକୁ କମିଟୀ ନିନ୍ଦା କରୁଛି । ସେମାନେ ନାଗରିକମାନଙ୍କ ମୌଳିକ ଅଧିକାର ଉପରେ ହସ୍ତକ୍ଷେପ କରୁଛନ୍ତି ଏବଂ ଯାହାଫଳରେ ରାଜାଙ୍କ ଦ୍ୱାରା ଲୋକମାନଙ୍କୁ ଭୟଭୀତ କରାଯାଉଛି । କମିଟୀ ଆଶା ରଖୁଛି ଯେ ଲୋକମାନେ ସତ୍ୟ ଓ ଅହିଂସା ମାଧ୍ୟମରେ ଏପରି ନିଷ୍ଠୁର ବ୍ୟବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କରିବେ ।" ନୀଳଗିରି ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଉଥିଲେ ଶ୍ରୀ କୈଳାସ ଚନ୍ଦ୍ର ମହାନ୍ତି, ଶ୍ରୀ ବନମାଳି ଦାସ ଓ ଶ୍ରୀ ଗୌର ଚନ୍ଦ୍ର ଦାସ ।

ନୀଳଗିରି ପ୍ରଜାମଣ୍ଡଳର ନେତାମାନେ ମହତାବଙ୍କ ପରାମର୍ଶ କ୍ରମେ 31 ଦଫାର ଏକ ଦାବି-ପତ୍ର ପ୍ରସ୍ତୁତ କରି ନୀଳଗିରି କର୍ତ୍ତୃପକ୍ଷଙ୍କୁ ଦେଲେ ଏବଂ ଯଦି ତାହା ପୂରଣ ନ ହୁଏ, ତେବେ ଶାନ୍ତିପୂର୍ଣ୍ଣ ସତ୍ୟାଗ୍ରହ ହେବାର ଘୋଷଣା କରାଗଲା । 1938 ମେ 7 ତାରିଖ ଦିନ ରାଜା ଘୋଷଣା କଲେଯେ ଯେକୌଣସି ସଭା କରିବାର 7 ଦିନ ପୂର୍ବରୁ ଅନୁମତି ନେବାକୁ ହେବ । 5 ଜୁଲାଇ ରଥଯାତ୍ରା ଦିନ କୌଣସି ଅନୁମତି ନିଆ ନଯାଇ ସଭାକାର୍ଯ୍ୟ ହେଲା ଏବଂ କୃଷି ସଂକ୍ରାନ୍ତୀୟ ଆଇନ ଲାଘବ କରି ରାଜାଙ୍କ ପ୍ରାପ୍ୟକୁ ବନ୍ଦ କରିବାକୁ ଦାବି କରାଗଲା । ରାଜାଙ୍କ ନିର୍ଦ୍ଦେଶରେ ଲୋକମାନଙ୍କ ଉପରେ ପୋଲିସ ଓ ଭଡ଼ାଟିଆ ଗୁଣ୍ଡାମାନଙ୍କ ଦ୍ୱାରା ଲାଠି ଚାର୍ଜ ହେବା ଫଳରେ ବହୁ ଲୋକ ଆହତ ହେଲେ ଏବଂ 116 ଜଣଙ୍କୁ ଆରେଷ୍ଟ କରାଯାଇ ଏକ ମାଧ୍ୟମିକ ସ୍କୁଲରେ ରଖାଗଲା । ସେତେବେଳେ ରାଜ୍ୟରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଥାଏ । ରାଜାଙ୍କୁ ସାହାଯ୍ୟ କରିବାକୁ ପୋଲିସ ପଠାଗଲା ନାହିଁ । ପ୍ରଜାମଣ୍ଡଳ ନେତାଙ୍କ ସହିତ ଆଲୋଚନା କରି ସମାଧାନର ବାଟ ଫିଟାଇବା ପାଇଁ ମହତାବ କଲେକ୍ଟର ସୋଲେମନ ସାହେବଙ୍କୁ ସାକ୍ଷାତ କଲେ । ପଲିଟିକାଲ ଏଜେଣ୍ଟ ବେଜେଲ ଗେଟ୍ ସାହେବ ଜନସାଧାରଣଙ୍କର ଶୃଙ୍ଖଳା ଦେଖି ପ୍ରଭାବିତ ହୋଇଥାନ୍ତି । ପ୍ରଜାଙ୍କ ପକ୍ଷରୁ କୈଳାସ ଚନ୍ଦ୍ର ମହାନ୍ତି, ରାଜାଙ୍କ ତରଫରୁ ଦେୱାନ ଓ ମହତାବ ଏହି ତିନିଜଣ ଆଲୋଚନା କଲେ । ବହୁ ପରିଶ୍ରମ ଓ ଆଲୋଚନା ପରେ ରାଜା ଓ ବନ୍ଦୀମାନେ ମିଳାମିଶା ସର୍ତ୍ତରେ ସମ୍ମତ ହେଲେ । ବନ୍ଦୀମାନେ ଖଲାସ ହେଲେ । ବାସନ୍ଦ ଉଠାଇ ଦିଆଗଲା ।

ନୀଳଗିରି ରାଜା 31 ଟି ଦାବିରୁ 14 ଟି ଦାବି ମାନିଲେ । ପ୍ରଜାମଣ୍ଡଳକୁ ଶାନ୍ତି ପୂର୍ଣ୍ଣ ସଭା ଓ ଶୋଭାଯାତ୍ରା କରିବା ପାଇଁ ସ୍ୱୀକୃତି ମିଳିଲା । ବେଠି ମାଗଣା ଓ ରସଦ୍‌କୁ ଉଠାଇ ଦିଆଗଲା ।

ନୀଳଗିରିର ପ୍ରଜାମାନଙ୍କୁ ସେମାନଙ୍କ ଅଭାବ ଅଭିଯୋଗ ଜଣାଇବାର ସ୍ୱାଧୀନତା ମିଳିଲା । ମହତାବଙ୍କ ପାଇଁ ଏହା ଥିଲା ଏକ ଅଭିନବ ଅଭିଜ୍ଞତା । ସେ ତାଙ୍କର ଏହି ଅଭିଜ୍ଞତାକୁ ଗାନ୍ଧିଜୀଙ୍କୁ ଜଣାଇ ଥିଲେ ।

ନୀଳଗିରି ପରେ ଆରମ୍ଭ ହେଲା ଢେଙ୍କାନାଳରେ ଆନ୍ଦୋଳନ । ନୀଳଗିରି ପ୍ରଜା ଆନ୍ଦୋଳନ ପରି ସଫଳତା ଢେଙ୍କାନାଳରେ ମହତାବ ପାଇ ପାରି ନଥିଲେ ଏବଂ ସେଥିପାଇଁ ତାଙ୍କୁ ନିନ୍ଦାବାଦ ଶୁଣିବାକୁ ହୋଇଥିଲା । କାରଣ ଆନ୍ଦୋଳନ ଆରମ୍ଭ ହେବା ମାତ୍ରକେ ରାଜାଙ୍କଠାରୁ ତାର ପାଇ ସେଠାକୁ ଯାଇ ଆପୋଷ ମିଳାମିଶା କରିବାକୁ ଚେଷ୍ଟା କଲେ । 1938 ଜୁନ 27 ତାରିଖରେ ଢେଙ୍କାନାଳ ପ୍ରଜାମଣ୍ଡଳ ଗଠିତ ହୋଇଥିଲା । ସେଠାକାର ପ୍ରଜାମାନେ ଏକାଠି ହୋଇ ସଭାମାନ କଲେ ଏବଂ ମୌଳିକ ଅଧିକାର ଓ ଦାୟିତ୍ୱ ପୂର୍ଣ୍ଣ ସରକାର ସ୍ଥାପନ ପାଇଁ ଦାବି କଲେ । ସେମାନଙ୍କର ଦାବିକୁ ଗ୍ରହଣ କରାଯିବା ପରିବର୍ତ୍ତେ ରାଜ୍ୟ ତରଫରୁ ଦମନ ଲୀଳା ଆରମ୍ଭ ହେଲା । ସେପ୍‌ଟେମ୍ବର 10 ତାରିଖ ଦିନ ଭୁବନ ଓ ନୀଳକଣ୍ଠପୁର ଗ୍ରାମରେ ପଶି ପୋଲିସ ଲୁଟତରାଜ କଲେ ଏବଂ ପ୍ରଜାମଣ୍ଡଳ ସଭାପତି ଶ୍ରୀ ହରମୋହନ ପଟ୍ଟନାୟକ, ଉପସଭାପତି ମହେଶଚନ୍ଦ୍ର ସୁବାହୁସିଂହ, ସଂପାଦକ ଶ୍ରୀ ଲକ୍ଷ୍ମୀଧର ସାହୁଙ୍କୁ ଆରେଷ୍ଟ କଲେ । ପୁଲିସ୍‌ର ଗୁଳି ଚାଳନା କରିବା ଫଳରେ ପ୍ରାୟ 17 ଜଣ ଲୋକଙ୍କର ମୃତ୍ୟୁ ଘଟିଥିଲା ଏବଂ ବହୁଲୋକ ଆହତ ହୋଇଥିଲେ । ଢେଙ୍କାନାଳର ଲୋକମାନେ ଘରଦ୍ୱାର ଛାଡ଼ି ପିଲାଛୁଆଙ୍କୁ ଧରି କଟକ ପଳାଇଗଲେ ।

ଏ ସଂପର୍କରେ ଅନୁଧ୍ୟାନ ପାଇଁ ଗୋଟିଏ କମିଟୀ ଗଠନ ହେଲା ଯେଉଁଥିରେ ମହତାବ ମଧ୍ୟ ରହିଲେ । ମେଜର ବେଜେଲଗେଟ ଓ ମହତାବଙ୍କ ଉପସ୍ଥିତିରେ ଆଲୋଚନା ହେଲା କିନ୍ତୁ ଏ ଆଲୋଚ଼ନା ଚାଲି ପାରିଲା ନାହିଁ । ଦରବାର ପକ୍ଷରୁ ରାଜ୍ୟ ଭିତରକୁ ବାହାରୁ ଅଧିକ ସୈନ୍ୟ ଅଣାଗଲା ଏବଂ ଯେଉଁ କମିଟୀ ଗଠନ କରାଗଲା, ତାହା ନିରପେକ୍ଷ କମିଟୀ ନଥିଲା । ସେଥିରୁ ବହୁ ଲୋକଙ୍କୁ ବାଦ ଦିଆଯାଇଥିଲା । ଏହାକୁ ଲକ୍ଷ୍ୟକରି ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଲେଖିଛନ୍ତି, "ଆମ୍ଭମାନଙ୍କ ବିଚାରରେ ଢେଙ୍କାନାଳ ଆନ୍ଦୋଳନ ଯେତେବେଳେ ଗୋଟିଏ ମୀମାଂସାମୂଳକ ପରିସ୍ଥିତିର ସମ୍ମୁଖୀନ ହୋଇଥିଲା, ସେତେବେଳେ ମହତାବବାବୁ ରାଜଦରବାର ସହ ଗୋଟିଏ ମିଳାମିଶାର ଯେ ସୂତ୍ରପାତ କଲେ, ତାହା ଆନ୍ଦୋଳନ ପକ୍ଷରେ ବଡ଼ କ୍ଷତିକାରକ ହେଲା । ତାହା ପୁଣି ଆମେ ସବୁ, ବିଶେଷ ଭାବରେ ସାରଙ୍ଗଧର ବାବୁ, ନବବାବୁ ଓ ମାଳତୀ ଦେବୀଙ୍କ ଅଗୋଚ଼ରରେ ଓ ବିନା ପରାମର୍ଶରେ ହୋଇଥିଲା । ମହତାବବାବୁଙ୍କର ମନୋବୃତ୍ତି ବିଚିତ୍ର । ସେ ଅନ୍ୟ ସାଧାରଣ କଂଗ୍ରେସ ଲୋକଙ୍କ ପରି ଆନ୍ଦୋଳନର ବିରୋଧୀ ନଥିଲେ କିମ୍ବା ଥରେ କୌଣସି ଆନ୍ଦୋଳନରେ ଲିପ୍ତ ହୋଇଗଲେ ସେଥିରୁ ପଛେଇ ଯାଉ ନଥିଲେ । କିନ୍ତୁ ଆନ୍ଦୋଳନକୁ ସାଧାରଣ ଭାବରେ ଆରମ୍ଭ କରିବା କିମ୍ବା ଏଥିରେ ବେଶି ଦୂର ଆଗେଇ ଯିବା ଯେପରିକି ତାଙ୍କର ପ୍ରକୃତି ବିରୁଦ୍ଧ କାର୍ଯ୍ୟ । ଯେନେତେନ ପ୍ରକାରେଣ ଗୋଟାଏ ମୀମାଂସା କରିଦେବା ହେଲା ତାଙ୍କର ନୀତି ।"

ମହତାବଙ୍କ ମତରେ "ସ୍ଥାନୀୟ ନେତା ଖୁବ୍ ସୁଦକ୍ଷ ନଥିଲେ କୌଣସି ଆନ୍ଦୋଳନ ଯଶସ୍ୱୀ ହେବାର ସମ୍ଭାବନା ନାହିଁ, କେବଳ ଲୋକଙ୍କ ଉତ୍ସାହ ଥିଲେ ହେବ ନାହିଁ, ପରିଚାଳକ ମଧ୍ୟ ଦରକାର ।"

ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନର ସମସ୍ୟା ସମାଧାନରେ ମହତାବ ସଫଳତା ପାଇ ନ ଥିଲେ । ସେ କଂଗ୍ରେସ କାର୍ଯ୍ୟକାରୀ କମିଟୀ ଦିଲ୍ଲୀଠାରେ ଯୋଗ ଦେବା ବେଳେ ତାଳଚେ଼ରଠାରେ ପ୍ରଜାମଣ୍ଡଳର ଆନ୍ଦୋଳନ ଯୋରସୋରରେ ଆରମ୍ଭ ହୋଇଯାଇ ଥାଏ । ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ତାଳଚେ଼ର ଆନ୍ଦୋଳନକୁ ସଠିକ୍ ମାର୍ଗ ଦର୍ଶାଇ ପରିଚାଳନା କରିବା ପାଇଁ ମହତାବ ତାହାର ଦାୟିତ୍ୱ ନେଲେ ।

1938 ସେପ୍‌ଟେମ୍ବର 6 ତାରିଖରେ ତାଳଚେ଼ର ପ୍ରଜାମଣ୍ଡଳ ଗଠିତ ହୋଇଥିଲା । ଏହାର ନେତୃତ୍ୱ ନେଇଥିଲେ ପବିତ୍ର ମୋହନ ପ୍ରଧାନ । ଟିକସ ଆଦାୟରେ ଲୋକମାନେ ଥିଲେ ଅତିଷ୍ଠ । ଏକ ଦଶଜଣିଆ କମିଟୀ ମାଧ୍ୟମରେ ପ୍ରଜାମଣ୍ଡଳ ମୌଳିକ ଅଧିକାର ଓ ଦାୟିତ୍ୱ ପୂର୍ଣ୍ଣ ସରକାର ଦାବିକୁ ଉପେକ୍ଷା କରି ଦରବାର ପକ୍ଷରୁ ଲୋକମାନଙ୍କୁ ମାଡ଼, ଜେଲ ଓ ଘର ଲୁଟତରାଜ ହେବାକୁ ଲାଗିଲା । 21 ଓ 23 ତାରିଖ ଦିନ ପୋଲିସ ଗୁଳିରେ ଚ଼ନ୍ଦ୍ରବିଲ ଗ୍ରାମର ଜଣେ ହରିଜନର ମୃତ୍ୟୁ ହେଲା । ଏବଂ ବହୁଲୋକ ଆହତ ହେଲେ । ପ୍ରଜାମଣ୍ଡଳକୁ ଅସିଦ୍ଧ ଘୋଷଣା କରାଗଲା । ଦରବାରର ନିଷ୍ଠୁର ଅତ୍ୟାଚାର ବିରୋଧରେ ଆରମ୍ଭ ହେଲା ସତ୍ୟାଗ୍ରହ । ଶହ ଶହ ଲୋକ ଜେଲ ଗଲେ । ସମଗ୍ର ଜେଲ ଯେପରି ହିଟଲରର କନ୍‌ସେନଟ୍ରେସନ କ୍ୟାମ୍ପ ପରି ହୋଇ ଯାଇଥିଲା । ତାଳଚେ଼ର ପ୍ରଜାମଣ୍ଡଳର ନେତା ପବିତ୍ର ମୋହନ ପ୍ରଧାନ, ଦାଶରଥି ପାଣି ଓ ମାଗୁଣି ପ୍ରଧାନ ମହତାବଙ୍କର ସାହାଯ୍ୟ ଲୋଡ଼ିଲେ । ପ୍ରଜାମଣ୍ଡଳ ନେତା ଗୌରୀଶଙ୍କର ପ୍ରଧାନ ଓ କୃତ୍ତିବାସ ରଥ ମହତାବଙ୍କୁ କଟକରେ ଭେଟି ତାଳଚେରର ଲୋମହର୍ଷଣ କାହାଣୀ ଶୁଣାଇଲେ ।

ଲୋକମାନଙ୍କର ହାରି ଗୁହାରି ଓ ପ୍ରାର୍ଥନା ନଶୁଣିବା ଫଳରେ ଗାନ୍ଧୀଙ୍କ ନିର୍ଦ୍ଦେଶରେ ହଜାର ହଜାର ଲୋକ ପିଲାଛୁଆ ଧରି ଶୀତ କାକରରେ ପଡ଼ୁକୁଡ଼ିଆରେ ବ୍ରିଟିଶ ଶାସନାଧୀନ ପରିସୀମା ଅନୁଗୁଳଠାରେ ଆସି ରହିଲେ । ମହତାବ ତାଳଚେ଼ର ରାଜାଙ୍କୁ ସାକ୍ଷାତ କଲେ ଏବଂ ଆପୋଷ ସମାଧାନର ଆଶା ରଖିଲେ । ରାଜା ମହତାବଙ୍କୁ ଲୋକ ଚ଼କ୍ଷୁରେ ନିନ୍ଦିତ କରିବା ପାଇଁ ଏକ ଘୋଷଣାନାମା ଜାରିକଲେ କିନ୍ତୁ ତାହା ଲୋକମାନେ ଗ୍ରହଣ କଲେ ନାହିଁ । ଆନ୍ଦୋଳନ ଜାରି ରହିଲା । ତାଳଚେ଼ର ଛାଡ଼ି ଲୋକମାନେ ପଳାଇ ଆସିବାକୁ ଲାଗିଥାନ୍ତି । ମହତାବ ସେଠାକୁ ଏକ ପ୍ରତିନିଧି ଦଳ ପଠାଇବା ପାଇଁ ଗାନ୍ଧିଜୀଙ୍କୁ ଅନୁରୋଧ କଲେ । ଶ୍ରୀ ଏ.ଭି. ଠକ୍‌କର ବାପା, ପ୍ରଫେସର ଏନ୍.ଜି.ରଙ୍ଗା, ରେଭରେଣ୍ଡ ସି.ଏଫ. ଆଣ୍ଡୃଜ, ସରୋଜିନୀ ନାଇଡୁ ଓ ଆଗାଥା ହାରିସନ ଆସି ଅନୁଗୁଳଠାରେ ଲୋକଙ୍କର ଅବସ୍ଥା ସ୍ୱଚ଼କ୍ଷୁରେ ଦେଖି ଗାନ୍ଧିଜୀଙ୍କୁ ଜଣାଇଲେ । ଗାନ୍ଧିଜୀ ଲୋକଙ୍କର ଦୁର୍ଦ୍ଦଶା ହରିଜନ ପତ୍ରିକାରେ ଲେଖିବା ସହିତ ଲିନ୍ ଲିଥଗୋଙ୍କୁ ଚ଼ିଠି ଲେଖି ବ୍ରିଟିଶ ଏଜେଣ୍ଟ ଲୋକଙ୍କର ଅବସ୍ଥା ତଦନ୍ତ କରି ସେମାନଙ୍କର ଦୁର୍ଦ୍ଦଶା ମୋଚ଼ନ କରନ୍ତୁ ବୋଲି ଅନୁରୋଧ କଲେ ।

1939 ମାର୍ଚ୍ଚ ମାସରେ ମେଜର ହେନ୍‌ସେ, ସହକାରୀ ପଲିଟିକାଲ ଏଜେଣ୍ଟ ତାଳଚେ଼ର ଶରଣାର୍ଥୀ ଶିବିର ପରିଦର୍ଶନ କଲେ ଏବଂ ପରେ ମିଃ ଏନସର୍ଜଙ୍କର ଉପସ୍ଥିତି ମହତାବ ଓ ହେନ୍‌ସେ ମଧ୍ୟରେ ୨ ଦଫା ଚୁକ୍ତି ସ୍ୱାକ୍ଷରିତ ହେଲା । କିନ୍ତୁ ଦରବାର ଏହାକୁ କାର୍ଯ୍ୟକାରୀ କଲେ ନାହିଁ । କଲିକତା କଂଗ୍ରେସ କମିଟୀ ବୈଠକ ବେଳେ ମହତାବ ଏକଥା ଗାନ୍ଧୀ, ସୁଭାଷ ଓ ଅନ୍ୟ ନେତୃମଣ୍ଡଳୀକୁ ଜଣାଇଲେ । ଗାନ୍ଧୀ ପୁନଶ୍ଚ ଲିନ୍ ଲିଥଗୋଙ୍କୁ ଜଣାଇଲେ ।

ମହତାବ ରେସିଡ଼େଣ୍ଟ କର୍ଣ୍ଣେଲ ବ୍ରାର୍ଟାଙ୍କ ସହିତ ସାକ୍ଷାତ କଲେ । 1939 ମେ 1 ତାରିଖରେ ସେ ତାଳଚେର ଯାଇ ପଲିଟିକାଲ ଏଜେଣ୍ଟ ମେରେ ସିର୍ଲ, କଟକ ଜିଲ୍ଲାପାଳ, କ୍ୟାପଟେନ୍ ଗ୍ରିମସ୍ ଓ ୪ ଜଣ ପ୍ରଜାମଣ୍ଡଳ ପ୍ରତିନିଧିଙ୍କ ସହିତ ଆଲୋଚ଼ନା କଲେ । ଆଶା କରାଯାଉଥିଲା ଯେ ରାଜା ୨ ଦଫା ଚୁକ୍ତିରୁ ୪ ଟିକୁ ମାନିବା କଥା ଘୋଷଣା କରିବେ । କିନ୍ତୁ ରାଜା ଠିକ୍ ଓଲଟା ଘୋଷଣା କଲେ । ମହତାବଙ୍କର ସବୁ ଚେଷ୍ଟା ପଣ୍ଡ ହେଲା । ନୂତନ ପଲିଟିକାଲ ଏଜେଣ୍ଟ ମେଜର ସର୍ଲ ମହତାବଙ୍କ ସହିତ ଆଲୋଚ଼ନା କରି ଏହା କରାଯାଇଛି କହିବାରୁ ମହତାବ ତାହାକୁ ଖଣ୍ଡନ କଲେ । ମହତାବ ଶେଷରେ ମିଲିଟାରୀ ଇଣ୍ଟେଲିଜେନ୍ସ ବେଞ୍ଚର ମୁଖ୍ୟ ମେଜର ଷ୍ଟିଫେନସନଙ୍କୁ ଦେଖାକରି ତାଙ୍କର ସାହାଯ୍ୟ ଲୋଡ଼ିଲେ । ମେଜର ଷ୍ଟିଫେନସନ୍ ପଲିଟିକାଲ ଏଜେଣ୍ଟ ସାର୍ଲଙ୍କ କଥା ଭୁଲ୍ ବୋଲି କହିଲେ ମଧ୍ୟ ଚ଼ିଠିଟି ଦେଲେ ନାହିଁ । ଫଳରେ ମହତାବ ପୁଣି ଗାନ୍ଧିଜୀଙ୍କ ସାହାଯ୍ୟ ଲୋଡ଼ିଲେ ଏବଂ ଭାଇସରାୟ ଲର୍ଡଲିନ୍‌ଥଗୋଙ୍କ ହସ୍ତକ୍ଷେପ ଫଳରେ ମିଲିଟାରୀ ଇଣ୍ଟେଲିଜେନ୍ସ ରିପୋର୍ଟ ଦେଲେ । ମେଜର ସାର୍ଲ ଚ଼ବିଶ ଘଣ୍ଟା ମଧ୍ୟରେ ବଦଳି ହେଲେ ଏବଂ ରାଜା ମହତାବ ହେନ୍ତି ଚୁକ୍ତିକୁ ଘୋଷଣା କଲେ । ତା'ପରେ ସାର ଜନ୍ ହବାକ୍‌ଙ୍କ କଥା ଅନୁସାରେ ପଳାତକମାନେ ନିଜ ନିଜ ଘରକୁ ଫେରିଲେ ।

ତାଳଚେର ଆନ୍ଦୋଳନ ସଂପର୍କରେ ମହତାବ ମତ ଦେଇ ନିଜର ଆତ୍ମଜୀବନୀରେ ଲେଖିଛନ୍ତି, "ଏହି ଘଟଣାରେ ଏକ ବିରାଟ ଆନ୍ଦୋଳନର ପରିଚାଳନା କିପରି କରିବାକୁ ହୁଏ, ତାହା ଗାନ୍ଧିଜୀଙ୍କଠାରୁ ପ୍ରତ୍ୟକ୍ଷ ଭାବରେ ଶିଖିଲି । ପୁଙ୍ଖାନୁପୁଙ୍ଖ ରୂପେ ସବୁ କଥାକୁ ଦୃଷ୍ଟି ନ ଦେଲେ ଓ ସଂପୃକ୍ତ ବହୁବ୍ୟକ୍ତିଙ୍କ ସହ ସଂପର୍କ ନ ରଖିଲେ, ଏକ ନ୍ୟାଯ୍ୟ ଆନ୍ଦୋଳନ ଯେ ବ୍ୟର୍ଥ ହୋଇ ଯାଇ ପାରେ, ଏହା ମୋତେ ସ୍ପଷ୍ଟ ଭାବେ ଜଣାଗଲା ।"

**(ଚ) ରଣପୁର ପ୍ରଜାଆନ୍ଦୋଳନ :** ରଣପୁର ପ୍ରଜା ଆନ୍ଦୋଳନର କାହାଣୀ ଏକ ଲୋମହର୍ଷଣକାରୀ ଘଟଣା । ରଣପୁର ଦରବାରର ଅନ୍ୟାୟ ଓ ଅତ୍ୟାଚାର ବିରୋଧରେ ପ୍ରଜାମାନେ ପ୍ରଜାମଣ୍ଡଳ ନେତୃତ୍ୱରେ ଯେତେବେଳେ ଆନ୍ଦୋଳନ ଆରମ୍ଭ କଲେ, ତାହାକୁ ବେଆଇନ ବୋଲି ସରକାରଙ୍କର ଘୋଷଣା ଏହାକୁ ଅତ୍ୟନ୍ତ ବ୍ୟାପକ କରି ଗଢ଼ିତୋଳିଲା । ବହୁସଂଖ୍ୟକ କର୍ମୀଙ୍କୁ ଜେଲଖାନାରେ ଠୁଙ୍କି ଦିଆଗଲା । ପ୍ରଜାମଣ୍ଡଳ ପକ୍ଷରୁ ଘୋଷଣା ହେଲା ଯେ ବନ୍ଦୀମାନଙ୍କୁ ମୁକ୍ତ କରିବା ଦାବିରେ ମାର୍ଚ୍ଚ 5 ତାରିଖ ଦିନ ଏକ ବିରାଟ ଜନସମାବେଶ ରଣପୁର ରାଜନଅର ନିକଟରେ ହେବ । ରାଜା ଆତଙ୍କିତ ହୋଇ ପଲିଟିକାଲ ଏଜେଣ୍ଟଙ୍କର ସାହାଯ୍ୟ ଲୋଡ଼ିଲେ । ରଣପୁର ନିକଟସ୍ଥ ନୟାଗଡ଼ଠାରେ ପଲିଟିକାଲ ଏଜେଣ୍ଟ ବେଜେଲଗେଟ ଥିଲେ । ସେ ତୁରନ୍ତ ରଣପୁର ଆସିଲେ କିନ୍ତୁ ରାସ୍ତାରେ ଲୋକମାନେ ଗଛ କାଟି ପକାଇ ଥିବା ଫଳରେ ତାଙ୍କର ଆସିବା କଷ୍ଟସାଧ୍ୟ ହେଲା । ରଣପୁର ଗଡ଼ରେ ପହଞ୍ଚିବା ବେଳକୁ ହଜାର ହଜାର ପ୍ରଜା ରୁଣ୍ଡ ହୋଇଥାନ୍ତି । ରାସ୍ତା ପରିଷ୍କାର କଲାବେଳେ ବେଜେଲଗେଟଙ୍କର ଲୋକଙ୍କ ସହିତ ସାମାନ୍ୟ ସଂଘର୍ଷ ହୋଇଥିଲା । କିନ୍ତୁ ଗୁଜବ ପ୍ରଚାର ହେଲା ଯେ ବେଜେଲଗେଟ ଦୁଇଜଣ ପ୍ରଜାଙ୍କୁ ଗୁଳି କରି ହତ୍ୟା କରିଛନ୍ତି । ଲୋକମାନେ ଥାଆନ୍ତି ଉତ୍ତ୍ୟକ୍ତ । ଏହା ବୁଝାଇବାକୁ ଚେଷ୍ଟା କରାଗଲା । ଉତ୍ତ୍ୟକ୍ତ ଜନତା ତାଙ୍କୁ ଘେରି

ଯାଇ ଠେଲା ପେଲା କରିବାରୁ ସାହେବ ଉତ୍ତ୍ୟକ୍ତ ହୋଇ ଗୁଳିଚାଳନା କରିବା ଫଳରେ ଜଣେ ପ୍ରଜାର ମୃତ୍ୟୁ ହେଲା । ଏହା ଫଳରେ ଉତ୍ତ୍ୟକ୍ତ ଜନତା ବେଜେଲଗେଟଙ୍କୁ ପିଟି ପିଟି ମାରିଦେଲେ ।

ରଣପୁର ପ୍ରଜାମଣ୍ଡଳୀର ଲୋକମାନେ ହୁଏତ ହିଂସାତ୍ମକ ଆଚରଣ କରି ପାରନ୍ତି. ଏହି ଆଶଙ୍କାରେ ପ୍ରଜାମଣ୍ଡଳର କର୍ମୀ ଶ୍ରୀ ବନମାଳୀ ରାମ ମହତାବଙ୍କୁ ଆସିବାକୁ ଅନୁରୋଧ କଲେ । ଜାନୁଆରୀ 5 ତାରିଖ ଦିନ ମହତାବ ବନମାଳୀଙ୍କ ସହିତ ମଟର ଯୋଗେ ରଣପୁର ଗଲେ । ସେ ବେଜେଲଗେଟ ସାହେବଙ୍କୁ ଦେଖା କରିବାକୁ ଇଚ୍ଛା କରି ଖୋର୍ଦ୍ଧା ଥାନାରେ ପଚାରିଲେ । ତାଙ୍କର କେଉଁଠି ଥିବାର ସଠିକ୍ ତଥ୍ୟ ନ ପାଇ ଓ ବିଳମ୍ବ ହେଉଥିବା ଦେଖି ସେ ସିଧା ରଣପୁର ଅଭିମୁଖେ ଯାତ୍ରା କଲେ । ରଣପୁରଠାରୁ ସାତ ମାଇଲ ଦୂରରେ ଥିବା ରଣପୁର ରାଜାଙ୍କ କୋଠାରୁ ସେ ରାଜାଙ୍କ ସହିତ ସାକ୍ଷାତ ପାଇଁ ଅନୁମତି ଚାହିଁଲେ । ସେଠାରେ ଥିବା ଲୋକଟି ରାଜାଙ୍କୁ ଟେଲିଫୋନ କଲା ଓ ରାଜାଙ୍କ ଉତ୍ତର ଶୁଣି କହିଲା. "ରାଜା କହୁଛନ୍ତି ପଲିଟିକାଲ ଏଜେଣ୍ଟ ମଲେଣି । ଯଦି ଆସି ମୋର ଜୀବନ ରକ୍ଷା କରିବେ ତ କରନ୍ତୁ ।"

ମହତାବ ରାସ୍ତା ସଫା କରି ରଣପୁରରେ ପହଞ୍ଚିବା ବେଳକୁ ରାତି ୨ଟା । ପୁଲିସ ତାଙ୍କୁ ଅଟକାଇ ତାଙ୍କର ପରିଚୟ ପାଇବା ପରେ ପୁଲିସ ଇନିସପେକ୍ଟର ତାଙ୍କୁ ନେଇ ମୃତ ହୋଇ ପଡ଼ିଥିବା ବେଜଲଗେଟଙ୍କୁ ଦେଖାଇ ଥିଲେ । ମହତାବ ସେଠାରେ ଅନ୍ୟ ଦୁଇଟି ମୃତ ଶରୀର ପଡ଼ିଥିବାର ମଧ୍ୟ ଦେଖିଲେ । କିଛି ଦୂରରେ ମୁମୂର୍ଷୁ ଅବସ୍ଥାରେ ଜଣେ ପୋଲିସ ହାବିଲଦାର ପଡ଼ିଥାଏ । ମହତାବ ତାଙ୍କ ଗାଡ଼ିରେ ତାକୁ ଡ଼ାକ୍ତରଖାନାକୁ ପଠାଇଲେ । ଉତ୍ତେଜିତ ଲୋକମାନଙ୍କୁ ଆସନ୍ନ ବିପଦରୁ ରକ୍ଷା କରିବା ପାଇଁ ମହତାବ ପ୍ରଜାମଣ୍ଡଳର ନେତାମାନଙ୍କୁ କେତେକ ପରାମର୍ଶ ଦେଲେ । ସେହି ରାତିରେ କଟକ ଫେରି ଆସି ପରଦିନ ସକାଳେ ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କୁ ଓ ଅନ୍ୟମାନଙ୍କୁ ଏ ଖବର ଜଣାଇଲେ । ଏହି ଘଟଣାରେ ବେଜେଲଗେଟ ହତ୍ୟାକାଣ୍ଡ ସହିତ ମହତାବଙ୍କୁ ଜଡ଼ିତ କରିବା ପାଇଁ ଉଦ୍ୟମ ହୋଇଥିଲା । ଏପରିକି ଓଡ଼ିଶାର ତତ୍କାଳୀନ ଲାଟ ସାର୍ ଜନ୍ ହବାକ ମତ ଦେଇଥିଲେ ଯେ ମହତାବ ଷଡ଼ଯନ୍ତ୍ର କରି ବେଜେଲଗେଟଙ୍କୁ ହତ୍ୟା କରାଇ ଦେଇଥିଲେ । ଓଡ଼ିଶା ସରକାରଙ୍କ ପୋଲିସ ମଧ୍ୟ ମହତାବ ହତ୍ୟା କରାଇଛନ୍ତି ବୋଲି ପ୍ରମାଣ ମିଳୁଛି ବୋଲି କହିଲେ । ମୁମୂର୍ଷୁ ଦାରୋଗା ନୁର ଖାଁ ଯାହାଙ୍କୁ ମହତାବ ବଞ୍ଚାଇବା ପାଇଁ ଡାକ୍ତରଖାନାକୁ ପଠାଇଥିଲେ ସେ ମହତାବଙ୍କ ବିରୋଧରେ କହିଲା । ମିଲଟାରୀ ଇଣ୍ଟେଲିଜେନ୍ସ ବିଭାଗର ମେଜର ଷ୍ଟିଫେନସନ୍ ଅନୁସନ୍ଧାନ କରି ମହତାବଙ୍କର ହତ୍ୟା ସହିତ ଜଡ଼ିତ ହେବା ମିଛ ଏବଂ ସେଦିନ ସେ ସେଠାରେ ଆକସ୍ମିକ ଭାବରେ ପହଞ୍ଚିଥିବାର ରିପୋର୍ଟ ଦେଲେ । ମିସ୍ ହାରିସନ ବଡ଼ଲାଟଙ୍କୁ ବୁଝାଇବା ଫଳରେ ମହତାବ ହତ୍ୟା ଅପରାଧରୁ ଅବ୍ୟାହତି ପାଇଲେ । ବେଜେଲଗେଟଙ୍କ ହତ୍ୟାକୁ ପ୍ରକାଶ୍ୟରେ ମହତାବ ଓ କଂଗ୍ରେସ ନିନ୍ଦା କରିଥିଲେ । ଅଭିଯୁକ୍ତ ବ୍ୟକ୍ତିମାନଙ୍କର ବିଚାର ହୋଇ ଦୁଇଜଣଙ୍କୁ ଫାଶୀ ଓ ଅନ୍ୟମାନଙ୍କୁ ଜେଲଦଣ୍ଡ ହେଲା । ଯେଉଁ ଦୁଇଜଣ ଫାଶୀ ପାଇଲେ ସେ ଦୁଇ ସହିଦ ହେଲେ ଶ୍ରୀ ରଘୁନାଥ ମହାନ୍ତି ଓ ଶ୍ରୀ ଦିବାକର ପରିଡ଼ା ।

ମହତାବଙ୍କ ସାହସ, ଦୂରଦୃଷ୍ଟି ଫଳରେ ବହୁ ଜୀବନହାନି ଘଟିବାରୁ ରକ୍ଷା ମିଳିଥିଲା ।

ହାଇକୋର୍ଟର ବିଚାରପତି ତାଙ୍କ ରାୟରେ ଲେଖିଥିଲେ ଯେ, ସେଦିନର ଘଟଣା, ଯାହାର ପରିଣତି ବେଜେଲଗେଟ୍‌ଙ୍କ ହତ୍ୟା, ସେଥିପାଇଁ ବେଜେଲଗେଟ୍ ନିଜେ ମଧ୍ୟ ଦାୟୀ ।

ରଣପୁର ଶାସନର ଆମୂଳଚୂଳ ପରିବର୍ତ୍ତନ ହେଲା । ରାଜା ଗାଦିଚ୍ୟୁତ ହେଲେ । ରାଜନୈତିକ ବିଭାଗ ସେଠାକାର ଶାସନ କ୍ଷମତା ହାତକୁ ନେଇ ଚଳାଇଲେ । ରଣପୁର ଠାରେ ବାର୍ଷିକ ଦିବସ ପାଳନ ବେଳେ ମହତାବ କହିଥିଲେ ଯେ ଜଣେ ଲୋକ ଉତ୍ୟକ୍ତ ଜନତାକୁ ଗୁଳି କରିବା ଉଚିତ ନୁହେଁ କାରଣ ଏହା ବିପଦ ଆଣିଥାଏ । ମାତ୍ର ମେଜର ନିଜେ ସେହି ଭୁଲ କରି ତା'ର ମୂଲ୍ୟ ଦେଲେ ।"

1939 ଅଗଷ୍ଟରେ ଯେତେବେଳେ ବଡ଼ଲାଟ କଟକ ଆସିଲେ ସେତେବେଳେ ମହତାବ ଗଡ଼ଜାତ ସଂପର୍କୀୟ ତଦନ୍ତ ରିପୋର୍ଟ ସଂପର୍କରେ ମନ୍ତବ୍ୟ ଦେଇ କହିଥିଲେ, "ତମସାଚ୍ଛନ୍ନ ଓଡ଼ିଶାର ସେ ଛୋଟ ଛୋଟ ଗଡ଼ଜାତ ଭିତରେ ଏ ରିପୋର୍ଟ ଆଲୋକର ରେଖା ପକାଇଛି ଏଣିକି ଧୀରେ ଧୀରେ ଆମେ ଅଗ୍ରସର ହେବୁ ।"

ଗଡ଼ଜାତ ଆନ୍ଦୋଳନ ସଂପର୍କରେ ଗଡ଼ଜାତ ତଦନ୍ତ କମିଟୀ ରିପୋର୍ଟ ପ୍ରକାଶ ପାଇଥିଲା ଏବଂ ଏଥିରେ ଗଡ଼ଜାତରେ କି ଅକଥନୀୟ ଅତ୍ୟାଚାର ହେଉଥିଲା, ତା'ର ବର୍ଣ୍ଣନା ଥିଲା । ଏହି ପ୍ରଜାମଣ୍ଡଳ ଆନ୍ଦୋଳନ ଯଦିଓ ସମ୍ପୂର୍ଣ୍ଣ ସଫଳ ହୋଇଥିଲା ବୋଲି କୁହାଯାଇ ପାରିବ ନାହିଁ, ତଥାପି ଏହାର କେତେକାଂଶରେ ସଫଳତା 1947 ସ୍ୱାଧୀନତା ପରେ ଓଡ଼ିଶା ସହିତ ଗଡ଼ଜାତ ମିଶ୍ରଣର ଚୂଡ଼ାନ୍ତ ରୂପ ନେଲା । ମହତାବ ଏହି ଆନ୍ଦୋଳନକୁ ସଠିକ୍ ଭାବରେ ଦିଗ ନିର୍ଦ୍ଦେଶ ଦେବା ସହିତ ସଫଳତା ହାସଲ କରିବାରେ ସକ୍ଷମ ହୋଇ ଥିଲେ । ଗଡ଼ଜାତ ଆନ୍ଦୋଳନ ଲୋକଙ୍କ ମଧ୍ୟରେ ବୀରତ୍ୱର ପରିପ୍ରକାଶ ଘଟାଇଥିଲା । ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ, ବିଶ୍ୱନାଥ ଦାସ,ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ ଓ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କର ଏହି ଆନ୍ଦୋଳନ ସହିତ ପ୍ରତ୍ୟକ୍ଷ ସହଯୋଗ ଓ ପରିଚାଳନା ଏହାକୁ ସର୍ବଭାରତୀୟ ସ୍ୱୀକୃତି ପ୍ରଦାନ କରିଥିଲା ।

**(ଛ) ବ୍ୟକ୍ତିଗତ ସତ୍ୟାଗ୍ରହ :** 1940 ମସିହାରେ ୱାର୍ଦ୍ଧାଠାରେ ମହତାବ କଂଗ୍ରେସ କାର୍ଯ୍ୟକାରୀ କମିଟୀର ବୈଠକରେ ଜଣେ ନିମନ୍ତ୍ରିତ ସଭ୍ୟଭାବରେ ଯୋଗ ଦେଲେ । କଂଗ୍ରେସ କାର୍ଯ୍ୟକାରୀ କମିଟୀରେ ସ୍ଥିର କଲାଗଲା ଯେ ଅସହଯୋଗ ଆନ୍ଦୋଳନକୁ ଏକ ପୂର୍ଣ୍ଣାଙ୍ଗ ରୂପ ପ୍ରଦାନ କରାଯାଉ ଏବଂ କଂଗ୍ରେସର ମୌଳିକ ଦାବି ଭାରତର ସ୍ୱାଧୀନତାକୁ ଅକ୍ଷୁଣ୍ଣ ରଖାଯାଉ । ମହତାବ ୱାର୍ଦ୍ଧାରୁ ଫେରି ପ୍ରଦେଶ କଂଗ୍ରେସ କମିଟୀ କିପରି ସତ୍ୟାଗ୍ରହ ପ୍ରାୟ ପଦକ୍ଷେପ ନେବ, ସେଥିପାଇଁ ଚେଷ୍ଟା କଲେ । ପିସିସି 4 ଗୋଟି ବିଭାଗ ଗଠନ କଲେ ଯଥା ହରିଜନମାନଙ୍କର ଉନ୍ନତି, ସଂଖ୍ୟାଲଘୁ ସମସ୍ୟା, ଖଦୀ ଓ ଚରଖାର ପ୍ରସାର ଏବଂ ପ୍ରଚାର । ମହତାବ ପ୍ରଚାର ଦାୟିତ୍ୱର ମୁଖ୍ୟ ହେଲେ ।

ମହତାବ କଂଗ୍ରେସର ରଚନାତ୍ମକ କାର୍ଯ୍ୟକୁ ଆଗେଇ ନେବା ପାଇଁ ମଧ୍ୟ ଜିଲ୍ଲାସାରା ବୁଲି ବୁଲି ଚେଷ୍ଟା କଲେ । ବାଲେଶ୍ୱର ଜିଲ୍ଲାର ସଭାପତି ଭାବରେ ଯୁଦ୍ଧଚାନ୍ଦା ଆଦାୟକୁ

ବିରୋଧ କରିବାକୁ ମହତାବ ଲୋକଙ୍କୁ ଉପଦେଶ ଦେଲେ । 1940 ଅକ୍ଟୋବର ମାସରେ ଗାନ୍ଧୀ ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ଏକ ଘୋଷଣା କଲେ । ଏହି ସତ୍ୟାଗ୍ରହର ଉଦ୍ଦେଶ୍ୟ ଥିଲା ଯୁଦ୍ଧ ଓ ଯୁଦ୍ଧ ବିରୋଧରେ ଯୋଗଦାନକୁ ବିରୋଧ କରିବା । ମହତାବ, ବିଶ୍ୱାସ ରାୟ, ବିଶ୍ୱନାଥ ଦାସ, ନବକୃଷ୍ଣ ଚୌଧୁରୀ ଏବଂ ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତି ବ୍ୟକ୍ତିଗତ ସତ୍ୟାଗ୍ରହରେ ଯୋଗ ଦେଇ ଜେଲ ଗଲେ । 1940 ଡିସେମ୍ବର ମାସରେ ରେମୁଣାଠାରେ ମହତାବ ଯୁଦ୍ଧ ବିରୋଧୀ ଭାଷଣ ଦେଇ ଜେଲ ଗଲେ ଏବଂ ତାଙ୍କୁ ଏକ ବର୍ଷ କାରାଦଣ୍ଡ ହେଲା । ତାଙ୍କୁ ବ୍ରହ୍ମପୁର ଜେଲରେ 'କ' ଶ୍ରେଣୀର ବନ୍ଦୀ ଭାବରେ ରଖାଗଲା । ସେଠାରେ ସେ ଭଗବତ୍ ଗୀତା ଓ ଚୈତନ୍ୟ ଚ଼ରିତାମୃତ ପଢ଼ିବାକୁ ସମୟ ପାଇଲେ ଏବଂ ସହବନ୍ଦୀମାନଙ୍କ ସହିତ ସେ ସଂପର୍କରେ ଆଲୋଚ଼ନା କଲେ । ଜେଲରେ ଥିବା ବେଳେ ପାରଳା ଖେମୁଣ୍ଡି ମହାରାଜଙ୍କ ନେତୃତ୍ୱରେ ମନ୍ତ୍ରୀମଣ୍ଡଳ ଗଠନ ହେବାର ଖବର ପାଇଥିଲେ । ଏହି ମନ୍ତ୍ରୀମଣ୍ଡଳରେ ନୀଳକଣ୍ଠ ଦାସ ଓ ଗୋଦାବରୀଶ ମିଶ୍ର ଯୋଗ ଦେଇଥିଲେ । ଏହା କଂଗ୍ରେସ ନିଷ୍ପତ୍ତିର ବିରୋଧାଚରଣ କରୁଥିଲା । ନୀଳକଣ୍ଠ ଦାସ କଂଗ୍ରେସରୁ ନିଲମ୍ବିତ ହୋଇଥାନ୍ତି ।

1941 ଡ଼ିସେମ୍ବର 1 ତାରିଖ ଦିନ ଜେଲ୍‌ରୁ ଖଲାସ ହୋଇ ସେ ଏହି ମିଳିତ ମନ୍ତ୍ରୀମଣ୍ଡଳ ବିରୋଧରେ ପ୍ରଚାର କଲେ । ପୁନଶ୍ଚ ମହତାବଙ୍କୁ ଆରେଷ୍ଟ କରାଗଲା ଏବଂ ତାଙ୍କୁ ଦେଢ଼ମାସ ପାଇଁ ବନ୍ଦୀ କରି ରଖାଗଲା । ମହତାବଙ୍କର ଏହି ଆରେଷ୍ଟକୁ ଗାନ୍ଧୀ, ନେହେରୁ ଓ ରାଜେନ୍ଦ୍ର ପ୍ରସାଦ ନିନ୍ଦା କରିଥିଲେ ।

ବ୍ୟକ୍ତିଗତ ସତ୍ୟାଗ୍ରହ ଆନ୍ଦୋଳନ ବସ୍ତୁତଃ ଧିମେଇ ପଡ଼ିଲା । ବ୍ୟକ୍ତିଗତ ସତ୍ୟାଗ୍ରହ ସଂପର୍କରେ ମହତାବ ଗାନ୍ଧୀଜୀଙ୍କ ବିଚାରକୁ ଦୃଷ୍ଟିରେ ରଖି ଲେଖିଥିଲେ, "ଦେଶରେ ଇଂରେଜ ସରକାରଙ୍କ ପ୍ରତି ଯେଉଁ ଅଶ୍ରଦ୍ଧା ବ୍ୟାପି ଯାଇଛି, ତାକୁ ଚପାଇ ରଖିବାକୁ ଗାନ୍ଧିଜୀ ପସନ୍ଦ କରୁନଥିଲେ । ଇଂରେଜ ଶାସନ ବିରୋଧରେ ବିସ୍ତୃତ ଅସନ୍ତୋଷ ଚାପି ହୋଇ ଲୋକଙ୍କ ଅନୁଭୂତିର ଅନୁରୂପ ଆନ୍ଦୋଳନରେ ପ୍ରକାଶପାଉ ତା'ର ଫଳାଫଳ ଭଗବାନଙ୍କ ଉପରେ ଛାଡ଼ି ଦିଆଯାଉ । ନିଜେ ଆନ୍ଦୋଳନର କର୍ତ୍ତା ନହୋଇ ସେ ଏହାର କର୍ତ୍ତୃତ୍ୱ ଲୋକମାନଙ୍କ ଉପରେ ଛାଡ଼ି ଦେଇ ଥିଲେ । ଅବଶ୍ୟ ସେ ଯଦି ଧରା ନ ହୁଅନ୍ତି, ତେବେ ଲୋକଙ୍କ ଦ୍ୱାରା ପରିଚାଳିତ ଆନ୍ଦୋଳନ ଅହିଂସାର ସୀମା ଭିତରେ ରଖିବାକୁ ଚେଷ୍ଟା କରିବେ, ମାତ୍ର ଇଂରେଜଙ୍କ ପ୍ରତି ଲୋକଙ୍କ ଅବିଶ୍ୱାସ ଓ ଅସନ୍ତୋଷକୁ ଚାପି ରଖିବାରେ ସେ ସାହାଯ୍ୟ କରିବେ ନାହିଁ । ଏହା ହିଁ ତାଙ୍କର ଚିନ୍ତାଧାରା ଥିଲା ବୋଲି ମୋର ଧାରଣା ।"

ବର୍ଦ୍ଧୋଳି ଓ ୱାର୍ଦ୍ଧାଠାରେ ଗାନ୍ଧିଜୀଙ୍କ ସହିତ ସାକ୍ଷାତ ଆଲୋଚନା ଫଳରେ ସେ ଗାନ୍ଧୀଙ୍କ ବିଚାର ଦ୍ୱାରା ବେଶୀ ପ୍ରଭାବିତ ହୋଇଥିଲେ । ତେଣୁ କଟକ ଫେରିବା ପରେ ସେ ଗାନ୍ଧୀ ବିଚାର ପ୍ରଚାରର ଓ ପ୍ରସାର ପାଇଁ "ରଚନା" ନାମକ ଏକ ସାପ୍ତାହିକ ପତ୍ରିକା ଆରମ୍ଭ କଲେ । ଏହା 'ହରିଜନ'ର ଓଡ଼ିଆ ଅନୁବାଦ ।

**(ଢ) 'ଭାରତ ଛାଡ଼' ପ୍ରସ୍ତାବ : ଅଗଷ୍ଟ ବିପ୍ଳବ :** 1942 ଅଗଷ୍ଟ 7 ତାରିଖ ଦିନ ଅଖିଳ ଭାରତ କଂଗ୍ରେସ କମିଟୀର ବୈଠକ ବମ୍ବେଠାରେ ଅନୁଷ୍ଠିତ ହେଲା । ବିପ୍ଳବର ମାର୍ଗ କ'ଣ ହେବ ଏସଂପର୍କରେ ନେତୃମଣ୍ଡଳୀ ବିଚାର ବିମର୍ଷ କଲେ । ଗାନ୍ଧୀଙ୍କ ପରାମର୍ଶ କ୍ରମେ

ଆଗତ ହେଲା 'ଭାରତ ଛାଡ଼' (Quit India) ପ୍ରସ୍ତାବ । 'ଭାରତ ଛାଡ଼' ପ୍ରସ୍ତାବରୁ 1942 ର ଐତିହାସିକ ଅଗଷ୍ଟ ବିପ୍ଳବ ସମସ୍ତ ରାଷ୍ଟ୍ରର ଗଳିକନ୍ଦିକୁ ବ୍ୟାପିଗଲା । ଏହି ପ୍ରସ୍ତାବ ଗ୍ରହଣ ହେବା ପରେ ଦେଶବାସୀଙ୍କୁ ସଂପୂର୍ଣ୍ଣ ଭାବେ ସଂଗ୍ରାମରେ ଯୋଗ ଦେବାକୁ ଗାନ୍ଧୀ ଆହ୍ୱାନ କଲେ । 'କର ଅବା ମର' (Do or die) ପଣ ନେଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାକୁ ଥିଲା ଆହ୍ୱାନ ।

ଅଗଷ୍ଟ ୫ ତାରିଖ ରାତିରେ ଗାନ୍ଧୀଙ୍କୁ ଗିରଫ କାରାଯାଇ ବମ୍ବେର ଆଗା ଖାଁ ପ୍ରାସାଦରେ ବନ୍ଦୀ କରି ରଖାଗଲା । ପଣ୍ଡିତ ଜବାହର ଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ମୌଲାନା ଆବୁଲ କାଲାମ୍ ଆଜାଦ୍, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଜେ.ବି. କୃପାଳିନୀ, ଖାଁ ଅବଦୁଲ ଗଫୁର ଖାଁ ଓ ମହତାବ ପ୍ରଭୃତି କଂଗ୍ରେସ କାର୍ଯ୍ୟକାରୀ କମିଟୀର ସଭ୍ୟମାନଙ୍କୁ ସେହିଦିନ ଗିରଫ କରି ଅହମ୍ମଦ ନଗର ଦୁର୍ଗରେ ଅଟକ ରଖାଗଲା ।

ବ୍ରିଟିଶ ସରକାର ଏହି ଆନ୍ଦୋଳନର ଗଭୀରତାକୁ ଅନୁମାନ କରି ନ ପାରି ଏହାକୁ ଚପାଇ ଦେବାକୁ ଚେଷ୍ଟା କରୁଥିଲେ । କିନ୍ତୁ ଏହା ଏକ ବିରାଟ ବିପ୍ଳବରେ ସ୍ୱତଃସ୍ଫୂର୍ତ୍ତ ଭାବରେ ଗଢ଼ିଉଠି ଭୟଙ୍କର ରୂପ ଧାରଣ କଲା ।

ବାଲେଶ୍ୱର ଜିଲ୍ଲାର ଇରମଠାରେ 1942 ମସିହା ସେପ୍‌ଟେମ୍ବର ମାସ 29 ତାରିଖରେ ଗୁଳି କାଣ୍ଡ ହେଲା, ଏହା ଥିଲା ଅତ୍ୟନ୍ତ ଭୟାବହ ଓ ନିର୍ମମ । ପୋଲିସ ଗୁଳିରେ 29 ଜଣ ସତ୍ୟାଗ୍ରହୀ ମରି ଟଳି ପଡ଼ିଲେ । ଏହା ଥିଲା ଓଡ଼ିଶାର ଏକ କ୍ଷୁଦ୍ର ଜାଲିଓ୍ୱାନାଓ୍ୱାଲାବାଗ ।

1942 ମସିହା ଅଗଷ୍ଟମାସଠାରୁ 1945 ମସିହା ଅପ୍ରେଲମାସ ପର୍ଯ୍ୟନ୍ତ ମହତାବ ଅହମ୍ମଦାବାଦ ଫୋର୍ଟରେ ବନ୍ଦୀଜୀବନ କଟାଇଥିଲେ । ତିନିବର୍ଷ କାଳ ନିରବଚ୍ଛିନ୍ନ ଭାବରେ ନିର୍ଦ୍ଦିଷ୍ଟ କାର୍ଯ୍ୟ ନିର୍ଘଣ୍ଟ ଅନୁସାରେ ମିନିଟ ହିସାବଠାରୁ ଚ଼ଳିବା ଆରମ୍ଭ କରି, ଲେଖାପଢ଼ା, ଖେଳ କସରତ ଓ ମାଟି ହାଣିବା ପ୍ରଭୃତି ବଗିଚା କାମ ସେଠାରେ ସେ ନିୟମିତ ଭାବରେ କରୁଥିଲେ । ନିୟମ ଅନୁସାରେ ଚ଼ଳିବା ଫଳରେ ବହୁ ବିଷୟରେ ଅଧ୍ୟୟନ ଓ ଲେଖିବା ଇତ୍ୟାଦି ତାଙ୍କ ଦ୍ୱାରା ସମ୍ଭବ ହୋଇଥିଲା ।

ଏହି ଜେଲରେ ଥିବା ବେଳେ ମହତାବ ନେତୃମଣ୍ଡଳୀଙ୍କ ମଧ୍ୟରେ କି ପ୍ରକାର ସୌହାର୍ଦ୍ଦ ଥିଲା ତାହା ଉଲ୍ଲେଖ କରି ଲେଖିଛନ୍ତି, ଥରେ ବ୍ୟାଡ଼ମିଣ୍ଟନ ଖେଳରେ ମୁଁ ଜବାହରଲାଲଙ୍କ ପକ୍ଷରେ ଖେଳୁଥିଲି । ଅନ୍ୟପକ୍ଷରେ କୃପାଳିନୀ ଓ ଶଙ୍କର ରାଓ ଥିଲେ । ସ୍ଥାୟୀ ମଧ୍ୟସ୍ଥ ଡାକ୍ତର ପଟ୍ଟାଭି ଥିଲେ । ଆମ୍ଭେମାନେ ହାରିଗଲୁ । ଖେଳଟା ଏପରି ଜିଦ୍‌ରେ ହେଉଥିଲା ଯେ, ଏଇ ହାରିବାଟା ଜବାହରଲାଲଙ୍କ ମନକୁ ଲାଗିଲା ଓ ସେ ହଠାତ୍ ରାଗିଯାଇ ହାରିବାର ଦାୟିତ୍ୱଯାକ ମୋ ଉପରେ ଲଦି ଦେଲେ । ଫଳରେ ମୁଁ ଆଉ ବ୍ୟାଡ଼ମିଣ୍ଟନ ଖେଳିଲି ନାହିଁ । କିଛି ଦିନ ପରେ ଜବାହରଲାଲ ପୁଣି ନିଜେ ଆସି ମୋତେ ଟାଣି ନେଇ ଖେଳରେ ଛିଡ଼ା କରାଇଲେ । ଏପରି ପିଲାଳିଆ ଆଚ଼ରଣ ମଧ୍ୟ ଆମ ଭିତରେ ବେଳେ ବେଳେ ପ୍ରକାଶ ପାଉଥିଲା ।"

ମହତାବ ବଂଶୀ ବାଦନ କରି ଜେଲଜୀବନକୁ ସମସ୍ତଙ୍କ ନିମନ୍ତେ ଉପଭୋଗ୍ୟ କରିବାରେ ମଧ୍ୟ ସାହାଯ୍ୟ କରୁଥିଲେ ।

ନେହେରୁ ତାଙ୍କର 'ଭାରତ ଆବିଷ୍କାର' ପୁସ୍ତକରେ ଲେଖିଛନ୍ତି, "ଅହମ୍ମଦ ନଗର

ଦୁର୍ଗରେ ମୋର ଯେଉଁ ଏଗାର ଜଣ ସଙ୍ଗୀ ଥିଲେ, ସେମାନେ କେବଳ ରାଜନୀତି ନୁହେଁ, ପୁରାତନ ଓ ନୂତନ ଉଭୟ ପ୍ରକାର ଭାରତୀୟ ବିଦ୍‌ବତ୍ତା ଏବଂ ସାମ୍ପ୍ରତିକ ଭାରତର ବିବିଧ ବିଭାଗର ପ୍ରତିନିଧିତ୍ୱ କରନ୍ତି । ପ୍ରାୟ ସମସ୍ତ ସଜୀବ ତଥା ପ୍ରମୁଖ ଭାରତୀୟ ଭାଷା ଏବଂ ସେସବୁ ପ୍ରାଚୀନ ଭାଷା ଯାହା ଅତୀତରେ ଭାରତକୁ ଶକ୍ତିଶାଳୀ ଭାବରେ ପ୍ରଭାବିତ କରିଥିଲା ଏବଂ ଆଜି ବି କରୁଛି, ସେସବୁର ବିଦ୍ୱାନମାନେ କାରାଗାରରେ ଥିଲେ ଏବଂ ଆମର ଆଲୋଚନାରେ ଉଚ୍ଚକୋଟୀର ବିଦ୍‌ବତ୍ତା ପ୍ରକଟିତ ହେଉଥିଲା ।" ଯଦିଓ ସେମାନଙ୍କର ଜୀବନଧାରା ଆଶ୍ରମବାସୀଙ୍କ ପରି ସମୟାନୁଭିତ୍ତିକ ହୋଇ ଉଠିଥିଲା, ତଥାପି ସେମାନେ ନିଜ ନିଜର ସମୟକୁ ଗବେଷଣା ଓ ଅଧ୍ୟୟନରେ କଟାଉଥିଲେ । ଫଳ ସ୍ୱରୂପ ଜବାହରଲାଲ ନେହେରୁଙ୍କ କଲମରୁ 'ଭାରତ ଆବିଷ୍କାର' (ଦି ଡିସକଭରୀ ଅଫ ଇଣ୍ଡିଆ) ପୁସ୍ତକ ପ୍ରସ୍ତୁତ ହେବାବେଳେ ମହତାବ ଲେଖିଲେ ଦୁଇ ଭାଗରେ ଓଡ଼ିଶା ଇତିହାସ । ଏହି ପୁସ୍ତକ ଲେଖିବା ସଂପର୍କରେ ମହତାବଙ୍କ ନିଜସ୍ୱ ମତକୁ ଏଠାରେ ଉଦ୍ଧାର କରାଯିବା ଆବଶ୍ୟକ । ସେ ମୁଖବନ୍ଧରେ ଲେଖିଛନ୍ତି "ଇତିହାସ ପ୍ରତି ମୋର ସେପରି ଆଗ୍ରହ ଛାତ୍ରାବସ୍ଥାରୁ ନଥିଲା ଏବଂ ଓଡ଼ିଶା ଇତିହାସ ସମ୍ବନ୍ଧରେ ମୋର ସ୍ପଷ୍ଟ ଧାରଣା ମଧ୍ୟ ନଥିଲା । ମାତ୍ର 1942 ମସିହାରେ ବନ୍ଦୀ ହୋଇ ଯେତେବେଳେ ଅହମ୍ମଦ ନଗର ଫୋର୍ଟ ବା ମୋଗଲ ସମୟର ପ୍ରସିଦ୍ଧ ଚାନ୍ଦବିବି କିଲ୍ଲାରେ ପ୍ରାୟ ସାଢ଼େତିନିବର୍ଷ କାଳ ରହିଲି, ସେତେବେଳେ ସେଠାର ବାୟୁମଣ୍ଡଳ କିପରି ଇତିହାସ ଆଲୋଚନାରେ ଭରିଗଲା । ଜୀବନର ସର୍ବୋତ୍କୃଷ୍ଟ ସମୟ ସେହି ଥିଲା ବୋଲି ଆମ ସମସ୍ତଙ୍କର ଆଜି ସୁଦ୍ଧା ମତ । ବହୁ ବିଷୟରେ ଗବେଷଣା ଓ ଆଲୋଚନା ଯାହା ସେଠାରେ ହୋଇଥିଲା, ଆଉ ସେପରି ବାହାରେ ରାଜନୈତିକ କୋଳାହଳରେ କରିବା ସହଜ ନୁହେଁ । ଆମ୍ଭମାନଙ୍କ ମଧ୍ୟରୁ ପ୍ରତ୍ୟେକ ଅତୀତର ଗହ୍ୱର ଭେଦକରି କିଛି ହେଲେ ଆଲୋକ ସେଠାରେ ପକାଇବା ପାଇଁ ଉଦ୍ୟମ କରିଥିଲୁ । କିଏ କେତେ କୃତକାର୍ଯ୍ୟ ହେଲୁ, ତାହା ପାଠକ ବିଚାର କରିବେ । ବହୁ ବିଷୟ ମଧ୍ୟରେ ଓଡ଼ିଶା ଇତିହାସର ସମ୍ୟକ ଆଲୋଚନା ମୋ ଉପରେ ଆସି ଅପ୍ରତ୍ୟାଶିତ ଭାବରେ ପଡ଼ିଲା । ଦିନେ ପଣ୍ଡିତ ଜବାହରଲାଲ ନେହେରୁ ଦୌଡ଼ି ଆସି ମୋ କୋଠରିରେ ନିମ୍ନଲିଖିତ ପୁସ୍ତକରୁ ନିମ୍ନଲିଖିତ ଲେଖା ଦେଖାଇଲେ –'The making of Indian princco' by Edward Thompson, page-62 : "Notorious shrine of Jagannath, the uncouth temple whereon incomprehensible people reverend ugliness as the personification of divine attributes (Thron memoir of the war in India 263) and Brahminism seemed to flaunt its difference from all the other religions of the modern world " ଅର୍ଥାତ୍ ଦୁର୍ନାମରେ ପ୍ରସିଦ୍ଧ ଜଗନ୍ନାଥ ତୀର୍ଥ, ଯେଉଁଠାରେ ଅଛି ଏକ କୁତ୍ସିତ ମନ୍ଦିର, ସେଠାରେ କିମ୍ଭୂତ କିମାକାର ଲୋକେ କୁତ୍ସିତତାକୁ ଈଶ୍ୱର ଗୁଣ ବୋଲି ମନେକରି ପୂଜା କରନ୍ତି ଓ ବ୍ରାହ୍ମଣ୍ୟ ଧର୍ମ ପୁଣି ଏ ପୂଜାକୁ ଆଧୁନିକ ଜଗତର ଅନ୍ୟଧର୍ମଠାରୁ ବଡ଼ ବୋଲି ଗର୍ବ କରେ ।

ପଣ୍ଡିତ ଜବାହରଲାଲ ଉଦବିଗ୍ନ ହୋଇ କହିଲେ, "ମହତାବ, ତୁମେ ଜାଣ ଏ ଜଗନ୍ନାଥର

ଇତିବୃତ୍ତି କିଛି ? ମୁଁ ଯେତେବେଳେ ପୁରୀ ଯାଇଥିଲି, ସେ ମୂର୍ତ୍ତି ଦେଖିଥିଲି । ମୋ ଦେହ ସେ କୁତ୍ସିତତା ଦର୍ଶନରେ ଶିହରି ଉଠିଥିଲା । ସେ ମୂର୍ତ୍ତି କ'ଣ ? ସେ ସମ୍ବନ୍ଧରେ ଜନଶ୍ରୁତି ବା କ'ଣ ? କାହିଁକି ସେପରି ପୂଜା କରାଯାଉଛି ?" ମୁଁ କିଛି ଉତ୍ତର ଦେଇ ନପାରି ଲଜ୍ଜିତ ହୋଇଥିଲି । ତା' ପରେ ସେଠାରେ ଆମ ବନ୍ଧୁମାନଙ୍କ ଭିତରେ ଚର୍ଚ୍ଚା ପାଇଁ "Story of Jagannath" ବା ଜଗନ୍ନାଥଙ୍କ ଇତିହାସ ନାମରେ ଏକ ଲେଖା ଲେଖିଥିଲି । ଏହି ଲେଖା ପାଇଁ ପ୍ରାୟ ଦୁଇବର୍ଷ ସମୟ ଲାଗିଥିଲା । ଏ ଦୁଇବର୍ଷ ସେହି ବିଷୟରେ ଦୈନିକ ପ୍ରାୟ 12 ଘଣ୍ଟା ପରିଶ୍ରମ କରିବାକୁ ପଡୁଥିଲା । ସେ ଲେଖା ବନ୍ଧୁମାନଙ୍କ ଦ୍ୱାରା ଆଦୃତ ହୋଇଥିଲା । ସେ ସମୟରେ ସେ ପ୍ରାଚୀନ ବୌଦ୍ଧ ଧର୍ମର ଇତିହାସ ମଧ୍ୟ ଆଲୋଚନା କରୁଥିଲେ । ସେଥିରେ ମଧ୍ୟ ମୁଁ ଯୋଗ ଦେଇଥିଲି । ଜଗନ୍ନାଥଙ୍କ ଇତିବୃତ୍ତିକୁ ଆଲୋଚନା କରିବାକୁ ପଡ଼ିଥିଲା । ସେହି ଆଲୋଚନାରେ ମୁଁ ଜାଣିଥିଲି ଯେ, ଓଡ଼ିଶାର ଇତିହାସ ଲେଖାର 'ଅଥମାରମ୍ଭ' ସୁଦ୍ଧା ହୋଇନାହିଁ । ଯାହା ପ୍ରକାଶିତ ହୋଇଛି, ତାହା ପ୍ରଥମେ ଜନଶ୍ରୁତି ଓ ପରେ ଅନୁଷ୍ଠାନ ଉପରେ ପ୍ରତିଷ୍ଠିତ ହୋଇଯାଇଛି ।"*

ମହତାବ ଅହମ୍ମଦନଗର ଜେଲରୁ ସମ୍ବଲପୁର ଜେଲକୁ ସ୍ଥାନାନ୍ତରିତ ହୋଇ 1945 ମେ' ମାସରେ ମୁକ୍ତ ହୋଇଥିଲେ । 1946 ମସିହାରେ ନିର୍ବାଚନ ହେଲା । କଂଗ୍ରେସ ନିର୍ବାଚନରେ ଜିତିଲା । 1946 ଏପ୍ରିଲ 23 ତାରିଖ ଦିନ ମହତାବଙ୍କ ପ୍ରଧାନମନ୍ତ୍ରୀତ୍ୱରେ ଏକ ଚାରିଜଣିଆ ମନ୍ତ୍ରୀମଣ୍ଡଳ ଶପଥ ନେଲେ । ସେମାନଙ୍କ ମଧ୍ୟରେ ଥିଲେ ସର୍ବଶ୍ରୀ ନବକୃଷ୍ଣ ଚୌଧୁରୀ, ଲିଙ୍ଗରାଜ ମିଶ୍ର, ନିତ୍ୟାନନ୍ଦ କାନୁନ୍‌ଗୋ ଓ ରାଧାକୃଷ୍ଣ ବିଶ୍ୱାସରାୟ । ଓଡ଼ିଶାରେ ଏହି ସରକାର ଥିବା ସମୟରେ 1947 ଅଗଷ୍ଟ 15 ତାରିଖ ଦିନ ଭାରତ ତାର ଇପ୍‌ସିତ ସ୍ୱାଧୀନତା ଲାଭକଲା । ମହତାବ ଓଡ଼ିଶା ବିଧାନ ସଭାରେ ଏକ ପ୍ରସ୍ତାବ ଉପସ୍ଥାପିତ କରିଥିଲେ । ସେହି ପ୍ରସ୍ତାବରେ କୁହାଯାଇଛି; "The Assembly expresses its heart felt joy at the advent of independence and ushering in of the provincial Autonomy on the 15th of August 1947 and records its deep gratitude to the great national leaders Mahatma Gandhi and Pandit Gopabandhu Das, who was the father of nationalism in Orissa, and to all those workers who have perished in the struggle for freedom in the course of the last quarter of the century." "ସ୍ୱାଧୀନତା ପ୍ରାପ୍ତି ଯୋଗୁଁ ଏହି ବିଧାନ ସଭା ଅତ୍ୟନ୍ତ ଆବେଗିକ ଆନନ୍ଦ ଲାଭ କରୁଛି । 1947 ଅଗଷ୍ଟ 15 ତାରିଖଠାରୁ ପ୍ରାଦେଶିକ ସ୍ୱତନ୍ତ୍ରତା ଆଡ଼କୁ ପ୍ରବେଶ କଲା । ଏହି ଅବସରରେ ଏହି ଗୃହ ଜାତୀୟନେତା ମହାତ୍ମାଗାନ୍ଧୀ ଓ ଓଡ଼ିଶା ଜାତୀୟତାବାଦର ପିତା ପଣ୍ଡିତ ଗୋପବନ୍ଧୁଦାସଙ୍କ ପ୍ରତି ଗଭୀର କୃତଜ୍ଞତା ଜ୍ଞାପନ କରୁଛି ଏବଂ ଅନ୍ୟ ସମସ୍ତ କର୍ମୀମାନଙ୍କ ପ୍ରତି ମଧ୍ୟ କୃତଜ୍ଞତା ଜଣାଉଛି ଯେଉଁମାନେ ଗତ ଶତାବ୍ଦୀର ଏହି ସ୍ୱାଧୀନତା ସଂଗ୍ରାମରେ ନିଜକୁ ବଳି ଦେଇ ଯାଇଛନ୍ତି ।"

ଝଡ଼ଝଞ୍ଜା ମଧ୍ୟ ଦେଇ ଗତି କରି ଚାଲିଥିବା ଜୀବନର ପରିସମାପ୍ତି ଘଟିଲା । ଛାତ୍ର

---

*ଓଡ଼ିଶାର ଇତିହାସ, ପ୍ରଥମ ଭାଗ, ମୁଖବନ୍ଧ

ଜୀବନରେ ଯେଉଁ ସ୍ୱପ୍ନ ମହତାବ ଦେଖିଥିଲେ, "ସାଧାରଣ ଜୀବନର ବାହାରେ କିଛି କରିବାକୁ ହେବ"ତା'ର ଗୋଟିଏ ଅଧ୍ୟାୟର ପରିସମାପ୍ତି ଘଟିଲା । ସେ ବର୍ତ୍ତମାନ ହେଲେ ସ୍ୱାଧୀନ ଭାରତର ଶାସକ । ଶାସନ କରିବାର ଅନଭିଜ୍ଞତା ସତ୍ତ୍ୱେ ଦେଶ ମାତୃକାର ସେବା କରିବା ପାଇଁ ମହତାବଙ୍କର ନିଷ୍ଠା, ଦାୟିତ୍ୱବୋଧ, ପରିପକ୍ୱ ବିଚାର ତାଙ୍କୁ ନବଉତ୍କଳର ଜନ୍ମଦାତାର ଗୌରବରେ ଭୂଷିତ କଲା ।

# 3

# ରାଜନୈତିକ ନେତୃତ୍ୱ -
# ନୂତନ ଓଡ଼ିଶା ଗଠନରେ ବ୍ରତୀ

1946 ଠାରୁ 1950 ମସିହା ପର୍ଯ୍ୟନ୍ତ ମହତାବ ପ୍ରଥମେ ପ୍ରଧାନମନ୍ତ୍ରୀ ଓ ସ୍ୱାଧୀନତା ପରେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରି ଓଡ଼ିଶାକୁ ଏକ ନୂତନ ଭାବରେ ଗଠନ କରିବାରେ ସହାୟକ ହୋଇଥିଲେ । ହୀରାକୁଦ ବନ୍ଧ ନିର୍ମାଣ, ଗଡ଼ଜାତ ମିଶ୍ରଣ ଓ ଭୁବନେଶ୍ୱରଠାରେ ରାଜ୍ୟର ରାଜଧାନୀ ସ୍ଥାପନ କରିବା, ଏହା ତାଙ୍କର ସଫଳତା । ଏହି କାର୍ଯ୍ୟଗୁଡ଼ିକ ବିବଦମାନ ଥିଲେ ହେଁ ସେ ନିଜେ ଏହି ସଫଳତାରେ ଆତ୍ମସନ୍ତୋଷ ଲାଭ କରିଥିଲେ ।

(କ) ହୀରାକୁଦ ବନ୍ଧ ନିର୍ମାଣ : 1943 ମସିହାରେ ବଙ୍ଗ ପ୍ରଦେଶରେ ଭୟାବହ ମରୁଡ଼ି ହେବା ଫଳରେ, ଭାରତ ସରକାର ଦାମୋଦର ନଦୀ ଉପରେ ଏକ ବହୁମୁଖୀ ବନ୍ଧ ଯୋଜନାର ପରିକଳ୍ପନା କଲେ । ଏହା ଖବର କାଗଜରେ ବିସ୍ତୃତ ଭାବେ ପ୍ରକାଶ ପାଇଲା । ମହତାବ ସେତେବେଳେ ଅହମ୍ମଦନଗର ଜେଲରେ ବନ୍ଦୀ ଥିଲେ । ସେ ମହାନଦୀ ଉପରେ ସେହିପରି ଏକ ବନ୍ଧ ନିର୍ମାଣ ପାଇଁ ଚାହୁଁଥିଲେ କାରଣ ତାହା ଫଳରେ ଉପକୂଳବର୍ତ୍ତୀ ଅଞ୍ଚଳକୁ ବନ୍ୟାରୁ ରକ୍ଷା କରାଯାଇ ପାରିବ । ମରୁଡ଼ି ପ୍ରପୀଡିତ ସମ୍ବଲପୁରକୁ ଜଳସେଚନ ବ୍ୟବସ୍ଥା ହେବ, ବିଦ୍ୟୁତ୍ ଉତ୍ପାଦନ କରାଯିବ । ଓଡ଼ିଶାର ବିକାଶରେ ଏହା ହେବ ମାଇଲଖୁଣ୍ଟ । ଜେଲ ଭିତରେ ଥାଇ ସେ ଠକ୍କର ବାପାଙ୍କୁ ତାଙ୍କ ସାନଭାଇଙ୍କ ମାଧ୍ୟମରେ ଗୋଟିଏ ପତ୍ର ଲେଖିଲେ । 1945ରେ ଜେଲରୁ ପ୍ରତ୍ୟାବର୍ତ୍ତନ କରିବା ପରେ, ସେ ତତ୍କାଳୀନ ରାଜ୍ୟପାଳ ସାର ହାଥର୍ନ ଲୁଇସ ଓ ତାଙ୍କର ଉପଦେଷ୍ଟା ବି. କେ. ଗୋଖଲେଙ୍କ ସହିତ ଆଲୋଚନା ଓ ବିଚାର ବିମର୍ଷ କଲେ । 1946ରେ ସେ ରାଜ୍ୟର ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ ଏବଂ ଶ୍ରୀ ଚନ୍ଦୁଲାଲ ତ୍ରିବେଦୀ ହେଲେ ରାଜ୍ୟପାଳ । ହିରାକୁଦ ବନ୍ଧ ନର୍ମାଣକୁ ବିରୋଧ କରି ସମ୍ବଲପୁରଠାରେ ବିରାଟ ଜନ ଆନ୍ଦୋଳନ ଗଢ଼ି ଉଠିଲା । ଏହି ବନ୍ଧ ନିର୍ମାଣ ହେଲେ ସେ ଅଞ୍ଚଳର ବହୁ ଉର୍ବର ଜମି ଏବଂ ଗାଁଗୁଡ଼ିକ ପାଣି ଭିତରେ ମିଶିଯିବ, ଏହା ଥିଲା ସେମାନଙ୍କର ଭୟ ଓ ସନ୍ଦେହ । କେନ୍ଦ୍ର ସରକାର ଏ ବନ୍ଧ ନିର୍ମାଣ ସୁଚାରୁ ଭାବେ ହୋଇ ପାରିବ କି ନାହିଁ ଏ ନେଇ ସନ୍ଦେହ ପ୍ରକାଶ କରି ଥିଲେ ହେଁ ମହତାବଙ୍କର ଅସୀମ ଧୈର୍ଯ୍ୟ, ବୁଦ୍ଧିମତ୍ତା ଓ କୁଶଳତା ତାଙ୍କୁ ଏଥିରେ ସଫଳତା ପ୍ରଦାନ କରିଥିଲା । ଆନ୍ଦୋଳନ ପ୍ରଶମିତ ହୋଇଥିଲା

ଏବଂ ଏପ୍ରିଲ 13, 1948 ମସିହାରେ ଭାରତର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଏହାର ଭିତ୍ତି ପ୍ରସ୍ତର ସ୍ଥାପନା କରିଥିଲେ ।

ହିରାକୁଦ ବନ୍ଧ ଯୋଜନା ଓଡ଼ିଶାର ଆର୍ଥିକ ବିକାଶର ପ୍ରଥମ ମାଇଲ ଖୁଣ୍ଟ କହିଲେ ଭୁଲ ହେବ ନାହିଁ ।

**(ଖ) ଗଡ଼ଜାତ ମିଶ୍ରଣ :** ଭାରତର ଏକତା, ସଂହତି ଓ ସାର୍ବଭୌମତ୍ୱ ପାଇଁ ଦେଶୀୟ ରାଜ୍ୟମାନଙ୍କର ସ୍ୱାଧୀନ ଭାରତ ସହିତ ମିଶ୍ରଣର ଅପରିହାର୍ଯ୍ୟ ଆବଶ୍ୟକତା ସଂପର୍କରେ ମହତାବ ଥିଲେ ସଚେତନ । ସ୍ୱାଧୀନତା ଆନ୍ଦୋଳନ ସମୟରେ କନିକା, ରଣପୁର, ନୀଳଗିରି ଇତ୍ୟାଦିରେ ହୋଇଥିବା ପ୍ରଜା ଆନ୍ଦୋଳନରୁ ତାଙ୍କର ସ୍ପଷ୍ଟ ଧାରଣା ହୋଇଥିଲା ଯେ ଗଡ଼ଜାତଗୁଡ଼ିକର ମିଶ୍ରଣ ଦ୍ୱାରା ହିଁ ସମଗ୍ର ଦେଶର ଲୋକମାନେ ଏକ ଐକ୍ୟବଦ୍ଧ ଶାସନ ଓ ସ୍ୱାଧୀନତା ପାଇବେ । ଓଡ଼ିଶା ସହିତ 26 ଗୋଟି ଗଡ଼ଜାତ ରାଜ୍ୟର ମିଶ୍ରଣ ଫଳରେ ସମଗ୍ର ଭାରତରେ 600 ଦେଶୀୟ ରାଜ୍ୟର ମିଶ୍ରଣ ସମ୍ଭବ ହୋଇ ପାରିଲା । ପ୍ରଜାମଣ୍ଡଳ ଆନ୍ଦୋଳନ ସମୟରେ ମହତାବଙ୍କୁ ଓଡ଼ିଶା ଷ୍ଟେଟସ୍ ପିପୁଲ ଇନକ୍ୱାରୀ କମିଟୀର ଚେୟାରମ୍ୟାନ ଭାବେ କାର୍ଯ୍ୟ କରିବାକୁ ହୋଇଥିଲା । ତେଣୁ ସେ ପ୍ରଧାନମନ୍ତ୍ରୀ ଦାୟିତ୍ୱ ନେବା ସଙ୍ଗେ ସଙ୍ଗେ ଗଡ଼ଜାତ ମିଶ୍ରଣ ସଂପର୍କରେ ଭାରତ ସରକାର ଓ ସାର ଷ୍ଟାଫର୍ଡ କ୍ରିପସଙ୍କ ସହିତ ଆଲୋଚନା ଆରମ୍ଭ କଲେ । ଏହି ଦେଶୀୟ ରାଜ୍ୟଗୁଡ଼ିକର ପଡ଼ୋଶୀ ପ୍ରଦେଶ ସହିତ ମିଶିବା ସମ୍ଭବ ନୁହେଁ ବୋଲି ପଣ୍ଡିତ ନେହେରୁ ଭାବୁଥିଲେ । ମହତାବଙ୍କର ବିଜ୍ଞତା, ଦୂରଦର୍ଶିତା ଓ କାର୍ଯ୍ୟଦକ୍ଷତା ଫଳରେ ସରଦାର ବଲ୍ଲଭ ଭାଇ ପଟେଲ ତାଙ୍କ ପ୍ରସ୍ତାବକୁ ଗ୍ରହଣ କରି, ଏହାକୁ ସଫଳ ରୂପ ଦେଲେ ।

ଏ ସଂପର୍କରେ ପଟେଲ ଲେଖିଥିଲେ, "ଦଶବର୍ଷ ପୂର୍ବରୁ ମହତାବ ଓଡ଼ିଶାର ଭବିଷ୍ୟତ ସଂପର୍କରେ ଏକ ରୂପରେଖ ପ୍ରସ୍ତୁତ କରିଥିଲେ ଯାହା ତାଙ୍କ ଜୀବଦଶା ମଧ୍ୟରେ କରିବାକୁ ସକ୍ଷମ ହେଲେ । ସେ ସେହି ନାଟକର ଚ଼ଳମାନ ଆତ୍ମା, ତାଙ୍କର ଉତ୍ସାହ ଏବଂ ସମସ୍ତ ବାଧା ବନ୍ଧନକୁ ଅତିକ୍ରମ କରିବା ପାଇଁ ତାଙ୍କର ଅନବରତ ପ୍ରଚେଷ୍ଟା ହେତୁ ପରିଶେଷରେ ସଫଳତା ମିଳିଲା । ମୁଁ ଖୁସି ଯେ ତାଙ୍କୁ ସେଥିରେ ସାହାଯ୍ୟ କରିଥିଲି, ଯାହା କେବଳ ତାଙ୍କର ଲକ୍ଷ୍ୟ ନଥିଲା ବରଂ ସମଗ୍ର ଓଡ଼ିଆମାନଙ୍କର ସ୍ୱପ୍ନ ଓ ଲକ୍ଷ୍ୟ ହୋଇଥିଲା । ମୁଁ ପୁନଶ୍ଚ ଅଧିକ ଖୁସି ଯେ ଏହି ପଛୁଆ ପ୍ରଦେଶଟି ଏ କାର୍ଯ୍ୟରେ ପଥ ପ୍ରଦର୍ଶକ ହୋଇଥିଲା ଯାହାକୁ ସମଗ୍ର ଭାରତ ଅନୁକରଣ କରିଥିଲା ।"

ଆଜିର ଓଡ଼ିଶା ଭୂଖଣ୍ଡର ପ୍ରାୟ ଏକଲକ୍ଷ ଛପନହଜାର ବର୍ଗ କିଲୋମିଟର ଆୟତନରୁ ପ୍ରାୟ ଅଧେ ହେଉଛି ଗଡ଼ଜାତ ରାଜ୍ୟ । 1947 ଅଗଷ୍ଟ 15 ତାରିଖରେ ଦେଶ ସ୍ୱାଧୀନ ହେବା ମାତ୍ରେ ଦେଶୀୟ ରାଜ୍ୟମାନେ ନିଜକୁ ସ୍ୱାଧୀନ ଓ ସାର୍ବଭୌମ ମନେକଲେ । ଦେଶୀୟ ହେବେ କି ନାହିଁ ଏବଂ ସେମାନଙ୍କ ସହମତ ସଂପର୍କ କିପରି ରହିବ, ସେଥିପାଇଁ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ପରିଚାଳନାରେ ଗୋଟିଏ ବିଭାଗ ଖୋଲାଯାଇଥିଲା । ଯାହାର ସଂପାଦକ ହୋଇଥାନ୍ତି ଶ୍ରୀ ଭି.ପି. ମେନନ୍ ।

ମହତାବ ଦେଶୀୟ ରାଜ୍ୟମାନଙ୍କୁ ଯଦି ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ କରାନଯାଏ, ତେବେ କିପରି ଶାସନଗତ ଓ ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହେବ, ତାହା ବର୍ଣ୍ଣନା କରି

ଗୋଟିଏ ଚିଠି ପଟେଲଙ୍କୁ ଲେଖିଲେ । ଠିକ୍ ଏହି ସମୟରେ ଘଟିଲା ନୀଳଗିରିର ଆନ୍ଦୋଳନ । ପ୍ରଜାମଣ୍ଡଳ ନୀଳଗିରିଠାରେ ଆନ୍ଦୋଳନ କରି ଶାସନକ୍ଷମତା ନିଜ ହାତକୁ ନେବାକୁ ଚେଷ୍ଟା କଲେ । ଫଳରେ ନୀଳଗିରିରେ ବ୍ୟାପକ ହିଂସାକାଣ୍ଡ ହୋଇ ଅରାଜକତା ବ୍ୟାପିବାକୁ ଲାଗିଲା । ତାହାର ପ୍ରଭାବ ଅନୁଭୂତ ହେଲା ବାଲେଶ୍ୱରରେ । ମହତାବ କେନ୍ଦ୍ର ସରକାରକୁ ଚିଠି ଲେଖି ମିଲିଟାରୀ କାର୍ଯ୍ୟାନୁଷ୍ଠାନ ପାଇଁ ଅନୁରୋଧ କଲେ । 1947 ନଭେମ୍ବର 8 ତାରିଖ ଦିନ କେନ୍ଦ୍ର ସରକାର ଓଡ଼ିଶା ରାଜ୍ୟ ସରକାରଙ୍କୁ ନୀଳଗିରି ଉପରେ ହସ୍ତକ୍ଷେପ କରିବାକୁ ଅନୁମତି ଦେଲେ ଏବଂ ସତର୍କ ମଧ୍ୟ କରିଦେଲେ ଯେ ଯଦି ରାଜ୍ୟ ସରକାର ବିଫଳ ହୁଅନ୍ତି ସେଥିପାଇଁ ରାଜ୍ୟ ସରକାର ଓ ମହତାବ ଦାୟୀ ହେବେ ।

1947 ନଭେମ୍ବର 14 ତାରିଖ ଦିନ ଓଡ଼ିଶା ମିଲିଟାରୀ ଫୋର୍ସ ନୀଳଗିରି ଶାସନ ବ୍ୟବସ୍ଥାକୁ ନିଜ ହାତକୁ ନେଲେ । ଏହି ପଦକ୍ଷେପକୁ ନୀଳଗିରିର ଲୋକମାନେ ସ୍ୱାଗତ କଲେ । ରାଜା ମଧ୍ୟ କୌଣସି ପ୍ରତିରୋଧ ନକରି ରାଜ୍ୟକୁ କ୍ଷମତା ହସ୍ତାନ୍ତର କଲେ । ନୀଳଗିରି ଦଖଲ କରିପାରିଥିବାରୁ ମହତାବ ଗଡ଼ଜାତ ମିଶ୍ରଣକୁ ତ୍ୱରାନ୍ୱିତ କରିବାକୁ ପଟେଲଙ୍କ ସହିତ ଆଲୋଚନା କଲେ ।

1947 ମସିହା ଡିସେମ୍ବର 13 ତାରିଖ ଦିନ ସର୍ଦ୍ଦାର ପଟେଲ ଓ ଶ୍ରୀ ମେନନ୍ ଆସି କଟକରେ ପହଞ୍ଚିଲେ ଏବଂ ମିଶ୍ରଣ ସଂପର୍କରେ ରାଜା ମହାରାଜାଙ୍କ ସହିତ ଆଲୋଚନା କଲେ । ପ୍ରଥମେ ଏହି ଚୁକ୍ତି ସ୍ୱାକ୍ଷରିତ ସଂପର୍କରେ ସେମାନେ ଅମଙ୍ଗ ହେଲେ । ସର୍ଦ୍ଦାର ପଟେଲ ସେମାନଙ୍କୁ ଚେତାବନୀ ଦେଲେ ଯେ ଯଦି ସେମାନେ ମିଶ୍ରଣ ପ୍ରସ୍ତାବରେ ଅମଙ୍ଗ ହୁଅନ୍ତି ତେବେ ଭବିଷ୍ୟତରେ ଯେଉଁ ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହେବ, ସେଥିପାଇଁ ରାଜ୍ୟ ସରକାର ବା କେନ୍ଦ୍ର ସରକାର ଦାୟୀ ହେବେ ନାହିଁ । ପ୍ରଜାମଣ୍ଡଳର ନେତାମାନେ ଜୋର ଜବରଦସ୍ତ ରାଜ୍ୟ ସହିତ ମଶ୍ରଣ ସପକ୍ଷରେ ମଧ୍ୟ ଥିଲେ । ନୀଳଗିରିରେ ଘଟିଥିବା ଘଟଣା ବିଷୟରେ ରାଜା ମହାରାଜାମାନେ ଅବଗତ ଥିଲେ । ତେଣୁ 1948 ମସିହା ଜାନୁଆରୀ ପହିଲା ଦିନ ମୟୁରଭଞ୍ଜ ରାଜ୍ୟକୁ ଛାଡ଼ିଦେଇ ପଚିଶଟି ଗଡ଼ଜାତ ରାଜ୍ୟ ଓଡ଼ିଶା ସହିତ ମିଶ୍ରଣ ଚୁକ୍ତି ପତ୍ରରେ ସ୍ୱାକ୍ଷର କଲେ । ମୟୁରଭଞ୍ଜ ମହାରାଜା 1948 ଅକ୍ଟୋବର 16 ତାରିଖରେ ନିଜର ସମ୍ମତି ପ୍ରଦାନ କଲେ ଏବଂ 1949 ଜାନୁଆରୀ 1 ତାରିଖ ଦିନ ଓଡ଼ିଶା ସହିତ ଏହାର ସମ୍ପୂର୍ଣ୍ଣ ମିଶ୍ରଣ ଘଟିଲା ।

ଐତିହାସିକ ଦୁର୍ଗା ଦାସ ତାଙ୍କ ପୁସ୍ତକ 'ଇଣ୍ଡିଆ ଫ୍ରମ୍ କର୍ଜନ ଟୁ ନେହେରୁ ଆଣ୍ଡ ଆଫଟର" ପୁସ୍ତକରେ ମହତାବଙ୍କ ଭୂମିକାକୁ ପ୍ରଶଂସା କରି ଲେଖିଥିଲେ," Narrating the story of first merger, Patel told me that the idea had originated with Harekrushna Mahatab, who formed in 1938 the state prajamandal, an organisation of the people living in the states of Orissa. This Orissa congress leader proposed that the small states be merged with the provinces under British administration and states' people's conference appointed a committee with Mahtab as its chairman to study the proposal in relation to Orissa. The committe recommended that the states be brought under the

provincial government as reforms in them, while they maintained their separateness would have no value. Mahatab took up this matter with the cripps when he came to India in 1942. The political department agreed that this was the only feasible solution of the problem, but did nothing about it. When India became independent, the British departed leaving the states as they were. Mahatab convinced Gandhi and Patel of the soundness of his schemes and he suggested to Patel in November 1947 that he should start the process in motion in Orissa."

ସୁରେନ୍ଦ୍ରନାଥ ଦ୍ୱିବେଦୀ ତାଙ୍କର ଆତ୍ମଜୀବନୀ ପୁସ୍ତକରେ ଲେଖିଛନ୍ତି,"ହରେକୃଷ୍ଣ ମହତାବ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେବାରୁ (ସେ କାଳର ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା) ସେ ସରକାରୀ ସ୍ତରରେ ଗଡ଼ଜାତଗୁଡ଼ିକର ମିଶ୍ରଣ ପ୍ରସ୍ତାବ ତ୍ୱରାନ୍ୱିତ କରିବାକୁ ଲାଗିଲେ ଏବଂ କ୍ୟାବିନେଟ ମିଶନଠାରୁ ଆରମ୍ଭ କରି ପଲିଟିକାଲ ଡିପାର୍ଟମେଣ୍ଟ ଆଦିକୁ ନାନାଭାବରେ ପ୍ରଭାବିତ କରି ମିଶ୍ରଣ ସପକ୍ଷରେ ପ୍ରବଳ ଯୁକ୍ତି ବାଢ଼ିଲେ ।

26 ଟି ଦେଶୀୟ ରାଜ୍ୟର ମିଶ୍ରଣ ହୋଇଥିଲେ ହେଁ ଷଢ଼େଇକଳା ଓ ଖରସୁଆଁ ବିହାରକୁ ଚାଲିଯିବ । ମହତାବଙ୍କ ନେତୃତ୍ୱ ପ୍ରତି ଥିଲା ଏକ ଶକ୍ତ ଧକ୍କା ।

**(ଗ) ଷଢ଼େଇକଳା ଓ ଖରସୁଆଁ :** 1948 ଜାନୁଆରୀ 1 ତାରିଖରେ ଯେଉଁ ପଚିଶଟି ଗଡ଼ଜାତ ରାଜ୍ୟର ଶାସନଭାର ଓଡ଼ିଶା ସରକାର ଗ୍ରହଣ କଲେ । ସେଥି ମଧ୍ୟରେ ଷଢ଼େଇକଳା ଓ ଖରସୁଆଁ ଅନ୍ତର୍ଭୁକ୍ତ ଥିଲା । ଷଢ଼େଇକଳା ରାଜ୍ୟ ଓଡ଼ିଶା ସହିତ ଷଢ଼େଇକଳାର ମିଶ୍ରଣକୁ ପ୍ରଥମରୁ ବିରୋଧ କରିଥିଲେ । ବିହାର ସରକାରଙ୍କ ସହାୟତାରେ ଷଢ଼େଇକଳାର ରାଜା ଓ କେତେକ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀ ଏହି ମିଶ୍ରଣ ବିରୋଧରେ କେନ୍ଦ୍ର ସରକାରଙ୍କୁ ଚିଠି ଲେଖିଥିଲେ । ସେତେବେଳକୁ ମୟୂରଭଞ୍ଜ ଓଡ଼ିଶା ସହିତ ମିଶି ନଥାଏ । ଫଳରେ ଷଢ଼େଇକଳାକୁ ଯିବାରେ ଅସୁବିଧା ରହିଥିଲା ।

1948 ଫେବୃୟାରୀ ମାସରେ ଷଢ଼େଇକଳା ଓ ଖରସୁଆଁର ଭବିଷ୍ୟତ ନିର୍ଣ୍ଣୟ କରିବା ପାଇଁ ଭାରତ ସରକାର ତତ୍‌କାଳୀନ ବମ୍ବେ ହାଇକୋର୍ଟର ବିଚାରପତି ଶ୍ରୀ ବାଉଦେକରଙ୍କୁ ନିଯୁକ୍ତ କଲେ । କିନ୍ତୁ ଶ୍ରୀ ବାଉଦେକର ଆସି ଅନୁସନ୍ଧାନ କରି ରିପୋର୍ଟ ଦେବା ପୂର୍ବରୁ କେନ୍ଦ୍ର ସରକାର ଏହି ଦୁଇଟିରାଜ୍ୟ ବିହାର ସହିତ ମିଶିବ ବୋଲି ସିଦ୍ଧାନ୍ତ ନେଲେ । 1948 ମେ' ମାସରେ ଏହି ଦୁଇଟିରାଜ୍ୟ ବିହାର ସହିତ ମିଶିଯିବାର ଘୋଷଣା ପ୍ରକାଶ ପାଇଲା । ଏହା ବିରୋଧରେ ଓଡ଼ିଶାର ପ୍ରତିକ୍ରିୟା ତୀବ୍ର ଓ ବ୍ୟାପକ ହୋଇଥିଲା । ଦିଲ୍ଲୀ ବିହାର ଲବିର ଚାପ ହେତୁ ଷଢେଇକଳା ଓ ଖରସୁଆଁ ଓଡ଼ିଶା ସହିତ ମିଶି ପାରିଲା ନାହିଁ ଏବଂ ଏଥିପାଇଁ ମହତାବଙ୍କୁ କେହି କେହି ଦାୟୀ କରିଥାନ୍ତି । କିନ୍ତୁ ବାସ୍ତବରେ ବୋଧହୁଏ ଘଟଣାଚକ୍ର ଓ ପରିସ୍ଥିତି ସେଥିପାଇଁ ଦାୟୀ । ଦେଶୀୟ ରାଜାମାନଙ୍କର ପ୍ରତିକ୍ରିୟାଶୀଳ ଭୂମିକା ଓ କ୍ଷମତାନିଶା ମଧ୍ୟ ଅନ୍ୟ ଏକ କାରଣ ହୋଇପାରେ ।

ଏହା ସତ୍ତ୍ୱେ ଦକ୍ଷତାର ସହିତ ଦେଶୀୟ ରାଜ୍ୟମାନଙ୍କର ମିଶ୍ରଣ କରାଇ ମହତାବ ହେଲେ ଆଧୁନିକ ଓଡ଼ିଶାର ଜନ୍ମଦାତା ।

**(ଘ) ଭୁବନେଶ୍ୱରଠାରେ ନୂତନ ରାଜଧାନୀ ନିର୍ମାଣ :** ରାଜ୍ୟର ପ୍ରଧାନମନ୍ତ୍ରୀ ହେବା ପୂର୍ବରୁ ବିଭିନ୍ନ କାରଣରୁ ଭୁବନେଶ୍ୱରକୁ ରାଜଧାନୀ ଭାବେ ମହତାବ ନିର୍ଣ୍ଣୟ କରିଥିଲେ । ଦକ୍ଷିଣ ଓଡ଼ିଶାର ଲୋକମାନେ ରମ୍ଭେଇଲୁଣ୍ଠାକୁ ରାଜଧାନୀ କରିବାର ଇଚ୍ଛା ପ୍ରକାଶ କରୁଥିବା ବେଳେ ଉତ୍ତର ଓଡ଼ିଶାବାସୀ କଟକଠାରେ ଏହା ରହୁ ବୋଲି ଚାହୁଁଥାନ୍ତି । ଭୁବନେଶ୍ୱର ଏକ ଐତିହାସିକ ସ୍ଥାନ କାରଣ ଏଠାରେ ଅଶୋକଙ୍କ ସମୟରୁ ବ୍ରିଟିଶ ଶାସନ ପର୍ଯ୍ୟନ୍ତ ଇତିହାସ ଦେଖିବାକୁ ମିଳେ । 1946 ଜୁନ୍ 30 ତାରିଖ ଦିନ ମହତାବ ଏହି ପ୍ରସ୍ତାବକୁ ବିଧାନସଭାରେ ଉପସ୍ଥାପିତ କଲେ । ବହୁ ତର୍କ ବିତର୍କ ଓ ଆଲୋଚନା ପରେ ସେପ୍‌ଟେମ୍ବର 30 ତାରିଖରେ ଏହି ପ୍ରସ୍ତାବ ଗ୍ରହଣୀୟ ହେଲା । କେନ୍ଦ୍ର ସରକାର ନୂତନ ରାଜଧାନୀ ନିର୍ମାଣ ପାଇଁ ସମସ୍ତ ବ୍ୟୟ ବହନ କରିବାର ପ୍ରତିଶ୍ରୁତି ଦେଲେ । 1948 ଏପ୍ରିଲ 13 ତାରିଖ ଦିନ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ଏହାର ଶୁଭଦାନ କଲେ । ବର୍ତ୍ତମାନର ଭୁବନେଶ୍ୱରକୁ ଲକ୍ଷ୍ୟ କଲେ, ମହତାବଙ୍କର ଦୂରଦୃଷ୍ଟିର ପରିଚୟ ମିଳେ ।

ଡକ୍ଟର ମହତାବ ରାଜଧାନୀ ନିର୍ମାଣର ପୃଷ୍ଠଭୂମି ସଂପର୍କରେ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି, "ଭୁବନେଶ୍ୱରରେ ରାଜଧାନୀ ସ୍ଥାପିତ ହେବାର ପ୍ରସ୍ତାବ 1946 ସେପ୍‌ଟେମ୍ବର 30 ତାରିଖ ଓଡ଼ିଶା ବ୍ୟବସ୍ଥା ସଭାରେ ଗୃହୀତ ହୋଇଥିଲା । ଏ ରାଜଧାନୀ ସ୍ଥାନ ନିରୂପଣ ମଧ୍ୟ ନିର୍ବିବାଦୀୟ ନଥିଲା । 1936 ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ଦିନୁ ରାଜଧାନୀ ସମ୍ବନ୍ଧରେ ବାଦାନୁବାଦ ଚାଲିଆସିଥିଲା । କେତେକଙ୍କ ମତରେ ଚୌଦୁଆର ଆଡ଼କୁ କଟକ ବଢ଼ି ରାଜଧାନୀ ହେଉ । କେତେକ କହୁଥିଲେ ବ୍ରହ୍ମପୁର ନିକଟସ୍ଥ ରମ୍ଭେଇଲୁଣ୍ଠାରେ ରାଜଧାନୀ ହେଉ । ଅବଶ୍ୟ କଟକର ରାଜଧାନୀ ଚାଲୁ ବୋଲି ଦୃଢ଼ମତ ଥିଲା । ଯୁଦ୍ଧ ବେଳେ ଏରୋଡ୍ରମ ସ୍ଥାପନ ପାଇଁ ଯେତେବେଳେ ସ୍ଥାନ ନିର୍ଣ୍ଣୟ କରାଗଲା, ସେତେବେଳେ ଆମେରିକାର ସୈନ୍ୟବାହିନୀ ଭୁବନେଶ୍ୱରର ଏକ ଜଙ୍ଗଲ ଭିତରେ ଏକ ବିଶାଳ ପ୍ରାନ୍ତରର ସନ୍ଧାନ ପାଇଲେ । ଜଙ୍ଗଲ ସଫାକରି ସେମାନେ ଏରୋଡ୍ରମ ତିଆରି କଲେ । ତା'ପରେ ଭୁବନେଶ୍ୱରରେ ରାଜଧାନୀ ସ୍ଥାପନର ଚିନ୍ତା ଚାଲିଲା । ସାର ହାଥୋର୍ଣ୍ଣ ଲୁଇ ଓ ଶ୍ରୀ ଗୋଖଲେଙ୍କ ସଙ୍ଗରେ ଏ ବିଷୟରେ ଆଲୋଚନା ହୋଇଥିଲା । 1946 ମସିହାରେ ମନ୍ତ୍ରୀମଣ୍ଡଳ ଗଠନ ପୂର୍ବରୁ ଭୁବନେଶ୍ୱରରେ ରାଜଧାନୀ ହେବ ବୋଲି ମନରେ ସ୍ଥିର କରି ସାରିଥିଲେ । ଭୁବନେଶ୍ୱର ଭାରତ ବର୍ଷର ଏକମାତ୍ର ସ୍ଥାନ, ଯେଉଁଠି ଅଶୋକଙ୍କ ସମୟରୁ ଅଢ଼େଇହଜାର ବର୍ଷର କ୍ରମାନ୍ୱୟ ଇତିହାସର ଜୀବନ୍ତ ପ୍ରମାଣ ରହିଛି । ତାହା ଥିଲା ଭୁବନେଶ୍ୱର ପ୍ରତି ମୋର ଆକର୍ଷଣର ବିଶେଷ କାରଣ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ବେଳେ ତତ୍କାଳୀନ ଭାରତ ସରକାର ରାଜଧାନୀ ନିର୍ମାଣ ପାଇଁ ମାତ୍ର 30 ଲକ୍ଷ ଟଙ୍କା ମଞ୍ଜୁର କରିବେ ବୋଲି ନିଷ୍ପତ୍ତି କରିଥିଲେ । କିନ୍ତୁ ଅନ୍ତତଃ ଦୁଇକୋଟି ନ ହେଲେ ରାଜଧାନୀ ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇ ପାରିବ ନାହିଁ । ଏ ସଂପର୍କରେ ମୁଁ ଲିଆକତ ଅଲ୍ଲୀଙ୍କୁ ସାକ୍ଷାତ କଲି । ରାଜଧାନୀ

ନିର୍ମାଣ ସଂପର୍କରେ ସେ ମୁଦ୍ରାଷ୍ଫୀତି ବିଷୟ କହିଲେ । ଯୁକ୍ତି କଲି ଯେ ଭୁବନେଶ୍ୱରରେ ଘର ତିଆରି ହେବ ପଥରରେ ଓ କଡ଼ି ଲାଗିବ ନିକଟବର୍ତ୍ତୀ ଜଙ୍ଗଲରୁ ମିଳୁଥିବା କାଠରେ । ତେଣୁ କୋଇଲା ଇତ୍ୟାଦି କିଣିବାକୁ ଯାଇ ଭୁବନେଶ୍ୱରରେ ସବୁ ଜିନିଷର ଦର ବଢ଼ାଇବ ନାହିଁ । ଏ ଯୁକ୍ତି ସେ ବୁଝିଲେ । ତା'ପରେ ରାଜଧାନୀ ନିର୍ମାଣ ପାଇଁ ଟଙ୍କା ମଞ୍ଜୁର ହେଲା । ଭାରତରେ ଭୁବନେଶ୍ୱର ହିଁ ଏକମାତ୍ର ନୂଆ ରାଜଧାନୀ ଯାହାର ନିର୍ମାଣ ପାଇଁ ଭାରତ ସରକାରଙ୍କଠାରୁ ଗ୍ରାଣ୍ଟପାଇଛି । ଚଣ୍ଡୀଗଡ଼ ପ୍ରଭୃତି ଋଣ ଆକାରରେ ସାହାଯ୍ୟ ପାଇଛନ୍ତି ।"

ଭୁବନେଶ୍ୱରକୁ ରାଜ୍ୟର ରାଜଧାନୀ ଭାବେ ଗ୍ରହଣ କରାଯାଇଥିଲେ ମଧ୍ୟ ଏହା ମହତାବଙ୍କ ପ୍ରଥମ ମନ୍ତ୍ରୀମଣ୍ଡଳ ସମୟରେ ତ୍ୱରାନ୍ୱିତ ହୋଇ ପାରି ନଥିଲା । ମହତାବଙ୍କ ପରେ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରୀମଣ୍ଡଳ ଏହା ପ୍ରତି ଗୁରୁତ୍ୱ ଆରୋପ କରିନଥିଲେ । ଫଳରେ 1957 ମସିହାରେ ମହତାବ ଯେତେବେଳେ ପୁନର୍ବାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଲେ ସେ ଏହାକୁ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାର ଅନ୍ତର୍ଭୁକ୍ତ କରିବା ଫଳରେ ବିଧାନସଭା ଗୃହ ଓ ରାଜଭବନ କାର୍ଯ୍ୟ ଆରମ୍ଭ ହେଲା । ସେକ୍ରେଟାରିଏଟ ନିର୍ମାଣ କାର୍ଯ୍ୟକୁ ତ୍ୱରାନ୍ୱିତ କରାଗଲା । ମ୍ୟୁଜିୟମ ଭବନ ଓ ତତ୍‌ସହିତ ସଂଲଗ୍ନ ତିନିଗୋଟି ଏକାଡ଼େମୀ- ସାହିତ୍ୟ, ସଂଗୀତ ନାଟକ ଓ ଲଳିତ କଳା ଏକାଡ଼େମୀ ପାଇଁ ଗୃହ ଓ ସାଂସ୍କୃତିକ ସଭା ପାଇଁ 'କଳାମଣ୍ଡପ' ଯାହା ବର୍ତ୍ତମାନ 'ଭଞ୍ଜମଣ୍ଡପ'ରୂପେ ନାମିତ ତାହାର ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା । ମହତାବ ଓଡ଼ିଶାକୁ ସମଗ୍ର ଭାରତ ମଧ୍ୟରେ ଏକ ଉନ୍ନତ ରାଜ୍ୟ ଭାବେ ଗଠନ କରିବା ପାଇଁ ତାଙ୍କର ସମସ୍ତ ଚିନ୍ତା ଓ ଚେତନାକୁ ଖଟାଇଥିଲେ । ହାଇକୋର୍ଟ, ପବ୍ଲିକ ସର୍ଭିସ କମିସନ ଇତ୍ୟାଦିକୁ ପୃଥକ କରି ଆଣିବାଠାରୁ ସାହିତ୍ୟ, ସଂସ୍କୃତି ଓ କଳାର ପ୍ରଚାର ଓ ପ୍ରସାର ପାଇଁ ପ୍ରଜାତନ୍ତ୍ର, ପ୍ରଜାତନ୍ତ୍ର ପ୍ରଚାର ସମିତି ଓ ବିଷୁବ ମିଳନ ତାଙ୍କର ଅନବଦ୍ୟ ଅବଦାନ । ଏକ ପକ୍ଷରେ ଶାସନଗତ ଦକ୍ଷତା ମାଧ୍ୟମରେ ବିକାଶ ପ୍ରକ୍ରିୟାକୁ ଆରମ୍ଭ କରିବା ଓ ଅନ୍ୟପକ୍ଷରେ ଅଣରାଜନୈତିକ ବ୍ୟବସ୍ଥା ଦେଇ ସାମାଜିକ ଉନ୍ନତି, ଏ ଉଭୟ ମହତାବଙ୍କ ସୂକ୍ଷ୍ମ ବିଚାରର ପରିଚୟ ଦିଏ ।

**(ଙ) ଦେଶସେବାରେ କେନ୍ଦ୍ରମନ୍ତ୍ରୀ ଭାବେ :** ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦ ତ୍ୟାଗ କରି ମହତାବ କେନ୍ଦ୍ର ମନ୍ତ୍ରୀ ଭାବରେ 13 ମେ 1950 ରେ କାର୍ଯ୍ୟଭାର ଗ୍ରହଣ କଲେ । ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଲେ ଶ୍ରୀ ନବକୃଷ୍ଣ ଚୌଧୁରୀ । ସ୍ୱାଧୀନତା ସଂଗ୍ରାମ ସମୟରେ ବିଭିନ୍ନ ନେତୃମଣ୍ଡଳୀଙ୍କ ସହିତ ତାଙ୍କର ବ୍ୟକ୍ତିଗତ ସଂପର୍କ, ସମସ୍ୟାମାନଙ୍କୁ ନିର୍ଣ୍ଣୟ କରି ତାକୁ ନିଷ୍ପିତ ସମାଧାନ ଆଡ଼କୁ ନେବା ପାଇଁ ତାଙ୍କର ପ୍ରଶାସନ ସହିତ ଚିଠିପତ୍ର ଓ ଭାବର ଆଦାନ ପ୍ରଦାନ ଏବଂ ମୁଖ୍ୟମନ୍ତ୍ରୀ ଭାବରେ ନିଷ୍ପତ୍ତି ନେଇ କାର୍ଯ୍ୟକୁ ସୂଚାରୁ ଭାବେ ସମ୍ପାଦନ କରିବା ଦ୍ୱାରା, ସେ କେନ୍ଦ୍ରରେ ମନ୍ତ୍ରୀ ଭାବରେ ଯଥା ଯୋଗ୍ୟ ଭୂମିକା ନିଭାଇ ପାରିବେ ବୋଲି ପଣ୍ଡିତ ନେହେରୁଙ୍କର ହୃଦବୋଧ ହୋଇଥିଲା । ମହତାବ କେନ୍ଦ୍ରରେ ଶିଳ୍ପ ଓ ସପ୍ଲାଇ ବିଭାଗର ମନ୍ତ୍ରୀ ଦାୟିତ୍ୱ ନେବା ପରେ ବିଭାଗ ପରିଚାଳନା ପାଇଁ ନିୟମ ପ୍ରସ୍ତୁତ କରିବାକୁ ଚାହିଁଥିଲେ । ଯାହାକୁ କୁହାଯାଏ 'ରୁଲସ୍ ଅଫ ବିଜିନେସ' । ତାଙ୍କର

ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ଏହା ହୋଇ ନପାରିଥିବାରୁ ସେ ମତ ଦେଇ କହିଛନ୍ତି, "ରୁଲସ୍ ଅଫ ବିଜିନେସ୍ ନହେବାର କାରଣ ହେଉଛି, ସମସ୍ତେ ରାଜନୀତି ଉପରେ ବେଶୀ ଗୁରୁତ୍ୱ ଆରୋପ କରୁଛନ୍ତି; ଶାସନ ପରିଚାଳନା ପ୍ରତି ନୁହେଁ । କିନ୍ତୁ ବାସ୍ତବରେ ରାଜନୀତି ଓ ଶାସନ ପରସ୍ପର ପରସ୍ପର ସହିତ ଗଭୀର ଭାବରେ ସଂଶ୍ଳିଷ୍ଟ ।" ଶାସନ ପରିଚାଳନା ପାଇଁ ନୀତି ନିର୍ଦ୍ଧାରିତ ନଥିବା ଫଳରେ ସେବା ପ୍ରଦାନକାରୀ ଅଫିସରମାନେ ଶାସନ ପ୍ରତି ପ୍ରତିବଦ୍ଧତା ଓ ଆନୁଗତ୍ୟ ପ୍ରକାଶ କରୁ ନାହାଁନ୍ତି, ଏହା ଥିଲା ତାଙ୍କର ମତ ।

ସମସ୍ୟାମାନଙ୍କୁ ଗଭୀର ଭାବେ ଅନୁଧ୍ୟାନ କରିବା ଥିଲା ମହତାବଙ୍କର ବିଶେଷତ୍ୱ । ଶିଳ୍ପମନ୍ତ୍ରୀ ଭାବରେ ସେ ଦେଖିଥିଲେ ଯେ ଭାରତରେ କାର୍ଯ୍ୟ କରୁଥିବା ବହୁ ଜାତିକ ପୁଞ୍ଜିପତିମାନେ ଅଧିକ ଲାଭ ପାଇବାକୁ ବ୍ୟାକୁଳ ଏବଂ ସେମାନେ କୌଣସି ପ୍ରକାର ପ୍ରତିଯୋଗିତା ବା ନିୟନ୍ତ୍ରଣ ମଧ୍ୟ ଚାହାଁନ୍ତି ନାହିଁ । ସେ ମଧ୍ୟ ବିଚାର କରି ଦେଖିଥିଲେ ଯେ ଭାରତରେ କୃଷି-ଅର୍ଥନୀତିକୁ ଶିଳ୍ପ-ଅର୍ଥନୀତିରେ ରୂପାନ୍ତରିତ କରିବାକୁ ହେଲେ କୃଷିକ୍ଷେତ୍ରମାନଙ୍କ ନିକଟରେ ଉଦ୍ୟୋଗ ପ୍ରତିଷ୍ଠା ହେବା ଉଚିତ । କୃଷିଜାତ ଦ୍ରବ୍ୟକୁ ଉଦ୍ୟୋଗରେ ବ୍ୟବହାର କରି କୃଷକମାନେ ଅଧିକ ଉତ୍ପାଦନ କରି ପାରିବେ ଏବଂ ଶିଳ୍ପ ପ୍ରତି ସେମାନଙ୍କ ମନରେ ମଧ୍ୟ ଆଗ୍ରହ ସୃଷ୍ଟି ହେବ ।

କେନ୍ଦ୍ର ସରକାର ମିଶ୍ରିତ ଅର୍ଥନୀତି ବ୍ୟବସ୍ଥା ପାଇଁ ନିଷ୍ପତ୍ତି ଗ୍ରହଣ କଲେ । ଏହି ମିଶ୍ରିତ ଅର୍ଥନୀତି ଫଳରେ ଘରୋଇ ଉଦ୍ୟୋଗମାନଙ୍କ ମାଧ୍ୟମରେ ଦୁର୍ନୀତିର ମଞ୍ଜି ବୁଣାହେଲା ଏବଂ ସାଧାରଣ ଲୋକଙ୍କ ପାଇଁ ଉଦ୍ୟୋଗ ଗଠନ କରିବାର ସୁଯୋଗ ସୃଷ୍ଟି ହେଲା ନାହିଁ । କେନ୍ଦ୍ରମନ୍ତ୍ରୀ ଭାବରେ ସେ ନିଜର ସକ୍ରିୟତା ଓ ଦୂରଦର୍ଶିତାର ବହୁ ପ୍ରମାଣ ଦେଇ ଯାଇଛନ୍ତି । ବିଭିନ୍ନ ବିଷୟ ସଂପର୍କରେ ପ୍ରଧାନ ମନ୍ତ୍ରୀ ନେହେରୁଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ସେ ପଛଘୁଞ୍ଚା ଦେଇ ନାହାଁନ୍ତି । ରାଜା ମହାରାଜାଙ୍କ ହାତପାଣ୍ଠି ଉଚ୍ଛେଦ, ବିଦେଶ ନୀତି ଓ ବିଦେଶୀ ପୁଞ୍ଜିର ବିନିଯୋଗ, ହିନ୍ଦୁକୋର୍ଡ ବିଲ, ପ୍ରଶାସନରେ ଢାଞ୍ଚଗତ ପରିବର୍ତ୍ତନ, ପଞ୍ଚାୟତ ବ୍ୟବସ୍ଥାରେ ଗାନ୍ଧୀଙ୍କର ଗ୍ରାମ୍ୟ ସ୍ୱରାଜ୍ୟ ବିଚାରକୁ ପରିତ୍ୟାଗ କରିବା, କେନ୍ଦ୍ରୀୟ ତଦନ୍ତ ବ୍ୟୁରୋର ଭ୍ରମାତ୍ମକ ଅନୁସନ୍ଧାନ ପଦ୍ଧତି ଇତ୍ୟାଦି ସଂପର୍କରେ ସେ ନିଜର ବିଚାର ପ୍ରକାଶ କରିଛନ୍ତି । ତାଙ୍କର ଏହି ନିର୍ଭୀକ ମତ ପ୍ରକାଶ ଫଳରେ ନେହେରୁ ତାଙ୍କର ମନ୍ତ୍ରୀମଣ୍ଡଳର ପୁନର୍ଗଠନ ସମୟରେ ତାଙ୍କୁ ମନ୍ତ୍ରୀମଣ୍ଡଳରୁ ବାଦ୍ ଦେଇଥିଲେ । ଶ୍ରୀ ଚିତ୍ତରଂଜନ ଦାସ ଏହାକୁ ଉଲ୍ଲେଖ କରି ଲେଖିଛନ୍ତି, "ପଦପ୍ରାପ୍ତି ଓ ପଦଚ୍ୟୁତିର ସାପସିଡ଼ିରେ ତାଙ୍କୁ ତତ୍କାଳୀନ ବମ୍ବେ ପ୍ରଦେଶର ରାଜ୍ୟପାଳ ଭାବେ ନିଯୁକ୍ତ ହୋଇଯିବାକୁ ହୋଇଥିଲା ।"

ମହତାବଙ୍କୁ କଂଗ୍ରେସ ପାର୍ଲାମେଣ୍ଟାରୀ ପାର୍ଟିର ସାଧାରଣ ସଂପାଦକ ଭାବରେ ନିଯୁକ୍ତ କରାଗଲା ଏବଂ ମନ୍ତ୍ରୀମଣ୍ଡଳ ମଧ୍ୟରେ ସମନ୍ୱୟ ସ୍ଥାପନାର ଦାୟିତ୍ୱ ଅର୍ପିତ ହେଲା । ଶାସନ ପରିଚାଳନା ଓ ଦଳ ମଧ୍ୟରେ ବାସ୍ତବ ସମନ୍ୱୟ ନରହୁଥିବାର ଉପଲବ୍ଧିକୁ ଠୋକ୍ ଠୋକ୍ ପ୍ରକାଶ କରି ମହତାବ ଓ ନେହେରୁଙ୍କ ମଧ୍ୟରେ ପୁନଶ୍ଚ ମତ ପାର୍ଥକ୍ୟ ସୃଷ୍ଟି ହେବାରୁ ସେ କଂଗ୍ରେସ ପାର୍ଲାମେଣ୍ଟାରୀ ପାର୍ଟିର ସାଧାରଣ ସଂପାଦକ ପଦରୁ ଇସ୍ତଫା ଦେଲେ । ନେହେରୁ ତାଙ୍କୁ ଗୋଟିଏ ପତ୍ରରେ ଲେଖିଥିଲେ, "ଆମ୍ଭେମାନେ ସାଧାରଣ



ପତ୍ନୀ ଶ୍ରୀମତୀ ସୁଭଦ୍ରା ଦେବୀ



ମୁକ୍ତିସଂଗ୍ରାମରେ କାରାବରଣ କରି ଜେଲରୁ ଫେରିଥିବା ମହତାବ



୧୯୩୪ ମସିହାରେ ଓଡ଼ିଶାର ଡେଲାଙ୍ଗ ଠାରେ ଅନୁଷ୍ଠିତ ସର୍ବ ସେବା ସଂଘ ଅଧିବେଶନରେ ଗାନ୍ଧିଜୀଙ୍କ ସହିତ ମହତାବ



ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବେ ଶପଥ ଗ୍ରହଣ



1956 ମସିହାରେ ହୀରାକୁଦ ବନ୍ଧ ଉଦ୍‌ଘାଟନ ପାଇଁ ଆସିଥିବା ଅବସରରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ସହିତ ମହତାବ



ଗଡ଼ଜାତ ମିଶ୍ରଣ ଆନ୍ଦୋଳନର ଦୁଇ ମହାନ ପୁରୋଧା ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଓ ମହତାବ



କବିଗୁରୁ ରବୀନ୍ଦ୍ରନାଥଙ୍କ ସହିତ ମହତାବ



ବିଷୁବ ମିଳନ ଉତ୍ସବରେ ସାହିତ୍ୟିକମାନଙ୍କ ଗହଣରେ ମହତାବ



'ମୀନାବଜାର'ର ସ୍ରଷ୍ଟା ଚାଚା ମହତାବ - ଶିଶୁମାନଙ୍କ ଗହଣରେ



କେନ୍ଦ୍ର ସାହିତ୍ୟ ଏକାଡେମୀ ତରଫରୁ ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଡକ୍ଟର ମହତାବଙ୍କୁ 'ଗାଁ ମଜଲିସ୍' ପୁସ୍ତକ ପାଇଁ ସାହିତ୍ୟ ଏକାଡେମୀ ସମ୍ମାନ ପ୍ରଦାନ କରୁଛନ୍ତି ; 30 ଏପ୍ରିଲ 1984, ଭୁବନେଶ୍ୱର ।

ରାଜନୈତିକ ସହାବସ୍ଥାନ ବ୍ୟତୀତ ଅତ୍ୟନ୍ତ ଆନ୍ତରିକ ବନ୍ଧନରେ ବନ୍ଧା । ଏହାର ଉତ୍ତର ଦେବାକୁ ଯାଇ ମହତାବ ମୂଲ୍ୟବୋଧର ପରିବର୍ତ୍ତନ ସଂପର୍କରେ ସୂଚନା ଦେଇଛନ୍ତି । ସେ ଲେଖିଥିଲେ, "ପରିସ୍ଥିତି ବହୁ ମୂଲ୍ୟବୋଧକୁ ପରିବର୍ତ୍ତନ କରିଦିଏ । ବୋଧହୁଏ ତାହା ମଧ୍ୟ ବନ୍ଧୁତ୍ୱ ଓ କମ୍ରେଡ୍ ସିପ୍ ପାଇଁ ପ୍ରଯୁଜ୍ୟ ଯଦି ଏହା ବାରମ୍ବାର ଅପ୍ରାକୃତିକ ତିକ୍ତତା ମଧ୍ୟ ଦେଇ ଘଟେ ।"

ଭାରତର ଗଣତନ୍ତ୍ର ବ୍ୟବସ୍ଥାରେ ଦଳ ଶାସନଗତ ପରିଚାଳନାରେ ସକ୍ରିୟ ଭୂମିକା ସମ୍ପାଦନ କରି ପାରୁ ନଥିବାରୁ, ଶାସନ ଓ ଲୋକମାନଙ୍କ ମଧ୍ୟରେ ସଂପର୍କ ଭୁଷୁଡ଼ି ପଡ଼ିବାରେ ଲାଗୁଛି । ଦଳ ବହୁଭାବରେ ମନ୍ତ୍ରୀମାନଙ୍କ କାର୍ଯ୍ୟରେ ସାହାଯ୍ୟ ସହଯୋଗ କଲେ ଶାସନଗତ ପରିଚାଳନା ସୁବିଧା ହେବ, ଏହା ଥିଲା ମହତାବଙ୍କର ମତ ଓ ଯୁକ୍ତି ।

**(ଚ) ବମ୍ବେ ରାଜ୍ୟପାଳ :** ମହତାବ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯିଏକି ଓଡ଼ିଶାରୁ ରାଜ୍ୟପାଳ ପଦବୀ ମଣ୍ଡନ କରିଥିଲେ । 1955 ମାର୍ଚ୍ଚ 2 ତାରିଖ ଦିନ ବମ୍ବେ ରାଜ୍ୟପାଳ ଭାବେ ତାଙ୍କୁ ବମ୍ବେ ହାଇକୋର୍ଟର ମୁଖ୍ୟ ବିଚାରପତି ଶ୍ରୀ ଏମ୍.ସି. ଚଗଲା ଶପଥ ପାଠ କରାଇଥିଲେ । ଯେତେବେଳେ ଯେଉଁ ପଦରେ ମହତାବ ଅଧିଷ୍ଠିତ ହୋଇଛନ୍ତି ବା ଯେଉଁ କାର୍ଯ୍ୟ କରିବାର ଦାୟିତ୍ୱ ନେଇଛନ୍ତି, ପ୍ରତ୍ୟେକ ସ୍ଥିତିରେ କିଛି ନୂତନତ୍ୱ ସୃଷ୍ଟି କରିବା ତାଙ୍କର ଲକ୍ଷ୍ୟ ହୋଇଛି । ବମ୍ବେ ରାଜ୍ୟପାଳ ଭାବେ ଦାୟିତ୍ୱ ଗ୍ରହଣ କରି, ଜଣେ ନିଷ୍ଠାପର କଂଗ୍ରେସ ଲୋକ ଭାବେ ସେ ମୁଖ୍ୟମନ୍ତ୍ରୀ ଓ କଂଗ୍ରେସ ସଭାପତିଙ୍କ ମଧ୍ୟରେ, ମୁଖ୍ୟମନ୍ତ୍ରୀ ଓ ମୁଖ୍ୟବିଚାର ପତିଙ୍କ ମଧ୍ୟରେ, ସରକାର ଓ ବିଶ୍ୱବିଦ୍ୟାଳୟ ଶାସନ ମଧ୍ୟରେ ସୁସଂପର୍କ ଓ ସମନ୍ୱୟ ସ୍ଥାପନ କରିବା ପାଇଁ ଚେଷ୍ଟା କରି ସଫଳ ହୋଇଛନ୍ତି । ଏତଦ୍ ବ୍ୟତୀତ ମହାରାଷ୍ଟ୍ରରେ ଶାନ୍ତିଶୃଙ୍ଖଳା ରକ୍ଷା କରିବାଠାରୁ ବିଭିନ୍ନ କ୍ଷେତ୍ରରେ ବିକାଶ ପାଇଁ ରାଜ୍ୟପାଳ ଭାବେ ମହତାବ ବିଭିନ୍ନ ସ୍ଥାନ ଗସ୍ତ କରି ରାଜ୍ୟ ସରକାରଙ୍କୁ ଯଥୋଚିତ ପରାମର୍ଶ ଦେବା ଅନ୍ୟ ଏକ ଉଲ୍ଲେଖ ଯୋଗ୍ୟ ଘଟଣା ।

ବମ୍ବେ ରାଜ୍ୟପାଳ ଭାବେ ସେ ବିଭିନ୍ନ ବିଶ୍ୱବିଦ୍ୟାଳୟର କୁଳାଧିପତି ଭାବେ କନ୍ ଭୋକେସନ୍‌ମାନଙ୍କରେ ଯୋଗ ଦେଇ ଯେଉଁ ସବୁ ବକ୍ତୃତା ଦେଇ ଥିଲେ ତାହା ତାଙ୍କର ଅସାଧାରଣ ଜ୍ଞାନ, ପାଣ୍ଡିତ୍ୟ ଓ ବାଗ୍ମିତାର ପରିଚୟ ପ୍ରଦାନ କରେ । ପୁନାର ଏକ ମହିଳା ବିଶ୍ୱବିଦ୍ୟାଳୟରେ ଭାଷଣ ଦେବା ଅବକାଶରେ ସେ କହିଥିଲେ, "ବର୍ତ୍ତମାନ ସମାଜର ଆବଶ୍ୟକତା ହେଉଛି ସମାଜ ବ୍ୟବସ୍ଥାରେ ଥିବା ଅସମାନତାକୁ ଦୂର କରିବା । ଏହା କେବଳ ପୁରୁଷ ବା ସ୍ତ୍ରୀମାନଙ୍କ ମଧ୍ୟରୁ ନୁହେଁ ବରଂ ଜାତି ଓ ବର୍ଣ୍ଣ ବିଭକ୍ତ ସମାଜରୁ ଏହାକୁ ଦୂର କରିବାକୁ ହେବ । xxx ଭାରତର ସ୍ୱାଧୀନତା ବିଶ୍ୱ ଇତିହାସରେ ଏକ ଅସାଧାରଣ ଘଟଣା । ଏହା କେବଳ ରାଜନୈତିକ ସ୍ୱାଧୀନତା ନୁହେଁ ବରଂ ଏହା ସମାଜିକ ସମାନତା ଆଣିଛି ।" କର୍ଣ୍ଣାଟକ ବିଶ୍ୱବିଦ୍ୟାଳୟ, ଧାରୱାରଠାରେ ସଭାପତି ଅଭିଭାଷଣରେ କହିଥିଲେ, "ଭାରତର ସ୍ୱାଧୀନତା ଭାରତକୁ ଗୋଟିଏ ପ୍ରକାର ଶାସନ ବ୍ୟବସ୍ଥା ମଧ୍ୟକୁ ଆଣିଛି, ଯାହା ପୂର୍ବରୁ କେବେ ନଥିଲା ଏବଂ ଭାରତରେ ପୂର୍ଣ୍ଣ ରୂପରେ ଗଣତନ୍ତ୍ର ପ୍ରତିଷ୍ଠା ହୋଇଛି । ଗଣତାନ୍ତ୍ରିକ ସମାଜବାଦ ବ୍ୟବସ୍ଥାକୁ ମଧ୍ୟ ଆମେ ଗ୍ରହଣ କରିଛେ ।" ଏହି

ବୈପ୍ଳବିକ ପରିବର୍ତ୍ତନକୁ ଅନୁଭବ କରିବାକୁ ସେ ଯୁବପିଢ଼ିକୁ ଆହ୍ୱାନ କରିଥିଲେ । ଯୁବପିଢ଼ି ସମୟ ଓ ପରିସ୍ଥିତିକୁ ଲକ୍ଷ୍ୟ କରି କାର୍ଯ୍ୟ କଲେ ସଫଳତା ପାଇବେ ଏହା ଥିଲା ତାଙ୍କର ମତ ।

ବମ୍ବେ ରାଜ୍ୟପାଳ ଥିବା ସମୟରେ ସେ ନିଜକୁ ଜଣେ ସଫଳ ପ୍ରଶାସକ, ଦେଶ ପ୍ରତି ପୂର୍ଣ୍ଣ ଆନୁଗତ୍ୟ ପ୍ରକାଶ କରିଥିବା ଦେଶପ୍ରେମୀ ଓ ଜାତୀୟତାବାଦୀ ନେତା ଓ ସର୍ବୋପରି ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ ଦାର୍ଶନିକ ଭାବେ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲେ ।

## 4

# ଗାନ୍ଧୀ ଦର୍ଶନର ଏକାନ୍ତ ଅନୁରକ୍ତ

ମହତାବ ସ୍ୱାଧୀନତା ଆନ୍ଦୋଳନରେ ଛାତ୍ରାବସ୍ଥାରୁ ଯୋଗଦେବାଠାରୁ ନିଜକୁ ଗାନ୍ଧିଜୀ ଓ ଗାନ୍ଧୀବିଚାର ସହିତ ଓତଃପ୍ରୋତ ଜଡ଼ିତ କରିଥିଲେ । ଗାନ୍ଧିଜୀଙ୍କୁ ସେ ଯେପରି ବୁଝିଥିଲେ, ବୋଧହୁଏ ଭାରତବର୍ଷରେ ଅନ୍ୟକେହି ତାଙ୍କୁ ସେପରି ବୁଝି ନଥିଲେ । ଗାନ୍ଧିଜୀ ଓ ଗାନ୍ଧୀ ବିଚାର ଓ ଦର୍ଶନର ସେ ଆଦୌ ଅନ୍ଧସ୍ତାବକ ନଥିଲେ । ସେ ଥିଲେ ପ୍ରଶଂସକ । ଭାରତର ରାଜନୈତିକ, ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ପଟ୍ଟଭୂମିରେ ତାହାର ସଫଳ ପ୍ରୟୋଗରେ ତାଙ୍କର ଅଗାଧ ବିଶ୍ୱାସ ଥିଲା । ମହତାବ ଅକ୍ଟୋବର 1964 ମସିହାରେ ଆନାମଲାଇ ବିଶ୍ୱବିଦ୍ୟାଳୟରେ "ଗାନ୍ଧୀ-ରାଜନୈତିକ ନେତା" ଶୀର୍ଷକ ଏକ ବକ୍ତୃତାରେ ଗାନ୍ଧିଜୀ ଓ ତାଙ୍କ ଦର୍ଶନକୁ ସଠିକ୍ ଭାବରେ ବିଶ୍ଳେଷଣ ଓ ମୂଲ୍ୟାୟନ କରିଥିଲେ ।

ମହତାବ ତାଙ୍କର ବିଚାର ପ୍ରକାଶ କରି କହିଥିଲେ, "ଗାନ୍ଧିଜୀ ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦ, ରାମକୃଷ୍ଣ ବା ଅନ୍ୟ ଅବତାରଙ୍କ ପରି ନଥିଲେ ଯେଉଁମାନେ ଏ ଧରାରେ ମଣିଷ ରୂପରେ ଅବତୀର୍ଣ୍ଣ ହୋଇ ମନୁଷ୍ୟର ଦେବତ୍ୱକୁ ପ୍ରତିଷ୍ଠା କରି ନିଜ ନିଜର ଧର୍ମକୁ ଛାଡ଼ି ଯାଇଛନ୍ତି । ଗାନ୍ଧିଜୀ ଜୀବନ ତମାମ ନିଜକୁ ଜଣେ ସନାତନି ବା ରକ୍ଷଣଶୀଳ ହିନ୍ଦୁ ବୋଲି ଦାବି କରିଛନ୍ତି । ଜଣେ ଉତ୍ତମ ହିନ୍ଦୁ ଭାବରେ ସେ ସମସ୍ତ ଧର୍ମକୁ ଓ ଧର୍ମର ଗୁରୁ ବା ପ୍ରଫେଟମାନଙ୍କୁ ସମ୍ମାନ ଦେଇଛନ୍ତି । ସେ ତାଙ୍କର ରାଜନୈତିକ କୌଶଳରେ ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ଏକତା ଓ ସମନ୍ୱୟ ପାଇଁ କାର୍ଯ୍ୟ କରିଛନ୍ତି କାରଣ ଭାରତରେ ଏହି ଦୁଇ ଧର୍ମ ସଂପ୍ରଦାୟ ମଧ୍ୟରେ ବାରମ୍ବାର ଦ୍ୱନ୍ଦ୍ୱ ସଂଘର୍ଷ ଦେଖା ଦେଇଛି ।"

"ଗାନ୍ଧିଜୀ ଦାର୍ଶନିକ ନଥିଲେ କିମ୍ବା ସେ କୌଣସି ଦର୍ଶନ ବିଚାର ଉପସ୍ଥାପିତ କରି ନାହାଁନ୍ତି । ସେ କେବଳ ଗୀତା ଦର୍ଶନରେ ବିଶ୍ୱାସ କରନ୍ତି ବୋଲି ଦାବି କରୁଥିଲେ । ସେ ମଧ୍ୟ ପ୍ରାଥମିକ ଭାବରେ ଜଣେ ସନ୍ଥ ନଥିଲେ । ଗାନ୍ଧିଜୀ ନିଜେ କହିଛନ୍ତି, "ଲୋକମାନେ କହୁଛନ୍ତି ମୁଁ ରାଜନୀତି ଭିତରେ ହଜି ଯାଇଥିବା ଜଣେ ସନ୍ଥ । କିନ୍ତୁ ପ୍ରକୃତ ଘଟଣା ହେଉଛି ମୁଁ ରାଜନୈତିକ ବ୍ୟକ୍ତି, ଅତ୍ୟନ୍ତ କଠିନ ଭାବରେ ସନ୍ଥ ହେବାକୁ ଚେଷ୍ଟା କରୁଛି ।"ସେ ମଧ୍ୟ ରାଜା ରାମ ମୋହନ ରାୟ, କେଶବ ଚନ୍ଦ୍ର ସେନ, ସ୍ୱାମୀ ଦୟାନନ୍ଦ ବା ଅନ୍ୟମାନଙ୍କ ପରି ସମାଜ ସଂସ୍କାରକ ନଥିଲେ । xxx କିନ୍ତୁ ଏହା ସତ୍ୟ ଯେ ସେ ଜଣେ ମହାନ୍ ରାଜନୈତିକ ନେତା ଭାବରେ ଇତିହାସର ଗତିଧାରାକୁ ପରିବର୍ତ୍ତନ କରି ପାରିଥିଲେ ।

"ଗାନ୍ଧିଜୀ ଯେପରି ଭଗବତ୍ ଗୀତାର ଦର୍ଶନକୁ ବୌଦ୍ଧିକ ସ୍ତରରୁ ସାଧାରଣ ମଣିଷ

ସ୍ତରକୁ ଆଣି ପାରିଥିଲେ, ଠିକ୍ ସେହିପରି ରାଜନୀତିକୁ ଶିକ୍ଷିତବର୍ଗଠାରୁ ଆଣି ଅଶିକ୍ଷିତ ସାମୂହିକ ମଣିଷମାନଙ୍କ ନିକଟରେ ପହଞ୍ଚାଇଥିଲେ ଯେଉଁମାନେ ବହୁ ଶତାବ୍ଦୀ ପରେ ରାଜନୈତିକ ଭାବେ କେବଳ ସଚେତନ ସୈନିକ ହୋଇନଥିଲେ ବରଂ ସ୍ୱାଧୀନତା ଅହିଂସା ସଂଗ୍ରାମର ସୈନିକ ହୋଇଥିଲେ । ବିଶ୍ୱର କୌଣସି ଦେଶର କେହି ନେତା ଏପରି କରି ପାରି ନାହାଁନ୍ତି ଯେପରି ଗାନ୍ଧିଜୀ ଭାରତର ସାଧାରଣ କାଦୁଅ ମେଞ୍ଚା ମଣିଷକୁ ରୂପାନ୍ତରିତ କରି ପାରିଲେ ।"

ଗାନ୍ଧୀଦର୍ଶନର ସମୀକ୍ଷା କରି ମହତାବ କହିଛନ୍ତି ଯେ, "ବର୍ତ୍ତମାନ ଭାରତ ଗୋଟିଏ ରାଷ୍ଟ୍ର ଭାବରେ ତାହାର କୌଣସି ଦର୍ଶନ ନାହିଁ । ଗଣତାନ୍ତ୍ରିକ ସମାଜବାଦ ଏକ ଦର୍ଶନ ନୁହେଁ । ଏକ ରାଜନୈତିକ ଆର୍ଥିକ କାର୍ଯ୍ୟକ୍ରମ । ଧର୍ମ ନିରପେକ୍ଷତା ଏକ ଦର୍ଶନ ମଧ୍ୟ ନୁହେଁ । ଏହା ରାଷ୍ଟ୍ରର ନୀତି । ଜାତୀୟ ସଂହତି ଜାତୀୟ ଦର୍ଶନ ବ୍ୟତୀତ ଅସମ୍ଭବ । ଗାନ୍ଧିଜୀ ଏହି ଦର୍ଶନ ଆମକୁ ଦେଇ ଯାଇଛନ୍ତି । ଗାନ୍ଧିଜୀଙ୍କର ସ୍ୱଦେଶୀ ଅର୍ଥନୀତି, ସତ୍ୟାଗ୍ରହ, ଅହିଂସା ଯାହା ସମାଜ ବ୍ୟବସ୍ଥାକୁ ସମାନତା ଓ ବିକାଶ ଆଡ଼କୁ ନେଇ ପାରିବ, ତାହାର ଆବଶ୍ୟକତା ରହିଛି ।"

ମହତାବଙ୍କ ସାହିତ୍ୟ ସାଧନାରେ ମଧ୍ୟ ଗାନ୍ଧିଦର୍ଶନ ବହୁ ସ୍ଥାନରେ ପରିଲକ୍ଷିତ ହୁଏ । 'ବିପ୍ଳବ ଓ ଗାନ୍ଧିଜୀ' ଶୀର୍ଷକ ଏକ ଅଗ୍ରଲେଖାରେ ସେ ଲେଖିଛନ୍ତି, "ଚିନ୍ତାକ୍ଷେତ୍ରରେ ଗାନ୍ଧିଜୀ ଯେଉଁ ସ୍ୱାତନ୍ତ୍ର୍ୟ ସୃଷ୍ଟି କରିଥିଲେ, ତାହା ଆଜି ଆଉ ନାହିଁ । ଏହି ଅବସ୍ଥାରେ ପୁଣି ସମାଜବାଦର ଆହ୍ୱାନ ଆସିଛି । ଗାନ୍ଧିଜୀଙ୍କ ବିଚାର ଅନୁସାରେ ପାଶ୍ଚାତ୍ୟ ପଦ୍ଧତିରେ ସମାଜବାଦ ବା ଶୋଷିତଶ୍ରେଣୀର ଉଦ୍ଧାର କେବେ ହେଲେ ହୋଇ ପାରିବ ନାହିଁ । ପାଶ୍ଚାତ୍ୟ ପଦ୍ଧତିରେ ଶୋଷିତଶ୍ରେଣୀ ରହିବେ ହିଁ ରହିବେ । କାରଣ ଏ ପଦ୍ଧତି ଅର୍ଥବାଦ ଉପରେ ପ୍ରତିଷ୍ଠିତ । ଅର୍ଥବାଦର ଭିତ୍ତି ଉପରେ ସମାଜବାଦ ଗଠିତ ହୋଇ ନପାରେ । ଏଣୁ ଚିନ୍ତାକ୍ଷେତ୍ରରେ ବିପ୍ଳବ ଆବଶ୍ୟକ । ସେ ବିପ୍ଳବ ପାଇଁ ଗାନ୍ଧିଜୀଙ୍କ ବିଚାର ଅନୁସାରେ ଜନତା ଭିତରକୁ ଯାଇ ତାଙ୍କ ସହିତ ଜୀବନକୁ ମିଶାଇ ଦେବାକୁ ହେବ । ପଶ୍ଚିମଆଡୁ ଦୃଷ୍ଟି ନଫେରାଇଲେ ଜନତା ଆଡ଼କୁ ଦୃଷ୍ଟି ଯିବ ନାହିଁ ।"

ମହତାବଙ୍କ ସମାଜିକ, ରାଜନୈତିକ ଜୀବନ ଗାନ୍ଧୀବାଦ ଦ୍ୱାରା ପ୍ରଭାବିତ ହେବା ସହିତ ସାହିତ୍ୟିକ ଜୀବନ ମଧ୍ୟ ସେଥିରୁ ବାଦ ପଡ଼ି ନାହିଁ । ଓଡ଼ିଆ ସାହିତ୍ୟରେ ଗାନ୍ଧୀଯୁଗର ପ୍ରଭାବ ପଡ଼ି ନାହିଁ ବୋଲି ସେ କ୍ଷୋଭ ପ୍ରକାଶ କରି କହିଛନ୍ତି, "ଓଡ଼ିଆ ସାହିତ୍ୟରେ ଗାନ୍ଧୀଯୁଗ ବିଶେଷ ଭାବରେ ପ୍ରତିଫଳିତ ହୋଇ ନାହିଁ । ଏପରିକି ପଚାଶବର୍ଷ ପରେ ଯଦି କେହି ଓଡ଼ିଆ ସାହିତ୍ୟର ସମୀକ୍ଷା କରେ, ତେବେ ସେ ବିସ୍ମିତ ହେବ, କିପରି ଏକ ବିରାଟ ସାମାଜିକ ଓ ରାଜନୈତିକ ବିପ୍ଳବ ସାହିତ୍ୟକୁ ସ୍ପର୍ଶ କରି ପାରିଲା ନାହିଁ । ଓଡ଼ିଆ ସାହିତ୍ୟର କ୍ରମବିକାଶରେ ଏହା ଏକ ଅପୂରଣୀୟ ଦୁର୍ବଳତା । ଆଜି ମଧ୍ୟ ସମୟ ଅଛି ମାତ୍ର ଅଳ୍ପକାଳ ପୂର୍ବର ଗାନ୍ଧୀଯୁଗର ପ୍ରଭାବ ସାହିତ୍ୟ କ୍ଷେତ୍ରକୁ ଆଣିବା ପାଇଁ ।"

ଗାନ୍ଧୀବାଦର ସଫଳ ରୂପାୟନ ଓ ପ୍ରୟୋଗ ହୋଇ ପାରୁ ନଥିବାରୁ ମହତାବ ଯେ ବେଶ୍ ଚିନ୍ତିତ ଥିଲେ, ଏହା ତାଙ୍କର ଗାଁ ମଜଲିସ୍ ସ୍ତମ୍ଭରୁ ଜଣା ପଡ଼େ । ସେ ଲେଖିଥିଲେ, "ଗତ ପଚାଶବର୍ଷରେ ଦେଖା ଯାଉଛି- ଧନୀ ଶ୍ରେଣୀର ବିବେକକୁ ଗାନ୍ଧିଜୀ ଯେଉଁ ନିବେଦନ

କରିଥିଲେ ତାହା କାର୍ଯ୍ୟକାରୀ ହୋଇନାହିଁ । ହଜାରରୁ ଜଣେ ସୁଦ୍ଧା ଧନ ଉପାର୍ଜନ କରି ମଧ୍ୟ ନିଜେ ସାଧାରଣ ଜନତାର ସ୍ତରରେ ରହି ଉପାର୍ଜିତ ଧନକୁ ଜନତାର ସେବାରେ ଉପଯୋଗ କରୁନାହିଁ । ଅପରନ୍ତୁ ରାଷ୍ଟ୍ରକୁ ମଧ୍ୟ ଧନର ପ୍ରଭାବ ବିରୋଧରେ ଲଢ଼ିବାକୁ ପଡୁଛି । ଏହି ଅବସ୍ଥାରେ ଜନତାକୁ ଶୋଷଣ ବିରୋଧରେ ଅଭିଯାନ ଚଳାଇବା ପାଇଁ ଆହ୍ୱାନ କରିବା ବ୍ୟତୀତ ଅନ୍ୟ ଉପାୟ ନାହିଁ । ଏହି ଅଭିଯାନ ଶାନ୍ତି ପୂର୍ଣ୍ଣ ହୋଇ ପାରିଲେ ଗାନ୍ଧୀ ମତବାଦର ବ୍ୟବହାରିକ ମୂଲ୍ୟ ରହୁଛି, ଅନ୍ୟଥା ନୁହେଁ ।

"କେବଳ କଥାରେ କୌଣସି ତତ୍ତ୍ୱର ମୂଲ୍ୟ ନିର୍ଦ୍ଧାରିତ ହୁଏ ନାହିଁ । ଏହା ଗାନ୍ଧିଜୀ ନିଜେ ବରାବର କହୁଥିଲେ । କାର୍ଯ୍ୟରେ ମତବାଦର ସାର୍ଥକତା ପ୍ରମାଣ କରିବାକୁ ହେବ ।"

ଗାନ୍ଧୀ ମତବାଦକୁ ରାଷ୍ଟ୍ରର ଦର୍ଶନ ଭାବେ ଗ୍ରହଣ କରି, ତାକୁ ପ୍ରୟୋଗ କରିବା ପାଇଁ ବାରମ୍ବାର ଉଲ୍ଲେଖ କରି ମହତାବ ଗାନ୍ଧୀଦର୍ଶନ ପ୍ରତି ନିଜର ଅନୁରକ୍ତି ପ୍ରକାଶ କରିଛନ୍ତି ଏବଂ ରାଷ୍ଟ୍ରନୀତିଜ୍ଞ ଭାବେ ନିଜର ସଫଳ ଭୂମିକା ସଂପାଦନ କରିଛନ୍ତି । ବୋଧହୁଏ ଏଥିପାଇଁ ଯଥାର୍ଥରେ କୁହାଯାଇପାରେ ରାଜନୀତି ତାଙ୍କର ଜୀବିକା ନଥିଲା; ତାହା ଥିଲା ତାଙ୍କ ଆତ୍ମାର ଆହ୍ୱାନ ଓ ତପସ୍ୟା ।

## 5

# ଧୁରୀଣ ରାଜନୀତିଜ୍ଞ ଓ ନବଉତ୍କଳର ନିର୍ମାତା

ସାଧାରଣ କର୍ମୀ ସ୍ତରରୁ ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମ ଯୋଦ୍ଧା, ସ୍ୱାଧୀନୋତ୍ତର ରାଷ୍ଟ୍ର ଗଠନ ପାଇଁ ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ଓ ବମ୍ବେ ପ୍ରଦେଶର ଗଭର୍ଣ୍ଣର ଭାବରେ ସାଧାରଣ ଜୀବନରେ ପ୍ରଭାବଶାଳୀ ଓ ଐଶ୍ୱର୍ଯ୍ୟଶାଳୀ ହୋଇ ଥିଲେ ହେଁ ଜୀବନରେ ନାନା ଦୁର୍ବିପାକର ମଧ୍ୟ ସମ୍ମୁଖୀନ ହୋଇଛନ୍ତି । ଜୀବନରେ ଉତ୍‌ଥାନ ଓ ପତନ । କିନ୍ତୁ କେବେ ହେଲେ ସେ ପରାଜୟକୁ ସ୍ୱୀକାର କରି ନାହାଁନ୍ତି । ସେ ତା 31.5.52 ମସିହାରେ ଶ୍ରୀ ପଠାଣି ପଟ୍ଟନାୟକଙ୍କୁ ଏକ ପତ୍ରରେ ଲେଖିଥିଲେ, "କର୍ତ୍ତବ୍ୟ ନିର୍ଣ୍ଣୟ କରିବା କଠିନ ଓ କର୍ତ୍ତବ୍ୟ ସଂପାଦନ କରିବା ମଧ୍ୟ କଠିନ । କିନ୍ତୁ ପଦ ନିର୍ଣ୍ଣୟ କରିବା ସହଜ, ପଦରେ ଆସୀନ ହେବାର ପ୍ରୟାସ ମଧ୍ୟ ସହଜ । ମୋର ଜୀବନ ଏପରି ଭାବରେ ଗଢ଼ା ଯେ, ଏହା ଏକ ନିରସ ବନ୍ଧୁର କର୍ତ୍ତବ୍ୟ ପଥରେ ଚାଲିଛି । ଏଣୁ ପଦ ବା ସମ୍ମାନ ଇତ୍ୟାଦି ଦିଗରେ ମନ ଦେବା ପାଇଁ ବେଳ ନାହିଁ ।"

ବମ୍ବେ ଗଭର୍ଣ୍ଣର ପଦବୀରୁ ଇସ୍ତଫା ଦେଇ ତାଙ୍କୁ ପୁଣି ଥରେ ଓଡ଼ିଶାର ଶାସନ ଡୋରି ହାତକୁ ନେବାକୁ ହେଲା । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ସମୟରେ ଶାସନରେ ଦେଖା ଦେଇଥିବା ଅସ୍ଥିରତାକୁ ଦୂର କରିବା ପାଇଁ ମହତାବଙ୍କୁ ଓଡ଼ିଶା ଆଣିବା ଥିଲା ମୁଖ୍ୟ ଉଦ୍ଦେଶ୍ୟ । କିନ୍ତୁ କେହି କେହି ମଧ୍ୟ ପ୍ରଚାର କରୁଥିଲେ ଯେ ମହତାବ ପୁଣି ମୁଖ୍ୟମନ୍ତ୍ରୀ ହେବା ପାଇଁ ଚେଷ୍ଟା କରୁଥିବାରୁ ଏମିତି ବିଭ୍ରାଟ ଘଟୁଛି । କେନ୍ଦ୍ରୀୟ ପାର୍ଲାମେଣ୍ଟାରୀ କମିଟୀ ନବବାବୁଙ୍କୁ ଅବ୍ୟାହତି ଦେଇ ମହତାବବାବୁଙ୍କୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାକୁ ନିଷ୍ପତ୍ତି ନେଲା ପରେ ମହତାବବାବୁ ନବବାବୁଙ୍କୁ ଏକ ପତ୍ର ଲେଖିଥିଲେ । ନିମ୍ନରେ ସେହି ପତ୍ରଟି ଉଦ୍ଧାର କରାଗଲା ।

*ଘରୋଇ ଏବଂ ବ୍ୟକ୍ତିଗତ*

*ଗଭର୍ଣ୍ଣର*
*ବମ୍ବେ ରାଜଭବନ*
*ତା12 ଜୁଲାଇ 1956*

ପ୍ରିୟ ଚୌଧୁରୀ !

ବହୁ ବିଚାର କରି ଓ ହେଞ୍ଜି ପାଞ୍ଜି ହେଲା ପରେ ମୁଁ ଅତି ସନ୍ତର୍ପଣରେ ଏ ଚିଠି ଲେଖୁଛି । ମୁଁ ଜାଣେନା ଆପଣ କିପରି ଏହାକୁ ଗ୍ରହଣ କରିବେ । କଥାଟି ହେଉଛି, ଆପଣ

ବହୁ ଦିନରୁ ଇସ୍ତଫା ଦେବାକୁ ଚାହୁଁଥିଲେ ଓ କେନ୍ଦ୍ରୀୟ ସଂସଦୀୟ ବୋର୍ଡ଼ ଆପଣଙ୍କୁ ସେଥିପାଇଁ ଅନୁମତି ଦେବା ସଙ୍ଗେ ସଙ୍ଗେ ମୋତେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଦେବା ଲାଗି ନିଷ୍ପତ୍ତି ନେଇଛନ୍ତି । ଏହି ନିଷ୍ପତ୍ତି ଜୁନ୍ 4 ତାରିଖରୁ ବମ୍ବେଠାରେ ନିଆଯାଇ ଥିଲେ ବି ଦୁଃଖର କଥା ଯେ, ମୁଁ ଗତ 5 ତାରିଖ ପର୍ଯ୍ୟନ୍ତ, ଧେବର ଓ ମୋରାରଜୀ ଭାଇ ମୋତେ ନ କହିବା ଯାଏଁ, ସେ ବିଷୟରେ କିଛି ଜାଣି ନଥିଲି । ମୁଁ ତ ଅନ୍ୟ ଏକ ଦିଗରେ ଚିନ୍ତା କରୁଥିଲି; ଏଣୁ ଏ ନିଷ୍ପତ୍ତି ମୋ ପାଇଁ ଅପ୍ରତ୍ୟାଶିତ ଥିଲା । ମୁଁ ମୋ ମନ କଥା ଜବାହରଲାଲଜୀ, ପନ୍ଥଜୀ ଓ ମୌଲାନାଙ୍କୁ ଜଣାଇ ଦେଇଥିଲି । କିନ୍ତୁ ସେମାନେ ମୋତେ ସଂସଦୀୟ ବୋର୍ଡର ନିଷ୍ପତ୍ତି ମାନିନେବା ଲାଗି ପ୍ରବର୍ତ୍ତାଇଛନ୍ତି । ଏହି ନିଷ୍ପତ୍ତିରେ ମୁଁ ଖୁସୀ ନୁହେଁ; ଯଦିଓ ଓଡ଼ିଶାର କିଛି ବନ୍ଧୁ ଭାବୁଥିଲେ ଯେ, ମୁଁ ଓଡ଼ିଶା ଫେରିଯିବାକୁ ଚାହେଁ । କିନ୍ତୁ କେନ୍ଦ୍ର ନେତୃତ୍ୱ ତାହା ଚାହୁଁ ନାହାଁନ୍ତି । ମୁଁ କର୍ମତତ୍ତ୍ୱରେ ପୂରାପୂରି ବିଶ୍ୱାସ କରେ । ମୁଁ ଆଧ୍ୟାତ୍ମିକ ସାଧନା ଦିଗରେ ଯେତିକି ଆଗେଇଛି ସେଇଥିରୁ ମୋ'ର ଯେତିକି ଜ୍ଞାନ ହୋଇଛି, ତହିଁରୁ ମୋତେ ଲାଗୁଛି, ଓଡ଼ିଶାରେ ମୋର କର୍ମ ଶେଷ ହୋଇଯାଇଛି । ଯାହା ଭଲ ମନ୍ଦ କରୁଛି, ତାହା ମୃତ ବ୍ୟକ୍ତିର କର୍ମ ଭଳି ଲୋକେ ତାଙ୍କ ତଉଲରେ ବିଚାର କରିବେ । ଏଣୁ ଓଡ଼ିଶା ଫେରିବା ଲାଗି ପ୍ରତିଦିନ ଯେଉଁ ସବୁ ଚିଠି ଆସେ, ତାର ଉତ୍ତରରେ ମୁଁ ଏଇଆ ହିଁ ଜଣେଇ ଦେଇଥାଏ । ମୁଁ ସେମାନଙ୍କୁ ଲେଖିଛି ଯେ ମୁଁ ଜୀବନର ଅନ୍ତିମ କାଳରେ ଓଡ଼ିଶା ପାଇଁ କିଛି ଆଧ୍ୟାତ୍ମିକ କାମ କରିବି । ସେ ପର୍ଯ୍ୟନ୍ତ ମୁଁ ମୁକ୍ତ ବିହଙ୍ଗମ ପରି ଖୋଲା ଦୁନିଆରେ ବୁଲିବି । କେନ୍ଦ୍ରୀୟ ସଂସଦୀୟ ବୋର୍ଡ଼ର ନିଷ୍ପତ୍ତି ମୋତେ ଏକ ପିଞ୍ଜରାର ଫନ୍ଦିରେ ପକାଇ ଦେଲା ପରି ଲାଗୁଛି । ମୁଁ ଏହି ଭଳି ଭାବୁଥିଲା ବେଳେ ପ୍ରାଦେଶିକ କମିଟୀ ଓ କାର୍ଯ୍ୟକାରୀ କମିଟୀର ପ୍ରସ୍ତାବ ଆସିଗଲା । ମୁଁ ସାଙ୍ଗେ ସାଙ୍ଗେ ରାଧାନାଥବାବୁଙ୍କୁ ଲେଖିଲି ଯେ, ଆପଣଙ୍କୁ ସେ ଦାୟିତ୍ୱରେ ରହିବା ପାଇଁ କହିବୋଲି ବୁଝାଇ ଦିଅନ୍ତୁ ଓ ଅନ୍ୟମାନଙ୍କୁ ମୁଣ୍ଡବ୍ୟଥାରୁ ରକ୍ଷା କରନ୍ତୁ । କିନ୍ତୁ ଯାହା ଦେଖାଯାଉଛି, ଆପଣ ନଛୋଡ଼ବନ୍ଧା ।

ଅଗଷ୍ଟ ଶେଷ ସୁଦ୍ଧା ବା ସେପ୍‌ଟେମ୍ବର ଆରମ୍ଭରେ ବର୍ତ୍ତମାନର ଦାୟିତ୍ୱ ଛାଡ଼ିବା ପାଇଁ ପ୍ରସ୍ତୁତ ହୋଇ ଯାଆନ୍ତୁ ବୋଲି ଧେବର ମୋତେ କହିଲେ । ମୋ' ମନର କଥା ମୁଁ ବି ତାଙ୍କୁ କହିଲି କିନ୍ତୁ ସେ ତ ଅଟଳ। ଯାହା ଜଣା ପଡୁଛି କଥାଟା ଚୂଡ଼ାନ୍ତ ଭାବରେ ନିଷ୍ପତ୍ତି ହୋଇଯାଇଛି ।

କିନ୍ତୁ ମୋ'ର ଆଶଙ୍କା ହେଉଛି ଯେ, ମୁଁ ଓଡ଼ିଶା ଗଲେ ପୁଣି ପୂରାପୂରି ଅଖାଡୁଆରେ ପଡ଼ିଯିବି । ମୁଁ କାମକୁ ବା ବିରୋଧକୁ ବା ଅସୁବିଧାକୁ ସମ୍ମୁଖୀନ ହେବାକୁ ଡରେ ନାହିଁ । କିନ୍ତୁ କେଉଁ କାମରେ କାହାର ସରାଗ ଥାଏ, କିଏ ବାଧ୍ୟ ହୋଇ କରେ, କଥାଟି ସେଇଠି ରହିଛି । ଓଡ଼ିଶାବାସୀଙ୍କ ଶ୍ରଦ୍ଧାଭାଜନ ହୋଇ ପାରିଲେ ମୁଁ ଖୁସି ହେବି । ମୁଁ ଯେକୌଣସି ଦାୟିତ୍ୱ ନିଏ, ତାକୁ ସଫଳ କରିବାରେ ମୋ'ର ଆନନ୍ଦ ଥାଏ ।

ଆମ ପିଢ଼ି ଭିତରେ ଆମେ ଓଡ଼ିଶାକୁ ଭାରତ ମଧ୍ୟରେ ସୁପ୍ରତିଷ୍ଠିତ କରିପାରିଲେ ମୋ'ର ଏକ ଅଭିଳାଷ ପୂରଣ ହୁଅନ୍ତା, କିନ୍ତୁ ଏ ଜୀବନ ଲାଗି ଓଡ଼ିଶାରେ ମୋର କର୍ମ ଶେଷ ହୋଇ ଯାଇଛି ବୋଲି ମୁଁ ବିଶ୍ୱାସ କରୁଥିବାରୁ ସେସବୁ ଅଭିଳାଷକୁ ଚାପି ରଖିଥିଲି । ମୁଁ ଜାଣେନା, ଏ ଜୀବନରେ ମୋ ପାଇଁ କଅଣ ଅଛି ଭୁଲ ହେଉ ବା ଠିକ୍ ହେଉ, ମୁଁ ନିଜକୁ

ସେ ଦିଗରେ କିଛି ନକରି ପାରେ, ତାହା ହେଲେ ଜାଣିବାକୁ ହେବ ଯେ, ମୋର ସେହି ପ୍ରାପ୍ୟ ଶେଷ ହୋଇଗଲା । ସେ କ୍ଷେତ୍ରରେ ତ ଜୀବନଟା ଏକ ବିରାଟ ବିଫଳତାରେ ପର୍ଯ୍ୟବସିତ ହେବ । ସେଥିଲାଗି ମୁଁ ଏକ ନୂଆକ୍ଷେତ୍ର ସନ୍ଧାନରେ ଥିଲି । ଅନ୍ତତଃ ତା'ରି ଭିତରେ ବୁଢ଼ା ହେଲା ବେଳକୁ କର୍ମ ଆକାଂକ୍ଷା ଲୋପ ପାଇ ଯାଇଥିବ । କିନ୍ତୁ ଯାହା ଦେଖାଯାଉଛି, ପ୍ରାରବ୍ଧର ଭୋଗରୁ ରକ୍ଷା ନାହିଁ; ମଣିଷକୁ ଅସହାୟ ଭାବରେ ପ୍ରାରବ୍ଧକୁ ମାନି ନେବାକୁ ହେବ ।

ଏଇ ପ୍ରାରବ୍ଧ ଭୋଗ କାଳରେ ମୁଁ ଆପଣଙ୍କ ଆଶୀର୍ବାଦ କାମନା କରୁଛି । ଏ ଦୁନିଆରେ ବହୁ ବିଷୟରେ ବିଭିନ୍ନ ପରିସ୍ଥିତିର ମୂଲ୍ୟାୟନରେ ବିଚାରକ ଭାବରେ କାମ କରିବାର ପଦ୍ଧତି ଦିଗରେ ଭିନ୍ନ ମତ ରହିବ ହିଁ ରହିବ । ଏହା ସତ୍ତ୍ୱେ ସହନଶୀଳତା ହିଁ ମଣିଷକୁ ବାନ୍ଧି ରଖେ, ଦ୍ୱନ୍ଦ୍ୱ ଊଣା କରେ । ଅନେକଙ୍କଠାରୁ ଶୁଣିଛି ଯେ 1948-49 ମସିହାରେ ଆପଣ ଯେତେବେଳେ ଇସ୍ତଫା ଦେଲେ, ସେତେବେଳେ ମୋର ଅନେକ କାମରେ ଆପଣ ଏକମତ ନ ହୋଇ ଇସ୍ତଫା ଦେଇଥିଲେ ।

ଏକଥା ମୁଁ କାହା ସହିତ ଆଲୋଚନା କରି ନାହିଁ । ସେ କଥା ସତ କି ନୁହେଁ, ତାହା ମୁଁ ଏପର୍ଯ୍ୟନ୍ତ ଜାଣି ନାହିଁ । କ୍ୱଚିତ ବିଭିନ୍ନ ଲୋକଙ୍କ ମଧ୍ୟରେ ବିଚାର ଓ କାମ କରିବାର ଢଙ୍ଗରେ ପୂର୍ଣ୍ଣ ଐକ୍ୟମତ ଥାଏ ବୋଲି ମୁଁ ଧରି ନେଇଛି । ଏହା ସତ୍ତ୍ୱେ ଲୋକେ ଧୈର୍ଯ୍ୟ ଓ ବୁଝାମଣା ସାହାଯ୍ୟରେ ଏକାଠି ଚାଲନ୍ତି । କିଏ କିଛି ଦାୟିତ୍ୱ ନେଲେ, ତା'କୁ ଯେ ଅନ୍ୟମାନେ ଲାଗି ପଡ଼ି ସାହାଯ୍ୟ କରିବେ, ଏଭଳି ଆଶା କରି ହୁଏନା । କିନ୍ତୁ ସେଭଳି ସାହାଯ୍ୟ ମିଳୁ ବା ନମିଳୁ ଯିଏ କିଛି ଦାୟିତ୍ୱ ନିଏ, ତା'ର ଅନ୍ୟମାନଙ୍କ ସାହାଯ୍ୟ କାମନା କରିବା ବିଧେୟ । ଯଦିବା ଅନ୍ୟମାନଙ୍କ ସାହାଯ୍ୟ ନ ମିଳିଲା ତା' ପ୍ରଥମେ ଧରି ନେବାକୁ ହେବ ଯେ, ସାହାଯ୍ୟ ଭିକ୍ଷା କରିବା ଲୋକର କିଛି ତ୍ରୁଟି ରହିଗଲା । 'କର୍ମ' ନିୟମର ଏହି ବହୁ ପ୍ରଚଳିତ ପଦ୍ଧତି ଅନୁସରଣ କରି ମୁଁ ଅତି ଆନ୍ତରିକ ଭାବରେ ଆପଣଙ୍କ ସହଯୋଗ କାମନା କରୁଛି ।

ମୁଁ ଜାଣେନା ଆପଣ କି ଭଳି ଚିନ୍ତା କରୁଛନ୍ତି । ଯେଉଁ ଅଭିଳାଷ ଧରି ମୁଁ କିଛି କାଳ ଚାଲିଥିଲି, ତାକୁ ଛାଡ଼ି ନୂଆ ଆକାଂକ୍ଷା ମୋ' ମୁଣ୍ଡରେ ପଶିବା ଫଳରେ ମୁଁ ଟିକିଏ ବିଚଳିତ ହୋଇ ପଡ଼ିଛି । ଜୀବନର ବହୁଦିନର ଆକାଂକ୍ଷାକୁ ଚାପି ନୂଆ ଦିଗରେ ନିଜକୁ ନିୟୋଜିତ କରିବା ପାଇଁ ମନରେ ଦୃଢ଼ ସଂଯମ ଆବଶ୍ୟକ ।

ମୁଁ ଆପଣଙ୍କଠାରୁ ଏ ବାବଦରେ ଶୀଘ୍ର କିଛି ଜାଣିବାକୁ ପାଇଲେ ଧନ୍ୟ ହେବି ଏବଂ ଯଦି ଆବଶ୍ୟକ ହୁଏ, ଆମେ ଭେଟା ଭେଟି ହୋଇ ଏ ବାବଦରେ ଆଲୋଚନା କରିବା ।

*ଶ୍ରୀ ନବକୃଷ୍ଣ ଚୌଧୁରୀ*
*ଓଡ଼ିଶାର ମୁଖ୍ୟମନ୍ତ୍ରୀ*

ଆପଣଙ୍କର ଏକାନ୍ତ

ସ୍ୱା:ହରେକୃଷ୍ଣ ମହତାବ

---

*ଏହି ଚିଠିଟି 'ଅନିର୍ବାଣ' : ପଦ୍ମଚରଣ ନାୟକଙ୍କ ନବକୃଷ୍ଣ ଚୌଧୁରୀଙ୍କ ଜୀବନ ଓ ସମୟ ପୁସ୍ତକର ପୃଷ୍ଠା 261 ଓ 262 ରୁ ନିଆଯାଇଛି ।

କ୍ଷମତା ପାଇଁ ପ୍ରତ୍ୟେକ ରାଜନୈତିକ ନେତା ଚେଷ୍ଟା କରିବାର ଅନେକ ଦୃଷ୍ଟାନ୍ତ ରହିଛି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ପାଇଁ ପୁଣି ଥରେ ମହତାବ ଇଚ୍ଛା କରିବାରେ କୌଣସି ଅଯୌକ୍ତିକତା ନାହିଁ । ତେଣୁ ମହତାବଙ୍କ ଉପରେ ବର୍ଣ୍ଣିତ ଚିଠି ନବବାବୁଙ୍କର ଶ୍ରଦ୍ଧା, ଶୁଭେଚ୍ଛା ଓ ସହଯୋଗ ପାଇବା ପାଇଁ ଉଦ୍ଦିଷ୍ଟ ଥିଲା । ଏହା ଦ୍ୱାରା ମହତାବ ନିଜକୁ ବିଚକ୍ଷଣ ରାଜନୀତିଜ୍ଞ ଭାବେ ପ୍ରମାଣସିଦ୍ଧ କରିଛନ୍ତି । କେଉଁ ପରିସ୍ଥିତିରେ ଓ କିପରି ମହତାବ ପୁଣି ଥରେ ରାଜ୍ୟର ଶାସନଭାର ଗ୍ରହଣ କଲେ ତାହାର ସମ୍ୟକ ଦୃଷ୍ଟିପାତ ଆବଶ୍ୟକ ହେଉଛି ।

ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରୀମଣ୍ଡଳ ସମୟରେ ଓଡ଼ିଶାରେ ସୀମା ଆନ୍ଦୋଳନ ଅତ୍ୟନ୍ତ ବ୍ୟାପକ ହୋଇଥିଲା । ଷଢ଼େଇକଳା ଓ ଖରସୁଆଁ ବିହାରକୁ ଚାଲି ଯାଇଥିଲା । ଓଡ଼ିଶା ପରି ବହୁ ରାଜ୍ୟରେ ସୀମାକୁ ନେଇ ଅସନ୍ତୋଷ ରହିଥିଲା । 1953 ମସିହାରେ କେନ୍ଦ୍ର ସରକାର ସୟଦ୍ ଫଜଲ ଅଲ୍ଲୀଙ୍କ ସଭାପତିତ୍ୱରେ ରାଜ୍ୟ ପୁନର୍ଗଠନ କମିଶନ ଗଠନ କଲେ । 1953 ମସିହାରେ ଓଡ଼ିଶା ବିଧାନସଭାରେ ଷଢ଼େଇକଳା ଓ ଖରସୁଆଁ ପୁନର୍ମିଶ୍ରଣ ପାଇଁ ଗୋଟିଏ ପ୍ରସ୍ତାବ ସର୍ବସମ୍ମତ ଗୃହୀତ ହୋଇ କେନ୍ଦ୍ର ସରକାରଙ୍କୁ ଦିଆଯାଇଥିଲା ଏବଂ ପୁନର୍ଗଠନ କମିଶନ ଗଠନ ହେବା ପରେ ଏହି ପ୍ରସ୍ତାବ ପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ କରାଗଲା ।

1955 ନଭେମ୍ବର ମାସରେ ରାଜ୍ୟ ପୁନର୍ଗଠନ କମିଶନ ତାଙ୍କର ରିପୋର୍ଟ ଦେଲେ । ସେଥିରେ ଓଡ଼ିଶାର ଦାବିକୁ ସଂପୂର୍ଣ୍ଣ ଉପେକ୍ଷା କରାଯାଇଥିବାରୁ ଓଡ଼ିଶାରେ ଦଳମତ ନିର୍ବିଶେଷରେ କ୍ଷୋଭ ପ୍ରକାଶ ପାଇଥିଲା । ରାଜ୍ୟ ପୁନର୍ଗଠନ କମିଶନଙ୍କ ନିଷ୍ପତ୍ତିର ପୁନର୍ବିଚାର ପାଇଁ ଗୋଟିଏ ପ୍ରସ୍ତାବ ବିଧାନସଭାରେ 1955 ମସିହା ନଭେମ୍ବର ମାସରେ ଗୃହୀତ ହୋଇ କେନ୍ଦ୍ର ସରକାରଙ୍କ ନିକଟକୁ ପଠାଗଲା । କେନ୍ଦ୍ର ସରକାର କମିଶନଙ୍କ ସୁପାରିଶକୁ ଗ୍ରହଣ କରିବା ପୂର୍ବରୁ କଂଗ୍ରେସର ଏକ ଉଚ୍ଚକ୍ଷମତା ସମ୍ପନ୍ନ କମଟୀ ଏହାକୁ ତନଖି କରି ପରାମର୍ଶ ଦେବାକୁ ଗଢ଼ାହେଲା । ମୁଖ୍ୟମନ୍ତ୍ରୀ ଶ୍ରୀ ଚୌଧୁରୀ ଓ କଂଗ୍ରେସ ସଭାପତି ଶ୍ରୀ ବିଶ୍ୱନାଥ ଦାସ ଆଲୋଚନା କରିବାକୁ ଦିଲ୍ଲୀ ଗଲେ । କିନ୍ତୁ ପ୍ରଧାନମନ୍ତ୍ରୀ ରାଜ୍ୟ ପୁନର୍ଗଠନ କମିଶନ ରିପୋର୍ଟ ଗ୍ରହଣ କଲେ ବୋଲି ଘୋଷଣା କଲେ । ଓଡ଼ିଶା ଦାବି ଉପେକ୍ଷିତ ହୋଇଥିଲା ।

ଓଡ଼ିଶା ସମ୍ପର୍କରେ କେନ୍ଦ୍ର ସରକାରଙ୍କର ଏହି ଅନ୍ୟାୟ ପ୍ରତିବାଦରେ ଆରମ୍ଭ ହୋଇଗଲା ବ୍ୟାପକ ଅଶାନ୍ତି ଓ ଗଣ୍ଡଗୋଳ । ଅବସ୍ଥା ଅସମ୍ଭାଳ ହୋଇ ଉଠିଲା । ପୋଲିସକୁ ପୁରୀ ରେଳ ଷ୍ଟେସନ ଓ କଟକ ଆକାଶବାଣୀ କେନ୍ଦ୍ର ନିକଟରେ ଗୁଳି ଚଳାଇବାକୁ ହୋଇଥିଲା । ଏହି ଗୁଳିକାଣ୍ଡରେ ପୁରୀରେ ବେଙ୍ଗ ପାଣିଆ, ଶ୍ରୀ ହରିହର ମହାପାତ୍ର ଓ କଟକରେ ଶ୍ରୀ ସୁନୀଲ କୁମାର ଦେ ପ୍ରାଣ ହରାଇଥିଲେ । ଅବସ୍ଥା ଥିଲା ଆଣାୟତ୍ତ ଓ ଅସମ୍ଭାଳ ।

ଓଡ଼ିଶାବାସୀଙ୍କ ମନରେ ରାଜ୍ୟ ପୁନର୍ଗଠନ କମିଶନଙ୍କ ରିପୋର୍ଟ ଜନିତ ନୈରାଶ୍ୟ, ସୀମା ଆନ୍ଦୋଳନ ହେତୁ ରାଜ୍ୟରେ ବ୍ୟାପକ ବିଶୃଙ୍ଖଳା ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱ ପ୍ରତି ପ୍ରଶ୍ନବାଚୀ ସୃଷ୍ଟି କରିଥିଲା । ଠିକ୍ ଏହି ସମୟରେ 1955 ମସିହା ସେପ୍‌ଟେମ୍ବର ମାସ ପ୍ରଥମ ସପ୍ତାହରେ ଓଡ଼ିଶାରେ ଦେଖା ଦେଲା ପ୍ରଳୟଙ୍କରୀ ବନ୍ୟା ଏବଂ ଦଳେଇ ଘାଇ ବନ୍ଧ ଭାଙ୍ଗି କଟକ ଜିଲ୍ଲାର ବ୍ୟାପକ ଅଞ୍ଚଳରେ କ୍ଷୟକ୍ଷତି ଘଟିଲା । ଦଳମତ ନିର୍ବିଶେଷରେ

ବିଧାନସଭାର ସଭ୍ୟମାନଙ୍କ ମାଧ୍ୟମରେ ରିଲିଫ କାର୍ଯ୍ୟ କରା ହେଉଥିଲା । କିନ୍ତୁ ଅଭିଯୋଗ ହେଲା ଯେ ସରକାର ସର୍ବଗ୍ରାସୀ ବନ୍ୟାର ପ୍ରତିରୋଧ କିମ୍ବା ବନ୍ୟା ପ୍ରକୋପରୁ ଲୋକମାନଙ୍କୁ ରକ୍ଷା କରିବାରେ ସଂପୂର୍ଣ୍ଣ ଅସମର୍ଥ ହୋଇଛନ୍ତି । ଏହା ମଧ୍ୟ ଶ୍ରୀ ଚୌଧୁରୀଙ୍କ ଶାସନ ପ୍ରତି ଥିଲା ଏକ ଶକ୍ତ ଧକ୍କା । ଏତଦ୍‌ବ୍ୟତୀତ ମୁଖ୍ୟମନ୍ତ୍ରୀ ଭାବରେ ଶ୍ରୀ ନବକୃଷ୍ଣ ଚୌଧୁରୀ ସଦା ସର୍ବଦା ନିଜକୁ ଅସହାୟ ମନେ କରୁଥିବାରୁ ଏବଂ ଅନାସକ୍ତ ଭାବ ପ୍ରଦର୍ଶନ କରୁଥିବା ହେତୁ, ତାଙ୍କୁ ପଦଚ୍ୟୁତ କରିବା ସହଜ ହୋଇଥିଲା ବୋଲି ଅନେକଙ୍କର ମତ ଏବଂ ଏଥିନେଇ "ଶ୍ରୀ ମହତାବଙ୍କର କୂଟନୀତି ଫଳପ୍ରଦ ହୋଇଥିଲା" (ନୀଳମଣି ରାଉତରାୟ, ସ୍ମୃତିଅନୁଭୂତି-ପୃଷ୍ଠା287) । ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ଓଡ଼ିଶାର ଶାସନବ୍ୟବସ୍ଥା କିପରି ଭୁଶୁଡ଼ି ପଡ଼ିଥିଲା ଓ ଶ୍ରୀ ଚୌଧୁରୀ କିପରି ଭୂଦାନ ଆନ୍ଦୋଳନରେ ବ୍ୟସ୍ତରହି ଶାସନବ୍ୟବସ୍ଥାରେ ଅବହେଳା ପ୍ରଦର୍ଶନ କରୁଥିଲେ ତାହା ମହତାବ ତାଙ୍କର 'While serving my nation' ପୁସ୍ତକରେ (ପୃଷ୍ଠା 173 - 182) ମଧ୍ୟ ଉଲ୍ଲେଖ କରିଛନ୍ତି ।

1956 ମସିହା ଅକ୍ଟୋବର ମାସ ତୃତୀୟ ସପ୍ତାହରେ ଶ୍ରୀ ଚୌଧୁରୀ ଇସ୍ତଫା ପ୍ରଦାନ କଲେ ଏବଂ ମହତାବ ବମ୍ବେ ରାଜ୍ୟପାଳ ପଦରୁ ଇସ୍ତଫା ଦେଇ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ସମ୍ଭାଳିଲେ ।

ଅକ୍ଟୋବର 19 ତାରିଖ 1956 ମସିହାରେ ମୁଖ୍ୟମନ୍ତ୍ରୀର ଦାୟିତ୍ୱ ଗ୍ରହଣ କରି ଆସନକୁ ଠିକ୍ ବାଟରେ ପରିଚାଳିତ କରିବା ଓ ନିର୍ବାଚନକୁ ସାମନା କରିବା ପରି ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ସଂପାଦନ କରିବାରେ ସେ ବ୍ୟସ୍ତ ରହିଥିଲେ । ନିର୍ବାଚନରେ କଂଗ୍ରେସ ଏକକ ସଂଖ୍ୟାଗରିଷ୍ଠ ଦଳ ହେଲେ ମଧ୍ୟ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ନଥିବା ଫଳରେ ମହତାବଙ୍କୁ ଏକ ସଂଖ୍ୟାଲଘୁ ମନ୍ତ୍ରୀମଣ୍ଡଳ ଗଢ଼ିବାକୁ ହୋଇଥିଲା ।

କଂଗ୍ରେସ ଦଳ କାହିଁକି ନିର୍ବାଚନରେ ଭଲ ଫଳ କରି ନଥିଲା, ତାହାକୁ ଉଲ୍ଲେଖ କରିବାକୁ ଯାଇ ସେ ଲେଖିଛନ୍ତି, " ଏ ନିର୍ବାଚନରେ ମୋର ଅଭିଜ୍ଞତା ହେଲା ଯେ, ସ୍ୱାଧୀନତା ପରେ କଂଗ୍ରେସର ଯେଉଁ ପ୍ରଭାବ ଥିଲା, ତାହା ହ୍ରାସ ପାଇଛି । କଂଗ୍ରେସ ସହିତ ଗାନ୍ଧୀଙ୍କ ନାମ ମିଶି ଅଲକ୍ଷିତ ଭାବରେ ଜନମନରେ ଯେଉଁ ପ୍ରଭାବ ପକାଉଥିଲା, ତାହା ବ୍ୟାପକ ଭୂଦାନ ଆନ୍ଦୋଳନ ଫଳରେ ସଂପୂର୍ଣ୍ଣ ନଷ୍ଟ ହୋଇଯାଇଛି ।"

ନିର୍ବାଚନ ପରେ 6 ଏପ୍ରିଲ 1957 ରେ ସେ ମନ୍ତ୍ରୀମଣ୍ଡଳର ଦାୟିତ୍ୱ ଗ୍ରହଣ କଲେ । ସେହି ସମୟରେ ଓଡ଼ିଶାରେ ପି ଏନ ସାହିତ୍ୟ ସଭାର ଏକ ସର୍ବଭାରତୀୟ ଅଧିବେଶନ ଓଡ଼ିଶାରେ ଅନୁଷ୍ଠିତ ହେଲା । ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ, ପ୍ରଫେସର ହୁମାୟୁନ କବୀର ପ୍ରଭୃତି ଏଥିରେ ଯୋଗ ଦେଇଥିଲେ । ଏହା ଅତ୍ୟନ୍ତ ଉଚ୍ଚକୋଟୀର ହୋଇଥିବାରୁ ସର୍ବଜନ ପ୍ରଶଂସିତ ହୋଇଥିଲା । ଶ୍ରୀ କେ. ଏମ୍. ମୁନ୍‌ସୀଙ୍କ ଅନୁରୋଧ କ୍ରମେ ରାଜନୈତିକ ଅସ୍ଥିରତା ସତ୍ତ୍ୱେ ପୁରୀଠାରେ ବିଶ୍ୱ ସଂସ୍କୃତ ପରିଷଦର ଏକ ଅଧିବେଶନ ମଧ୍ୟ କରିଥିଲେ ।

ଏକ ସଂଖ୍ୟାଲଘୁ ସରକାରର ଶାସନ ଚଳାଇବା ପରିବର୍ତ୍ତେ ମିଳିତ ମନ୍ତ୍ରୀମଣ୍ଡଳ କରି ଶାସନ ଚଳାଇବା ପ୍ରସ୍ତାବକୁ ଅଲ୍ ଇଣ୍ଡିଆ କଂଗ୍ରେସ କମିଟୀ ଗ୍ରହଣ କଲେ ଓ ଓଡ଼ିଶାରେ ତା 22.5.1959 ରେ ପ୍ରଥମ ମିଳିତ ମନ୍ତ୍ରୀମଣ୍ଡଳ ଶପଥ ଗ୍ରହଣ କଲା । କଂଗ୍ରେସ ସହିତ

ଏହି ମନ୍ତ୍ରୀମଣ୍ଡଳରେ ଗଣତନ୍ତ୍ର ପରିଷଦ ସାମିଲ ହେଲା । ସେତେବେଳେ ଭାରତରେ ଅନ୍ୟ କୌଣସି ରାଜ୍ୟରେ କଂଗ୍ରେସ ଗଣତନ୍ତ୍ର ପରିଷଦ ପରି ଏକ ଆଞ୍ଚଳିକ ଦଳ କାହିଁକି, କୌଣସି ବାମପନ୍ଥୀ ମହାଭାରତୀୟ ଦଳ ସହିତ ସୁଦ୍ଧା କୋ-ଆଲିସନ କରି ନଥିଲା । ତଥ୍ୟ ଦୃଷ୍ଟିରୁ ଏହା ହିଁ ଭାରତରେ ଥିଲା ପ୍ରଥମ ମିଳିତ ମନ୍ତ୍ରୀମଣ୍ଡଳ - ତାହା ପୁଣି ଏକ ରାଜ୍ୟ ସ୍ତରୀୟ ଆଞ୍ଚଳିକ ଦଳ ସହିତ ।

1957 ମସିହାଠାରୁ 1961 ପର୍ଯ୍ୟନ୍ତ ମହତାବଙ୍କ ଶାସନ ସମୟରେ ଯେଉଁ କେତେକ ବିକାଶ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା, ତାହା ଉଲ୍ଲେଖନୀୟ । 1957 ଜୁନ୍ 4 ତାରିଖରେ ବ୍ୟବସ୍ଥାପକ ସଭାରେ ଡକ୍ଟର ମହତାବ ତାଙ୍କର ବଜେଟ୍ ଭାଷଣରେ ରାଜ୍ୟର ବିକାଶ ସଂପର୍କରେ ସୂଚନା ଦେଇ କହିଥିଲେ, "ବୁର୍ଲାଠାରେ ଇଞ୍ଜିନିୟରିଂ କଲେଜ ପ୍ରତିଷ୍ଠା କାମ ହାତକୁ ନିଆଯାଇଛି । ଚାନ୍ଦପୁରଠାରେ 150 ଶଯ୍ୟା ବିଶିଷ୍ଟ ଯକ୍ଷ୍ମା ହସ୍‌ପିଟାଲ କାର୍ଯ୍ୟ ଆଗେଇ ଚାଲିଛି । ଭୁବନେଶ୍ୱରରେ କୃଷି କଲେଜ ସ୍ଥାପନ କରାଯାଇଛି ।

ରାଉରକେଲାରେ ଲୁହା କାରଖାନା ହୋଇଛି । ସେଠାରେ ଯବକ୍ଷାର ସାର ଓ ଲୁହା ଚାଦର ତିଆରି କରିବା ନିମନ୍ତେ ଦୁଇଟି କାରଖାନା ସ୍ଥାପନର ବ୍ୟବସ୍ଥା କରାଯାଇଛି. ସୁନ୍ଦରଗଡ଼ରେ ଆଉ ଗୋଟିଏ ସିମେଣ୍ଟ କାରଖାନା ସ୍ଥାପିତ ହୋଇଛି । ଯୋଡ଼ା ଓ ରାୟଗଡ଼ାଠାରେ ଦୁଇଟି ଫେରୋମାଙ୍ଗାନିଜ କାରଖାନା ପ୍ରତିଷ୍ଠା କରାଯାଉଛି । ଶିଳ୍ପର ବିକାଶ ପାଇଁ ରାଜ୍ୟ ଅର୍ଥ କର୍ପୋରେସନ ଗଢ଼ା ଯାଇଛି । କଟକରେ ଗୋଟିଏ ଶିଳ୍ପାଞ୍ଚଳ ଏବଂ ଶିଳ୍ପୋଦ୍ୟୋଗୀଙ୍କୁ ବୈଷୟିକ ସାହାଯ୍ୟ ନିମନ୍ତେ କ୍ଷୁଦ୍ରଶିଳ୍ପ ସାହାଯ୍ୟ ଅନୁଷ୍ଠାନର ଶାଖା ଖୋଲାଯାଇଛି । ବ୍ରହ୍ମପୁର ଓ ଝାରସୁଗୁଡ଼ାରେ ଦୁଇଟି ଇଞ୍ଜିନିୟରିଂ ସ୍କୁଲ ସ୍ଥାପନ କରା ଯାଇଛି ।"

ଡକ୍ଟର ମହତାବଙ୍କ ଶାସନ କାଳରେ କଟକଠାରେ ଥିବା ଇଞ୍ଜିନିୟରିଙ୍ଗ ସ୍କୁଲର ସଂପ୍ରସାରଣ, ହୀରାକୁଦରେ ବହୁମୁଖୀ ଶିଳ୍ପାନୁଷ୍ଠାନ ସ୍ଥାପନ, କଟକରେ ଶିଳ୍ପାଞ୍ଚଳ ସ୍ଥାପନ ପାଇଁ କୋଠାବାଡ଼ି ନିର୍ମାଣ, ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର କୋଠାବାଡ଼ି ନିର୍ମାଣ ଖଲିକୋଟରେ ସରକାରୀ କଳା ବିଦ୍ୟାଳୟ, କଟକରେ ସରକାରୀ ଛାପାଖାନା, କଟକ କଳା ବିକାଶ କେନ୍ଦ୍ରର ନିଜସ୍ୱ ଗୃହ ନିର୍ମାଣର ଶିଳାନ୍ୟାସ, ରାଉରକେଲା ଇସ୍ପାତ କାରଖାନା ଓ ପାରାଦ୍ୱୀପ ବନ୍ଦର ପାଇଁ ଉଦ୍ୟମ ଏବଂ କେନ୍ଦୁଝର, ସୁନ୍ଦରଗଡ଼, ବାଲେଶ୍ୱର, ବଲାଙ୍ଗୀର, ଭବାନୀପାଟଣା, ବରଗଡ଼, ଅନୁଗୁଳ, ଢେଙ୍କାନାଳ, ଫୁଲବାଣୀ ଓ ଜୟପୁରଠାରେ କଲେଜମାନ ପ୍ରତିଷ୍ଠା କରି ଓଡ଼ିଶାରେ ବ୍ୟାପକ ଶିକ୍ଷାର ବିସ୍ତାର, ବାରବାଟୀ ଷ୍ଟାଡ଼ିୟମ, କଟକ ବେତାର କେନ୍ଦ୍ର ଇତ୍ୟାଦି ଉଲ୍ଲେଖନୀୟ ସଫଳତା ।

1961 ଫେବୃୟାରୀ 25 ତାରିଖରେ ମିଳିତ ମନ୍ତ୍ରୀମଣ୍ଡଳର ପତନ ଘଟି ଡକ୍ଟର ମହତାବଙ୍କ ସ୍ୱପ୍ନ, ସଂକଳ୍ପ ଓ ସଂଗ୍ରାମମୟ ଶାସନର ପରିସମାପ୍ତି ଘଟିଥିଲା ।

ମହତାବଙ୍କର ଏହି ମିଳିତ ମନ୍ତ୍ରୀମଣ୍ଡଳରେ ମହତାବଙ୍କ ନେତୃତ୍ୱରେ ସଫଳତା ସତ୍ତ୍ୱେ ନୀତିହୀନ ରାଜନୀତିର ଏକ ସ୍ଥିତି ପ୍ରତି ସୁରେନ୍ଦ୍ର ମହାନ୍ତି ଦୃଷ୍ଟି ନିକ୍ଷେପ କରି ଲେଖିଛନ୍ତି, "ମହତାବବାବୁ ସେତେବେଳେ ତାଙ୍କ ଦଳ ଭିତରେ ନିଜକୁ ନିତାନ୍ତ ଅସହାୟ ମନେ କରୁଥାନ୍ତି । ପ୍ରକୃତରେ ବୀରେନ ମିତ୍ରଙ୍କର ନିଷ୍ପତ୍ତିକୁ ମହତାବବାବୁ କାର୍ଯ୍ୟକାରୀ କରିବା

ପାଇଁ ବାଧ୍ୟ ହେଉଥାନ୍ତି । କାରଣ ସେତେବେଳେ ଶାସନ କ୍ଷମତାରେ ମହତାବଙ୍କ ପ୍ରତିଷ୍ଠା ବହୁ ପରିମାଣରେ ବୀରେନ ମିତ୍ରଙ୍କ ଉପରେ ନିର୍ଭର କରୁଥିଲା । ତାଙ୍କୁ ତେଣୁ ମୁଖ୍ୟମନ୍ତ୍ରୀ ପଦ ରଖିବା ପାଇଁ ଯେଉଁ ଘୋଡ଼ା ବେପାର ଚଳାଇବାକୁ ପଡୁଥିଲା, ବୀରେନ ବାବୁ ଓ ବିଜୁବାବୁ ଥିଲେ ତାହାର ମେନ ସ୍ପ୍ରିଙ୍ଗ୍ । ଓଡ଼ିଶାର ରାଜନୀତିକୁ ସେହି ଦିନଠାରୁ ଘୋଡ଼ା ବେପାର ଅନୁପ୍ରବେଶ କରିଛି ଓ ସେଥି ସହିତ ରାଜନୈତିକ ଦୁର୍ନୀତି ବି ।"

୧୯୬୧ ମସିହାରେ କଂଗ୍ରେସ ସଭାପତି ଥିଲେ ଶ୍ରୀ ବନମାଳୀ ପଟ୍ଟନାୟକ । ତାଙ୍କ ବିରୋଧରେ ଅନାସ୍ଥା ପ୍ରସ୍ତାବ ଆଣିବା ପାଇଁ ପ୍ରଦେଶ କଂଗ୍ରେସ କମିଟୀର ଗୋଟିଏ ବରାଦୀ ବୈଠକ ଆହୁତ ହେଉ ବୋଲି ଦାବି କରି ଦସ୍ତଖତ ସଂଗ୍ରହ ଅଭିଯାନ ଚାଲିଲା । କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷ ନିଜ ସପକ୍ଷରେ ଗୋଟିଏ ଆସ୍ଥାସୂଚକ ପ୍ରସ୍ତାବ ଆଣିବାକୁ ବନମାଳୀ ବାବୁଙ୍କୁ ପରାମର୍ଶ ଦେଲେ । ପ୍ରସ୍ତାବ ଉପରେ ଭୋଟ ନିଆଯିବାରୁ ବନମାଳୀ ବାବୁ ହାରିଗଲେ ଏବଂ ସେହି ବୈଠକରେ ବିଜୁ ପଟ୍ଟନାୟକ କଂଗ୍ରେସ ସଭାପତି ହେଲେ ।

ମିଳିତ ମନ୍ତ୍ରୀମଣ୍ଡଳର କାର୍ଯ୍ୟକଳାପରେ ସଂପୂର୍ଣ୍ଣ ଅସନ୍ତୁଷ୍ଟ ଶ୍ରୀ ବିଜୁପଟ୍ଟନାୟକଙ୍କ ମନ୍ତ୍ରୀମଣ୍ଡଳରୁ କଂଗ୍ରେସକୁ ଓହରାଇ ଆଣି ମନ୍ତ୍ରୀମଣ୍ଡଳର ପତନ ଘଟାଇବା ପାଇଁ ଆଲୋଚନା ହେଲା । ଏହା ନିଷ୍ପତ୍ତି ଆକାରରେ ଗୃହୀତ ହେବା ପରେ ସଭାପତି ଶ୍ରୀ ପଟ୍ଟନାୟକ ବିଧାନସଭାରେ କଂଗ୍ରେସ ଦଳର ନେତା ମୁଖ୍ୟମନ୍ତ୍ରୀ ଶ୍ରୀ ମହତାବଙ୍କୁ ଜଣାଇଲେ । ମହତାବ କଂଗ୍ରେସ ବିଧାୟକମାନଙ୍କର ବୈଠକ ଡାକି ଏ ସଂପର୍କରେ ଆଲୋଚନା କଲେ କାରଣ ସେତେବେଳକୁ ବିଧାନସଭାରେ ବଜେଟ୍ ଅଧିବେଶନ ଆହୁତ ହୋଇ ସାରିଥାଏ । ଏ ସଂପର୍କରେ ଅଖିଳ ଭାରତ କଂଗ୍ରେସ କମିଟୀର ସଭାପତିଙ୍କ ପରାମର୍ଶ ଲୋଡ଼ା ଗଲା । କଂଗ୍ରେସ ସଭାପତି ଶ୍ରୀ ସଂଜିବ ରେଡ୍ଡି ତରବରିଆ କିଛି ନ କରିବାକୁ ମହତାବଙ୍କୁ ପରାମର୍ଶ ଦେଲେ କିନ୍ତୁ ଏହା ଶ୍ରୀ ବିଜୁ ପଟ୍ଟନାୟକଙ୍କର ମନକୁ ଘେନା ହେଲା ନାହିଁ । ସେ ଗୋପନ ବୈଠକ କରିବାକୁ ଆରମ୍ଭ କଲେ ଏବଂ ବିଧାନ ସଭା ବସିବାର ପ୍ରଥମ ଦିନ କେତେକ କଂଗ୍ରେସ ସଭ୍ୟ ଅପ୍ରୀତିକର ଓ ଆବାଞ୍ଛିତ ପରିସ୍ଥିତି ସୃଷ୍ଟି କରିବେ ବୋଲି ଜଣା ଗଲା । ମହତାବ ଏହା ଜାଣି ନିଜର ଇସ୍ତଫା ରାଜ୍ୟପାଳଙ୍କୁ ଦେଲେ ।

ତାଙ୍କର ସହକର୍ମୀ ଡକ୍ଟର ରାଧାନାଥ ରଥଙ୍କ ମତରେ "ତାଙ୍କ କର୍ମମୟ ଜୀବନ ହେଉଛି ଆମ ଦେଶ ଓ ରାଜ୍ୟର ସ୍ୱାଧୀନତା ପୂର୍ବ ଓ ସ୍ୱାଧୀନୋତ୍ତର ଯୁଗର ଏକ ପୂର୍ଣ୍ଣାଙ୍ଗ ଓ ସମନ୍ୱିତ ଇତିବୃତ୍ତ । ରାଜନୈତିକ ବାଦ ବିବାଦ ମଧ୍ୟରେ ଲଢୁଆ ମନୋବୃତ୍ତି ନେଇ ସେ ତାଙ୍କର ଜୀବନ କଟାଇ ଥିଲେ । ଜଣେ ନେତାଙ୍କଠାରେ ଯେଉଁ ସବୁ ଗୁଣ ଦରକାର, ସେ ସବୁର ସେ ଅଧିକାରୀ ଥିଲେ ।"

ମଣିପୁରର ପୂର୍ବତନ ରାଜ୍ୟପାଳ ଓ ମହତାବଙ୍କର ଅନ୍ୟତମ ପ୍ରିୟ ଶିଷ୍ୟ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ଲେଖିଛନ୍ତି "ତାଙ୍କର ଜୀବନଯାତ୍ରା ଥିଲା ସଂଗ୍ରାମରୁ ସଂଗ୍ରାମକୁ । ସତେ ଯେମିତି ବିନା ସଂଗ୍ରାମରେ ତାଙ୍କର ଜୀବନକୁ ସେ ସାର୍ଥକ ମଣୁ ନଥିଲେ । ସେ ସବୁବେଳେ ନୂତନକୁ ଅଭିନନ୍ଦନ କରୁଥିଲେ, ଯାହାର ମୂଲ୍ୟବୋଧ ତାଙ୍କର ସମସାମୟିକ ବ୍ୟକ୍ତିମାନେ ସହଜରେ ହୃଦୟଙ୍ଗମ କରି ପାରୁନଥିଲେ । ତେଣୁ ତାଙ୍କର ଅସରନ୍ତି କାର୍ଯ୍ୟ ସାଧନରେ ସେ ଥିଲେ ଶତ ସଂଗ୍ରାମର ବିଜୟୀ ସେନାପତି ।"

ମିଳିତ ମନ୍ତ୍ରୀମଣ୍ଡଳର ପତନ ପରେ ସେ ୧୯୬୬ ରେ ଲୋକସଭାକୁ ଓ ପରେ ବିଧାନସଭାକୁ ଦୁଇଥର ନିର୍ବାଚିତ ହୋଇଥିଲେ । ୧୯୬୭ ଓଡ଼ିଶାର ନିର୍ବାଚନରେ ମହତାବ

ଜନ କଂଗ୍ରେସ ଦଳଗଢ଼ି ତାହାର ନେତୃତ୍ୱ ନେଇ ଥିଲେ ହେଁ ସରକାରରେ ଯୋଗ ଦେଇ ନଥିଲେ । 1977 ପର୍ଯ୍ୟନ୍ତ ମହତାବ ବିଧାନ ସଭାର ସଭ୍ୟ ରହିଥିଲେ । ଉତ୍ଥାନ ପତନ ରାଜନୀତି ମଧ୍ୟରେ ସେ କୌଣସି ନିର୍ବାଚନରେ ପରାଜିତ ହୋଇ ନାହାଁନ୍ତି । କେନ୍ଦ୍ରଠାରୁ ରାଜ୍ୟ ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରି କ୍ଷମତା ପାଇଁ ସେ କାହାକୁ ସାଲିସ କରି ନାହାଁନ୍ତି । ଏପରିକି 1975 ରେ ଜରୁରୀକାଳୀନ ପରିସ୍ଥିତି ଜାରି ହେବା ବେଳେ ସେ ତାହାର ତୀବ୍ର ନିନ୍ଦା କରିଥିଲେ । ଏ ସଂପର୍କରେ ଜନମତ ସୃଷ୍ଟି କରିବା ପାଇଁ ପ୍ରବନ୍ଧ ଲେଖିଥିଲେ । ଯାହାର ଫଳ ହେଲା 19 ମାସ ଜେଲଦଣ୍ଡ । ସ୍ୱାଧୀନ ଭାରତକୁ ସମୃଦ୍ଧ କରି ଗଢ଼ିବା ପାଇଁ ସ୍ୱପ୍ନ ଦେଖିଥିବା, ସ୍ୱପ୍ନକୁ କାର୍ଯ୍ୟରେ ରୂପାନ୍ତରିତ କରିଥିବା ଜଣେ ବରିଷ୍ଠ, ବରେଣ୍ୟ ଓ ବର୍ଷୀୟାନ ରାଷ୍ଟ୍ରନୀତିଜ୍ଞଙ୍କୁ ପୁଣି ଥରେ ଜେଲ ଭିତରେ ସାଧାରଣ ବନ୍ଦୀ ଭାବରେ ଜୀବନ କଟାଇବାକୁ ହୋଇଥିଲା । ଏହା କ'ଣ ବିଧିର ବିଧାନ କିମ୍ବା ନୈତିକତା ବିହୀନ ରାଜନୀତିର ପ୍ରତିଫଳନ ।

ମହତାବ ବିଚକ୍ଷଣ ରାଜନୀତିଜ୍ଞ ଥିବାରୁ ଓ ଓଡ଼ିଶା ରାଜନୀତିର କେନ୍ଦ୍ରବିନ୍ଦୁରେ ରହିଥିବାରୁ ତାଙ୍କର ଅନେକ ସହକର୍ମୀ ତାଙ୍କ ବିରୋଧରେ ବହୁ ସମୟରେ କାର୍ଯ୍ୟ କରିଥିଲେ । ଓଡ଼ିଶା ରାଜନୀତିରେ 'ଯେସାକୁ ତେସା' ନୀତି ଦୀର୍ଘଦିନ ଧରି ଚଳିଆସୁଛି ଏବଂ ଏହାର ଫଳସ୍ୱରୂପ ବହୁ ମୁଖ୍ୟମନ୍ତ୍ରୀଙ୍କ ବିରୋଧରେ ଦୁର୍ନୀତି ଅଭିଯୋଗ ହୋଇ କମିଶନମାନ ବସାଯାଇଛି । ମହତାବ ମଧ୍ୟ ଏଥିରୁ ବାଦ ପଡ଼ି ନାହାନ୍ତି । ସ୍ୱତନ୍ତ୍ର-ଜନ କଂଗ୍ରେସର ମିଳିତ ମନ୍ତ୍ରୀମଣ୍ଡଳ ଥିବା ସମୟରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ 1968 ମସିହା ମେ ମାସରେ ସୁପ୍ରିମ କୋର୍ଟର ଅବସର ପ୍ରାପ୍ତ ବିଚାରପତି ଶ୍ରୀ ଜେ.ଆର. ମୁଧଲକରଙ୍କୁ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀଙ୍କଠାରୁ ପାଇଥିବା ଅଭିଯୋଗ ପତ୍ର ଉପରେ ତଦନ୍ତ କରିବାକୁ ନିର୍ଦ୍ଦେଶ ଦେଇଥିଲେ । କଂଗ୍ରେସ ବିଧାୟକ ଦଳର 25 ଜଣ ବିଧାୟକ ପୂର୍ବତନ ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀମାନଙ୍କ ବିରୋଧରେ ଏହି ଅଭିଯୋଗ ପଠାଇଥିଲେ ।

ବିଚାରପତି ମୁଧଲକର ତାଙ୍କ ରିପୋର୍ଟରେ ଡକ୍ଟର ମହତାବଙ୍କ ବିରୋଧରେ ଅଭିଯୋଗ ରହିଥିବାର ଉଲ୍ଲେଖ କରି ଅଧିକ ତଦନ୍ତ ପାଇଁ ସୁପାରିଶ କରିଥିଲେ । ଶ୍ରୀ ସିଂହଦେଓ ରାଜସ୍ଥାନ ଓ ଆସାମ ହାଇକୋର୍ଟର ପୂର୍ବତନ ମୁଖ୍ୟ ବିଚାରପତି ସରଜୁ ପ୍ରସାଦଙ୍କୁ ଜଣିକିଆ କମିଶନ ନିଯୁକ୍ତ କରିଥିଲେ । ସରଜୁ ପ୍ରସାଦ ଡକ୍ଟର ମହତାବଙ୍କୁ ଦୋଷୀ ଭାବରେ ଅଭିଯୁକ୍ତ କରି 1972 ମେ 25 ତାରିଖରେ ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କୁ ରିପୋର୍ଟ ଦେଇଥିଲେ । 1973 ଜାନୁଆରୀ ମାସରେ ଶ୍ରୀମତୀ ନନ୍ଦିନୀ ଶତପଥୀ ଏହା ଉପରେ କାର୍ଯ୍ୟାନୁଷ୍ଠାନ ପାଇଁ କେନ୍ଦ୍ର ତଦନ୍ତ ବ୍ୟୁରୋକୁ ଦାୟିତ୍ୱ ଦେଲେ । ସିବିଆଇ ପକ୍ଷରୁ ମହତାବଙ୍କ ବିରୋଧରେ ଚାର୍ଜଫ୍ରେମ କରାଯାଇ ମକଦମା ଆଗତ ହେଲା । ଏହି ମକଦମା ଦୀର୍ଘଦିନ ଚାଲିଥିଲା ଏବଂ ଶେଷରେ 1981 ମସିହା ସେପ୍ଟେମ୍ବର ୨ ତାରିଖରେ ଓଡ଼ିଶା ହାଇକୋର୍ଟରେ ସ୍ୱତନ୍ତ୍ର ଜଜ୍‌ଙ୍କର ଆଦେଶକୁ ନାକଚ କରି ରାୟ ପ୍ରକାଶ ପାଇଲା । ମାନ୍ୟବର ବିଚାରପତି ଦ୍ୱୟ ସେହି ରାୟରେ ଲେଖିଥିଲେ, "ଡକ୍ଟର ମହତାବଙ୍କୁ ଏବେ ୫୦ ବର୍ଷ ଅତିକ୍ରମ କରିଛି ଓ ସେ ସକ୍ରିୟ ରାଜନୀତିରେ ନାହାଁନ୍ତି । ଅଧିକନ୍ତୁ ଏହି ମକଦମାରେ ଯେଉଁମାନେ ମୁଖ୍ୟ ସାକ୍ଷୀ ଭାବରେ ସରକାରଙ୍କ ପକ୍ଷରୁ କୋର୍ଟରେ ସାକ୍ଷ୍ୟ ଦେବା କଥା ସେମାନଙ୍କ ମଧ୍ୟରୁ ତଦାନୀନ୍ତନ କେନ୍ଦ୍ରମନ୍ତ୍ରୀ ଶ୍ରୀ କେ.ଡ଼ି. ମାଲବ୍ୟ ଓ ରାଜ୍ୟ ଶିଳ୍ପ ଓ ଖଣି ମନ୍ତ୍ରୀ ଶ୍ରୀ ଦୀନବନ୍ଧୁ ସାହୁ ଏବେ ଇହଜଗତରେ ନାହାଁନ୍ତି । ଏହି ପରିପ୍ରେକ୍ଷୀରେ ମକଦମା ଚାଲିଲେ ସୁଦ୍ଧା ନ୍ୟାୟବିଚାର ଠିକ୍ ରୂପେ ହୋଇ ପାରିବ ନାହିଁ ।"

ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଏହି ରାୟକୁ ଲକ୍ଷ୍ୟ କରି 'ସମାଜର' ସେପ୍‌ଟେମ୍ବର 16 ତାରିଖରେ ବିବୃତି ଦେଇ କହିଥିଲେ, "ଓଡ଼ିଶା ହାଇକୋର୍ଟ ତାଙ୍କ ରାୟରେ ଲେଖିଛନ୍ତି, "ହରେକୃଷ୍ଣ ମହତାବ ଆଉ ସକ୍ରିୟ ରାଜନୀତିରେ ନାହାଁନ୍ତି, ମୁଁ ମଧ୍ୟ ରାଜନୀତିରେ ଥାଇ ନଥିଲା ପରି । ମହତାବ ବାବୁଙ୍କ ପରି ଜଣେ ପ୍ରତିଷ୍ଠିତ ନେତା ମକଦମା ଜଞ୍ଜାଳରୁ ମୁକ୍ତ ହେଲେ, ଏହା ଏକ ଆଶ୍ୱସ୍ତିର କଥା । ମାତ୍ର ତାଙ୍କ ବିରୋଧରେ ହୋଇଥିବା ଦୁର୍ନୀତି ଅଭିଯୋଗ ଯେ ଅମୀଂମାସିତ ହୋଇ ରହିଗଲା, ଏହା ଅତ୍ୟନ୍ତ ଦୁର୍ଭାଗ୍ୟଜନକ ।"

ମହତାବଙ୍କ ରାଜନୈତିକ ଜୀବନର ଅନ୍ୟ ଏକ ଅପମାନଜନକ ଘଟଣା ଥିଲା ତାଙ୍କୁ କଂଗ୍ରେସରୁ ବହିଷ୍କାର । 1972 ମସିହା ଡିସେମ୍ବର ମାସ ତିନି ତାରିଖ ଦିନ ଦଳ ବିରୋଧୀ କାର୍ଯ୍ୟ ପାଇଁ ମହତାବଙ୍କୁ କଂଗ୍ରେସରୁ ସସ୍‌ପେଣ୍ଡ କରା ଯାଇଥିଲା । ତାଙ୍କ ବିରୋଧରେ ଅଭିଯୋଗ ଥିଲା ଯେ ସେ କଟକ ଉପନିର୍ବାଚନରେ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଦେଖାକରି ନନ୍ଦିନୀ ଦେବୀଙ୍କୁ ହରାଇବା ପାଇଁ ଚେଷ୍ଟା କରିଥିଲେ । ନନ୍ଦିନୀ ଦେବୀଙ୍କ ସପକ୍ଷରେ ତାଙ୍କୁ ସମର୍ଥନ କରି ନିବେଦନ ପତ୍ର ଦେବା ପାଇଁ ପ୍ରଦେଶ କଂଗ୍ରେସ କମିଟୀର ଅନୁରୋଧକୁ ସେ ରକ୍ଷା କରି ନଥିଲେ । ଏଥିପାଇଁ ମହତାବଙ୍କୁ କୈଫିୟତ ମଗା ଯାଇଥିଲା । ମହତାବ କୈଫିୟତ ଦେବା ବଦଳରେ ଏକ ଅଭିଯୋଗ ପୂର୍ଣ୍ଣ ଚିଠି ଲେଖିଥିଲେ । ସେ ସେହି ଚିଠିରେ ବିଜୁ ପଟ୍ଟନାୟକଙ୍କୁ ସାକ୍ଷାତ କରିବା ଆଦୌ ଗର୍ହିତ ବା ଦଳ ବିରୋଧୀ ନୁହେଁ ବୋଲି ଉଲ୍ଲେଖ କରିବା ସହିତ ଅନ୍ୟ ବହୁ କଂଗ୍ରେସ ନେତା ଏପରିକି ଶ୍ରୀମତୀ ନନ୍ଦିନୀ ସେହି ସମୟରେ ତାଙ୍କୁ ସାକ୍ଷାତ କରିବାର ଉଲ୍ଲେଖ କରିଥିଲେ ।

1975 ମସିହା ଜୁନ୍ 25 ତାରିଖରେ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ପରାମର୍ଶ କ୍ରମେ ଦେଶରେ ଜରୁରୀକାଳୀନ ପରିସ୍ଥିତି ଜାରି ହେଲା ଏବଂ ଓଡ଼ିଶାରେ ମହତାବଙ୍କୁ ଗିରଫ କରି ଭଞ୍ଜନଗର ଜେଲରେ ରଖାଗଲା ।

ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବା ଦିନଠାରୁ ପ୍ରତ୍ୟକ୍ଷ ରାଜନୀତିରୁ ଅବ୍ୟାହତି ନେବା ପର୍ଯ୍ୟନ୍ତ ମହତାବଙ୍କୁ ବହୁ ଅପମାନଜନକ ସ୍ଥିତି ମଧ୍ୟଦେଇ ଯିବାକୁ ହୋଇଥିଲା ।ତା' ସତ୍ତ୍ୱେ ସେ ଦେଶ ମାତୃକାର ସେବା ପାଇଁ ନିଜର ସଂକଳ୍ପରୁ ଓହରିଯାଇ ନଥିଲେ । ଏହା ହିଁ ଥିଲା ତାଙ୍କ ଚରିତ୍ରର ମହାନତା ଓ ବିଶେଷତ୍ୱ ।

ମହତାବଙ୍କ ଜେଲ ଜୀବନ, ତାଙ୍କର ସାହିତ୍ୟିକ ଓ ସାମ୍ବାଦିକ ଜୀବନକୁ କରିଛି ଋଦ୍ଧିମନ୍ତ । ତାଙ୍କର ରାଜନୈତିକ ବିଚାର ମଧ୍ୟରେ ସାହିତ୍ୟ ଯେପରି ଓତଃପ୍ରୋତ ଜଡ଼ିତ ହୋଇ ରହିଛି, ସାହିତ୍ୟ ମଧ୍ୟରେ ରାଜନୀତି ମଧ୍ୟ ନିଆରା ହୋଇ ଦେଖାଯାଏ । ସେ ସକ୍ରିୟ ରାଜନୀତିରୁ ନିଜକୁ ଓହରାଇ ନେଇ ନିଜର ଦ୍ୱିତୀୟ ପ୍ରେମିକା ରୂପେ ପରିଚିତ ସାହିତ୍ୟିକ-ଜୀବନକୁ ଫେରି ଆସିଲେ, ବୋଲି କହି ଥିଲେ ମଧ୍ୟ ଓଡ଼ିଶାର ଅଗଣିତ ସାଧାରଣ ମଣିଷର ଆଶାଭରସା ଓ ଆଶ୍ୱାସନାର ମାଧ୍ୟମ ପାଲଟି ଯାଇଛନ୍ତି । ଯେତେବେଳେ ଦେଶର ରାଜନୀତି, ଅର୍ଥନୀତି ଓ ସାମାଜିକ ଅବସ୍ଥା ଏକ ଘଡ଼ି ସନ୍ଧି ବେଳେ ପହଞ୍ଚିଛି, ସେତେବେଳେ ସେ ଗୋଟିଏ ପାଖରେ ଠିଆ ହୋଇଛନ୍ତି କାରଣ ତାଙ୍କ ପାଇଁ ମଝିମଝିଆ କିଛି ନାହିଁ । ସେହି ପାଖଟି ହୋଇଛି ସାଧାରଣ ମଣିଷ, ଦୁଃଖ କଷ୍ଟ ନିର୍ଯ୍ୟାତନା ଭୋଗୁଥିବା ନିଃସହାୟ ମଣିଷଟିର ପାଖ । ବନ୍ଧୁ, ସଖା, ଅଗ୍ରଜ, ଜେଜେ, ଅଜା ବା ଗ୍ରେଟ ଗ୍ରାଣ୍ଡଫାଦର ଭାବରେ ଠିଆ ହୋଇ ମହତାବ ମାର୍ଗ ଚିହ୍ନିତ କରିଛନ୍ତି । ନିଜର ଆତ୍ମାପୁରୁଷକୁ ଓଡ଼ିଶାର ଆତ୍ମା ସହିତ ସାମିଲ କରିଛନ୍ତି ।

## 6

# ପ୍ରଜାତନ୍ତ୍ର ଓ ପ୍ରଜାତନ୍ତ୍ର ପ୍ରଚାର ସମିତିର ସ୍ରଷ୍ଟା

କାନ୍ତକବି ଲକ୍ଷ୍ମୀକାନ୍ତ ଲେଖିଥିଲେ,

"କି କ୍ଷଣେ ଜନମ ଲଭି ଶ୍ମଶାନର କୋଳେ
ନିର୍ଜୀବ ସୁଷୁପ୍ତି ପ୍ରାଣେ କରିଲ ଅର୍ପଣ
ସଞ୍ଜିବନୀ ସୁଧା ଆଣି ନବଜାଗରଣ
'ପ୍ରଜାତନ୍ତ୍ର' ଯୁଗବାଣୀ ପରାୟେ ଉତ୍କଳେ ।"

ସ୍ୱାଧୀନତା ସଂଗ୍ରାମର ଯଜ୍ଞକୁଣ୍ଡରୁ ପ୍ରଜାତନ୍ତ୍ରର ଜନ୍ମ । କିପରି, କେଉଁ ପରିସ୍ଥିତିରେ ପ୍ରଜାତନ୍ତ୍ର ଜନ୍ମ ଲାଭ କଲା ଓ କିଭଳି ଅବସ୍ଥା ଦେଇ ଗତି କରିଛି, ତାହା ବାସ୍ତବିକ ପ୍ରଣିଧାନ ଯୋଗ୍ୟ । ମହତାବଙ୍କ ନିଜ ଭାଷାରେ, "ଅସହଯୋଗ ଆନ୍ଦୋଳନରେ ଯେତେବେଳେ ଯୋଗ ଦେଲି, ସେତେବେଳେ ଅନ୍ୟ କୌଣସି ଦିଗ ନଭାବି ସେଥିରେ ମାତିଲି । ପୁଣି ସେ ଆନ୍ଦୋଳନ ଯେତେବେଳେ 1922 ମସିହାରେ ବନ୍ଦହେଲା ସେତେବେଳେ ସମ୍ବାଦ ପତ୍ରଟିଏ ବାହାର କରିବା କଥା ମୋର କଳ୍ପନାରେ ମଧ୍ୟ ନଥିଲା । ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀ ଓ ନିରଞ୍ଜନ ପଟ୍ଟନାୟକ ମୋରି ଉପରେ ପ୍ରଚାର ଭାର ଦେଇ ଏକ ପତ୍ରିକା ପ୍ରକାଶ କରିବା ପାଇଁ ପରାମର୍ଶ ଦେଲେ । ଖ୍ରୀ 1923ରେ କଟକରେ ମୁକୁର ପ୍ରେସରେ ମୁଦ୍ରିତ ହୋଇ ଚାରି ପୃଷ୍ଠାର ସାପ୍ତାହିକ 'ପ୍ରଜାତନ୍ତ୍ର' ପ୍ରକାଶିତ ହେଲା । ବୀରକିଶୋର ଦାସ ଏହାର ମୁଦ୍ରାକର ଥିଲେ । ମୁଁ ଥିଲି ତାର ସଂପାଦକ । ତା'ପରେ 1924 ମସିହାରେ ଏହା ବାଲେଶ୍ୱର ଟାଉନ୍ ପ୍ରେସରୁ ମୁଦ୍ରିତ ହୋଇ ପ୍ରକାଶିତ ହେଲା ।"

ଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ ବାଲେଶ୍ୱର ଆସିବା ସମୟରେ ପରାମର୍ଶ ଦେଇଥିଲେ । 'ପ୍ରଜାତନ୍ତ୍ର'କୁ ଅନ୍ୟ ପ୍ରେସରେ ନଛପାଇ ନିଜର ଏକ ପ୍ରେସ କରାଯାଉ । ଏହା କହିବାର ଉଦ୍ଦେଶ୍ୟ ଥିଲା ସେଥିରୁ କିଛି ଲାଭ ହେବ ଏବଂ ପତ୍ରିକାଟି ସୁରୁଖୁରୁରେ ବାହାରିବ । ସେ ଏକ ହ୍ୟାଣ୍ଡପ୍ରେସ ଓ ଅନ୍ୟାନ୍ୟ ଜିନିଷ ପାଇଁ ପାର୍ଶଲ ଲେଖି ଦେଲେ; ଯାହାର ମୋଟ ଦାମ୍ ଥିଲା 1600 ଟଙ୍କା । ମହତାବ ତାଙ୍କ ଗାଁର ମହାଜନଠାରୁ 2040 ଟଙ୍କାର ଏକ ହ୍ୟାଣ୍ଡନୋଟ ଲେଖି କରଜ ଆଣି ପାର୍ଶଲ ଛଡ଼ାଇଲେ । ମୁଦ୍ରାକର ହେଲେ ବିଶ୍ୱନାଥ ହୋତା ।

ଶ୍ରୀ କରୁଣାକର ପାଣିଗ୍ରାହୀ, କମଳାକାନ୍ତ ମହାପାତ୍ର ଓ ରମେଶ ଚ଼ନ୍ଦ୍ର ମହାନ୍ତି ପରେ ଏହାର ସଂପାଦକ ହୋଇ ଜେଲ ଯାଇଥିଲେ ।

ମହତାବଙ୍କ ଭାଷାରେ, " ଏହା କ୍ଷୁଦ୍ର ଥିଲେ ମଧ୍ୟ ଏହାର ବିଷ ଉତ୍କଟତର ଥିଲା । ସୋନପୁର ଶାସନର ସମାଲୋଚ଼କ ଥିଲା । ଏହି କ୍ଷୁଦ୍ର ପତ୍ରିକାଟି 1927ରେ ନୀଳଗିରି ଆନ୍ଦୋଳନର ମୁଖ୍ୟପତ୍ର ହୋଇଥିଲା । ଏଥିପାଇଁ ତତ୍‌କାଳୀନ ଆଇନ୍ ଅନୁସାରେ ପତ୍ରିକାଟି ନାମରେ ମୋକଦମା ମଧ୍ୟ ହୋଇ ଥିଲା । ସେଥିରେ ପତ୍ରିକା ଦୋଷମୁକ୍ତ ହୋଇଥିଲା । 1930 ରେ ଲବଣ ସତ୍ୟାଗ୍ରହର କ୍ଷେତ୍ର ପ୍ରସ୍ତୁତ କରିଥିଲା ଦୈନିକ ଆକାରରେ ଏହି କ୍ଷୁଦ୍ର ପତ୍ରିକା । 1932 ସତ୍ୟାଗ୍ରହ ସମୟରେ ଏ ପତ୍ରିକା ସରକାରଙ୍କ ଦ୍ୱାରା ବ୍ୟାଜ୍ୟାପ୍ତ ହେଲା । ଖ୍ରୀ 1933 ରେ ପ୍ରେସ ଅଫିସ ଏବଂ ପ୍ରେସକୁ ଆଇନ ଅନୁସାରେ ସରକାର ଜବତ କଲେ । ସମ୍ବାଦପତ୍ରକୁ ଦବାଇବା ପାଇଁ ଆୟକର ମଧ୍ୟ ଏହା ଉପରେ ଲାଗୁ ହୋଇଥିଲା । ପତ୍ରିକାଟି ଆଉ ଚାଲିବାର ସମ୍ଭାବନା ରହିଲା ନାହିଁ । ସେତେବେଳେ ପ୍ରଜାତନ୍ତ୍ର ଥିଲା ଓଡ଼ିଶାର ସମ୍ବାଦପତ୍ର କ୍ଷେତ୍ରରେ ପ୍ରଥମ ଫ୍ଲେଟବେଡ୍ ପ୍ରେସ । ଅବଶ୍ୟ ହସ୍ତଚାଳିତ । ଏହାକୁ ଟାଉନବସକୁ ବିକି ଦିଆହେଲା ।"

ସ୍ୱାଧୀନତାର ଯଜ୍ଞକୁଣ୍ଡରୁ ଜନ୍ମଲାଭ କରିଥିବା ପ୍ରଜାତନ୍ତ୍ରରୁ ଦେଶାତ୍ମବୋଧର ତୂର୍ଯ୍ୟନାଦ ହୋଇଥିଲା । ଏହା ରାଜା ଜମିଦାର ଓ ଇଂରେଜ ଶାସକଙ୍କ ମନରେ ସୃଷ୍ଟି କରିଥିଲା ଅହେତୁକ ଭୟ । ବ୍ୟକ୍ତି ସ୍ୱାର୍ଥ, ପାରିବାରିକ ସ୍ୱାର୍ଥ, ଦଳୀୟ ସ୍ୱାର୍ଥ, ଗୋଷ୍ଠୀସ୍ୱାର୍ଥଠାରୁ ବହୁ ଉର୍ଦ୍ଧ୍ୱରେ ରହି ଏହା ଜନମତକୁ ପ୍ରତିଫଳିତ କରୁଥିଲା ।

ପ୍ରଜାତନ୍ତ୍ର ମାଧ୍ୟମରେ ଡକ୍ଟର ମହାତାବ ଜଣେ ଉଚ୍ଚକୋଟୀର ସାମ୍ବାଦିକ ଭାବରେ ପରିଦୃଶ୍ୟ ହେଲେ । ନିଜର ସାମ୍ବାଦିକତା ସଂପର୍କରେ ଉଲ୍ଲେଖ କରି ସେ କହନ୍ତି, "ସେତେବେଳେ ସହକର୍ମୀ ନନ୍ଦବାବୁଙ୍କ ସହ କଲିକତାରେ ଷ୍ଟେଟସମ୍ୟାନ ଅଫିସ, ଆନନ୍ଦ ବଜାର ପତ୍ରିକା ଅଫିସ ଓ ସେମାନଙ୍କ ସମ୍ପାଦକମାନଙ୍କ ସହିତ ସାମ୍ବାଦିକତା ସମ୍ବନ୍ଧରେ ବହୁବାର ଆଲୋଚ଼ନା କରି ସେମାନଙ୍କଠାରୁ ଏ ନୂତନ କାର୍ଯ୍ୟଟି ଶିକ୍ଷା କରୁଥିଲି । ଦୁଇଟି ପରାମର୍ଶ ମୋର ଆଜି ସୁଦ୍ଧା ମନେ ଅଛି । ଷ୍ଟେଟସ୍‌ମ୍ୟାନର ସେ ସମୟର ଇଂରେଜ ସଂପାଦକ ପରାମର୍ଶ ଦେଲେ "ସବୁକଥା ଜାଣୁଥିବା ବୁଝୁଥିବା ବୁଦ୍ଧିମାନ ପାଠକମାନଙ୍କୁ ଦୃଷ୍ଟିରେ ରଖି ସଂପାଦକୀୟ ଲେଖିବେ । ତାହେଲେ ସଂପାଦକୀୟ ଉତ୍କୃଷ୍ଟ ହେବ । ଲୋକେ କିଛି ବୁଝୁ ନାହାଁନ୍ତି, ତାଙ୍କୁ ପାଠ ପଢ଼ାଇବା ଭଳି ସମ୍ପାଦକୀୟ ଲେଖିଲେ, ଲେଖା ଅଯଥା ଦୀର୍ଘ ଓ ଅପ୍ରିୟ ହେବ ।" ଆନନ୍ଦବଜାର ପତ୍ରିକାର ସଂପାଦକ ପରାମର୍ଶ ଦେଲେ, "କଲମର ଜୋରଥିବା ଆବଶ୍ୟକ । ଯେଉଁ ବିଷୟକୁ ହାତକୁ ନେବେ ତାକୁ ଏପରି ଜୋରରେ ଧରିବେ ଓ ସେଥିରେ ଏପରି ଲେଖନୀ ପ୍ରୟୋଗ କରିବେ ଯେ ପାଠକ ସେଥିରେ ଯେପରି ଅଭିଭୂତ ହୋଇଯାଆନ୍ତି ।" ଭାବପ୍ରବଣ ଲେଖା ଲେଖିବା ପାଇଁ ସେ ପରାମର୍ଶ ଦେଇଥିଲେ । ଏଇ ଦୁଇଟି ପରାମର୍ଶ ଅନୁସାରେ ଆମେ ନିଜକୁ ସାମ୍ବାଦିକତା କ୍ଷେତ୍ରରେ ଅଭ୍ୟସ୍ତ କରାଇଲୁ। ପାଠକମାନଙ୍କ ମନରେ ଏହାର କି ପ୍ରତିକ୍ରିୟା ହେଉଛି ତାହା ମଧ୍ୟ ଲକ୍ଷ୍ୟ କରିବାର ଅଭ୍ୟାସ ସେହିଦିନୁଁ ହେଲା ।" 1937 ମସିହାରେ ସେତେବେଳେକାର ଆସୋସିଏଟେଡ଼ ପ୍ରେସର ଓଡ଼ିଶା ପ୍ରତିନିଧି ଥିଲେ ମହତାବ ।

ପ୍ରଜାତନ୍ତ୍ର ନାମକରଣ ଓ ତା' ସହିତ ତାଙ୍କର ଭାବଗତ ସଂପର୍କରେ ଉଲ୍ଲେଖ କରି ସେ କହିଛନ୍ତି, "1932 ମସିହାରୁ ବନ୍ଦ ହୋଇଥିବା 'ପ୍ରଜାତନ୍ତ୍ର' ନାମଟି ଏ ନୂତନ ସମ୍ବାଦ ପତ୍ରକୁ ମୁଁ ଦେଇଛି, କେବଳ ଅତୀତ ସହିତ ସଂପୃକ୍ତ କରି ରଖିବା ପାଇଁ . ନୂତନ 'ପ୍ରଜାତନ୍ତ୍ର'ର ପ୍ରକାଶନର ଦାୟିତ୍ୱ ମୋ ଉପରେ ଲଦି ଥିଲେ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ । ସମ୍ବାଦପତ୍ରଟି ପ୍ରକାଶିତ ହେବା ପରେ ମୁଁ ଶାସନ କାର୍ଯ୍ୟରେ ଥାଇ ମଧ୍ୟ ପୁଣି ସାମ୍ବାଦିକତାରେ ସମୟ ଦେବାକୁ ଓ ପରିଶ୍ରମ କରିବାକୁ ବାଧ୍ୟ ହେଲି । ସେହିଦିନୁ ମୁଁ 'ପ୍ରଜାତନ୍ତ୍ର' ସହିତ ଜଡ଼ିତ । ଭଲ-ମନ୍ଦ, ଲାଭ-କ୍ଷତି ସବୁ ପାଇଁ ମୁଁ ଦାୟୀ । ଏ ପତ୍ରିକାଟି ମୋର ଅନେକ ବନ୍ଧୁ ସୃଷ୍ଟି କରିଛି, ଅନେକ ଶତ୍ରୁ ମଧ୍ୟ ସୃଷ୍ଟି କରିଛି; କିନ୍ତୁ କାହାରି ଶତ୍ରୁତାକୁ ଭୟ ନକରି କେବଳ ଲୋକମତକୁ ଆଖି ଆଗରେ ରଖି ଓ ଓଡ଼ିଶାର ସର୍ବାଙ୍ଗୀନ ସାଂସ୍କୃତିକ ଉନ୍ନତି ସାଧନ ପାଇଁ ଯାହା ଆବଶ୍ୟକ ବୋଲି ମନେ କରିଛି ତଦନୁସାରେ 'ପ୍ରଜାତନ୍ତ୍ର'କୁ ପରିଚାଳନା କରିଆସିଛି । ଆଜି ଯେ ଯାହା କହୁ, ଶେଷରେ ଯେତେବେଳେ ଏ ଜୀବନରେ କୋଳାହଳ ବନ୍ଦ ହୋଇଯିବ; ସେତେବେଳେ ଧୀର ସ୍ଥିର ଭାବରେ ଯେଉଁ ମତ ପ୍ରକାଶ ପାଇବ, ତାହା ହିଁ ପ୍ରକୃତ ମତ ବୋଲି ଗୃହୀତ ହେବ । ସେ ମତ ଜାଣିବା ପାଇଁ ମୁଁ ନଥିବି, ମୋର ଅନେକ ସହକର୍ମୀ ମଧ୍ୟ ନଥିବେ, କିନ୍ତୁ ସେହି ମତ 'ପ୍ରଜାତନ୍ତ୍ର'ର ପଥ ନିର୍ଦ୍ଦେଶକ ହେବ । ସେହି ମତ ହିଁ 'ପ୍ରଜାତନ୍ତ୍ର' ପାଇଁ ଇତିହାସରେ ତାର ସ୍ଥାନ ନିରୂପଣ କରିବ ।"

'ଅନୁଷ୍ଠାନଟି ସଂଘର୍ଷରୁ ଜନ୍ମ ଏବଂ ସଂଘର୍ଷ ମଧ୍ୟରେ ଚାଲିଛି' ଏହା ସହିତ ମହତାବଙ୍କର ଜୀବନ ଥିଲା ସଂଘର୍ଷମୟ । 1947 ମସିହା ଅଗଷ୍ଟ 8 ତାରିଖ ଦିନ ବହୁଦିନ ପ୍ରାୟ ଦୀର୍ଘ 15 ବର୍ଷ ଧରି ବନ୍ଦ ହୋଇଯାଇଥିବା ପ୍ରଜାତନ୍ତ୍ର ଦୈନିକ ଆକାରରେ ପ୍ରକାଶ ପାଇଲା ଠିକ୍ ତାର ଅବ୍ୟବହିତ ପୂର୍ବରୁ ଜୁଲାଇ 5 ତାରିଖ 1947ରେ ଜନ୍ମ ଲାଭ କଲା । ପ୍ରଜାତନ୍ତ୍ର ପ୍ରଚାର ସମିତି ଓଡ଼ିଶାକୁ, ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ପ୍ରଗତି ପଥରେ ଆଗେଇ ନେବା ପାଇଁ । ଏହାର ପ୍ରତିଷ୍ଠାତା ହେଲେ ମହତାବ । ପ୍ରଜାତନ୍ତ୍ର ପ୍ରଚାର ସମିତି ଆଜି ଓଡ଼ିଶାର ବୌଦ୍ଧିକ ଜଗତର ବିଶାଳ ବୋଧିଦ୍ରୁମ ।

ପ୍ରଜାତନ୍ତ୍ର ପ୍ରଚାର ସମିତିର ଉଦ୍ଦେଶ୍ୟ ଓ କାର୍ଯ୍ୟକ୍ରମ ସଂପର୍କରେ ସେ ଉଲ୍ଲେଖ କରି କହିଛନ୍ତି, "ପ୍ରଜାତନ୍ତ୍ର ପ୍ରଚାର ସମିତିର ପରିକଳ୍ପନା ବାସ୍ତବିକ ଆରମ୍ଭ ହୁଏ 1923 ସାଲରେ କଟକ ସ୍ୱରାଜ ଆଶ୍ରମରେ । ସେତେବେଳେ ଅସହଯୋଗ ଆନ୍ଦୋଳନ ଜନିତ ଉତ୍ସାହ ଜୁଆରରେ ଭଟ୍ଟା ପଡ଼ି ଯାଇଥାଏ । ସେତିକିବେଳେ ଆମ୍ଭେମାନେ କେତେଜଣ ଉପଲବ୍ଧି କଲୁ ଯେ, ଜାତିର ସଂଗଠନ ପାଇଁ ସୁଦୃଢ଼ ସାଂସ୍କୃତିକ ଭିତ୍ତି ଆବଶ୍ୟକ । କାର୍ଯ୍ୟର ସଫଳତା ପାଇଁ ଚିନ୍ତାର ପ୍ରଖରତା ଆବଶ୍ୟକ । ଏହି ଉପଲବ୍ଧିର ପ୍ରତୀକ ସ୍ୱରୂପ ପ୍ରଥମେ ସାପ୍ତାହିକୀ ଆକାରରେ ପ୍ରଜାତନ୍ତ୍ର ବାହାରିଲା । ପରେ କଟକରୁ ଯାଇ ପତ୍ରିକାଟି ପୁଣି ବାଲେଶ୍ୱରରେ ପ୍ରକାଶିତ ହେଲା । ମାସିକ ପତ୍ରିକାଟିଏ ବାହାର କରି ସାହିତ୍ୟ ସଂଗଠନ ଦିଗରେ ଲାଗିବାର କଳ୍ପନା ମଧ୍ୟ ସେତେବେଳେ ଜାତ ହୋଇଥିଲା । ମାତ୍ର ରାଜନୈତିକ ପରିସ୍ଥିତି, ଆମ୍ଭମାନଙ୍କର ନିଜର ଅନିଶ୍ଚିତ ମନୋଭାବ ଓ ଅନଭିଜ୍ଞତା ସେହି କଳ୍ପନାକୁ ପୂର୍ଣ୍ଣ ରୂପରେଖ ଦେଇ ପାରିନଥିଲା । ଦେଶ ଯେତେବେଳେ ସ୍ୱାଧୀନ ହେବାକୁ ବସିଲା, ସେତେବେଳେ ସାଂସ୍କୃତିକ

ସଂଗଠନକୁ ଠିକ୍ ସେହିପରି ଉତ୍ସାହରେ ହାତ କରିବା ଯେ ଅନିବାର୍ଯ୍ୟ ହୋଇ ପଡ଼ିଲା, ଯେପରି ରାଜନୈତିକ ଲକ୍ଷ୍ୟ ସାଧନ ପାଇଁ ଦରକାର ପଡ଼ିଥିଲା । 1947 ସାଲରେ ଚିର ପୋଷିତ ପରିକଳ୍ପନାକୁ ବାସ୍ତବତାର ଆଭରଣ ପିନ୍ଧାଇବାର ଉଦ୍ୟମ ହେଲା ।"

ଏହାର ନୀତି ସଂପର୍କରେ ମହତାବ ସ୍ପଷ୍ଟ କରି ଲେଖିଛନ୍ତି, "ପ୍ରଜାତନ୍ତ୍ର ପ୍ରଚାର ସମିତିର କୌଣସି କାର୍ଯ୍ୟ ଦଳଗତ ରାଜନୀତି ଦ୍ୱାରା ପରିଚାଳିତ ହେବ ନାହିଁ । ବ୍ୟକ୍ତି ବିଶେଷରେ ରାଜନୈତିକ ବିଶ୍ୱାସ ଯାହା ହେଉ ପଛକେ ତା' ଦ୍ୱାରା ଅନୁଷ୍ଠାନର ନୀତି ନିର୍ଣ୍ଣିତ ହେବ ନାହିଁ । ଦଳଗତ ରାଜନୀତି ତାତ୍କାଳିକ ବ୍ୟାପାର । ସାଂସ୍କୃତିକ ସଂଗଠନ ଜାତିର ଅଗ୍ରଗତି ପାଇଁ ଏକାନ୍ତ ଆବଶ୍ୟକ । ଦ୍ୱିତୀୟ ନୀତି ହେଉଛି ଏହି ଯେ ଏହି ଅନୁଷ୍ଠାନଟି ତ୍ୟାଗ ମନୋବୃତ୍ତି ଉପରେ ପ୍ରତିଷ୍ଠିତ ହେବ । ସମସ୍ତେ ଜାଣନ୍ତିଯେ, 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଗୋଟିଏ ଆଇନ୍ ଅନୁସାରେ ରେଜିଷ୍ଟାର୍ଡ଼ ଅନୁଷ୍ଠାନ ଓ ଏହି ନିୟମାନୁସାରେ ପରିଚାଳିତ । ଏହାର ପରିଚାଳକମାନେ ଅନୁଷ୍ଠାନରୁ କୌଣସି ଲାଭ ନିଅନ୍ତି ନାହିଁ ବା ଲାଭର ଆଶା ରଖନ୍ତି ନାହିଁ । ଏହାର ପୃଷ୍ଠପୋଷକମାନେ ସେହିପରି ଏହାକୁ ଲାଭଜନକ ବ୍ୟବସାୟ ବୋଲି ମନେକରନ୍ତି ନାହିଁ । ଏ ଅନୁଷ୍ଠାନରେ ଯେଉଁମାନେ ମୁଖ୍ୟ କର୍ମୀ ସେମାନେ ତ୍ୟାଗ ସ୍ୱୀକାର କରି ଏଥିରେ କାର୍ଯ୍ୟ କରୁଛନ୍ତି । ନିଜର ଯୋଗ୍ୟତା ଓ ଶିକ୍ଷା ଅନୁସାରେ ଯେଉଁମାନେ ଅନ୍ୟତ୍ର ବେଶୀ ଉପାର୍ଜନ କରି ପାରିଥାନ୍ତେ, ସେମାନେ ଏଠି ସ୍ୱଳ୍ପ ଉପାର୍ଜନ କାମରେ ଲାଗିଛନ୍ତି ଓ ସେହିମାନଙ୍କ ତ୍ୟାଗ ଓ ନିଷ୍ଠା ଉପରେ ଅନୁଷ୍ଠାନର ସଫଳତା ନିର୍ଭର କରୁଛି ।"

"ତୃତୀୟ ନୀତି ହେଉଛି ଭବିଷ୍ୟତ ଦୃଷ୍ଟି । ଅର୍ଥାତ୍ ଆମ୍ଭେମାନେ ଯୁବକ ଶ୍ରେଣୀର ଉତ୍ସାହ ଉଦ୍ରେକ କରିବାକୁ ସର୍ବଦା ତତ୍ପର ହେବୁ । ଏହି କେତୋଟି ମୂଳନୀତିକୁ ଆଶ୍ରୟ କରି, ଲାଭକ୍ଷତି କିଛି ବିଚାର ନକରି ଯେତେ ଶ୍ରେଣୀ ଓ ଯେତେ ବିଭାଗ ସମ୍ଭବ ହୋଇ ପାରୁଛି, ସବୁଥିରେ ଜୀବନ ସ୍ପନ୍ଦନ ପ୍ରଖର କରିବା ପାଇଁ ଆମ୍ଭେମାନେ ଚେଷ୍ଟା କରୁଛୁ । ସାନ ପିଲାଙ୍କ ପାଇଁ ମୀନା ବଜାର, ନାରୀମାନଙ୍କ ପାଇଁ ନାରୀଜଗତ, ବିଜ୍ଞାନ ଚର୍ଚ୍ଚା ପାଇଁ ଜ୍ଞାନ ବିଜ୍ଞାନ, ଗ୍ରାମର ଲୋକମାନଙ୍କ ପାଇଁ ଗାଁ ମଜଲିସ୍, ସାହିତ୍ୟର ସାଧନା ପାଇଁ "ରବିବାର ପ୍ରଜାତନ୍ତ୍ର", ଏହି କେତୋଟି ବିଭାଗ ଆମ୍ଭେମାନେ ବର୍ତ୍ତମାନ ଖୋଲିଛୁ । ସାଂସ୍କୃତିକ ସଂଗଠନର ଯେଉଁ ମନ୍ଦିର ଆମ୍ଭେମାନେ ନିର୍ମାଣ କରିଛୁ, ତାର ଚୂଡ଼ା ହେଉଛି ଝଙ୍କାର । ଭିତ୍ତି ଉପରେ ଚୂଡ଼ା ଯେପରି ନିର୍ଭର କରେ, ଚୂଡ଼ାର ସ୍ଥିତି ଉପରେ ମନ୍ଦିରର ସ୍ଥାୟିତ୍ୱ ମଧ୍ୟ ନିର୍ଭର କରେ ।"

ପ୍ରଜାତନ୍ତ୍ର ଓ ପ୍ରଜାତନ୍ତ୍ର ପ୍ରଚାର ସମିତିର ନୀତି, ଆଦର୍ଶ ଓ ଆଭିମୁଖ୍ୟ ସଂପର୍କରେ ମହତାବଙ୍କର ଉଲ୍ଲିଖିତ ମତ ସଂପର୍କରେ ଶ୍ରୀ ନୀଳମଣି ରାଉତରାୟ ନିଜର ସ୍ମୃତି ଓ ଅନୁଭୂତି ପୁସ୍ତକରେ ଭିନ୍ନ ମତ ପୋଷଣ କରି ନିମ୍ନମତେ ଉଲ୍ଲେଖ କରିଛନ୍ତି ।

"ଏହିଠାରେ ପ୍ରଜାତନ୍ତ୍ର ଓ ତାର ସତ୍ୱାଧିକାରୀ ପରିଚାଳନା ସଂସ୍ଥା (ପ୍ରଜାତନ୍ତ୍ର ପ୍ରଚାର ସମିତି) ଯେଉଁ ଉଦ୍ଦେଶ୍ୟ ଓ ଆଦର୍ଶରେ ଗଠିତ ହୋଇଥିଲା ସେ ସଂପର୍କରେ ଦୁଇ ପଦ କହୁଛି । ପ୍ରଜାତନ୍ତ୍ର ପ୍ରଚାର ସମିତିର ମାଲିକାନାରେ ପରିଚାଳିତ ପ୍ରଜାତନ୍ତ୍ର ସେ ସମୟର ବହୁ ଆଦର୍ଶବାଦୀ, ଶିକ୍ଷିତ ଯୁବକଙ୍କର ଆଶା, ଭରସା ଓ ଆକାଂକ୍ଷାର ପୀଠସ୍ଥଳ ହୋଇଥିଲା ।

ଏହି ସଂସ୍ଥାଟି ଗୋଟିଏ ସାଧାରଣ ଅନୁଷ୍ଠାନ ହିସାବରେ ସ୍ଥାପନ କରାଯାଇଥିଲା ଏବଂ ପ୍ରଜାତନ୍ତ୍ର ପ୍ରଚାର ସମିତି ବହୁ ଲୋକଙ୍କର ଆଶା ଓ ବିଶ୍ୱାସର ଆଧାର ବା ଟ୍ରଷ୍ଟି ହିସାବରେ କାର୍ଯ୍ୟ କରିବ ବୋଲି ମନେ କରାଯାଉଥିଲା । ତା'ଛଡ଼ା ଶ୍ରୀ ମହତାବ ଯେତେବେଳେ ଏହି ସମିତିର ଚେୟାରମ୍ୟାନ ଥିଲେ, ସେତେବେଳେ ସମସ୍ତେ ତାଙ୍କ କଥାରେ ବିଶ୍ୱାସ କରିଥିଲେ ଯେ ସଂସ୍ଥାଟି ସର୍ବସାଧାରଣଙ୍କ ହିତ ନିମନ୍ତେ ପରିଚାଳିତ ହେବ ଏବଂ ଗାନ୍ଧିଜୀଙ୍କ ନ୍ୟାସ ବା ଟ୍ରଷ୍ଟ ଦ୍ୱାରାରେ ଚ଼ଳିବ । କଥା କଥାକେ ଶ୍ରୀ ମହତାବ ଯେପରି ଗାନ୍ଧିଜୀଙ୍କ ଉକ୍ତିକୁ ଉଦ୍ଧାର କରୁଥିଲେ, ସେହି ଅନୁସାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଟ୍ରଷ୍ଟ କ୍ରମେ ବ୍ୟକ୍ତି ବିଶେଷଙ୍କ ସଂପତ୍ତି ଭଳି ବ୍ୟବହୃତ ନହୋଇ ନିଶ୍ଚୟ ସାଧାରଣ ସଂପତ୍ତି ହୋଇ ରହିବ ବୋଲି ଧାରଣା ଥିଲା । ପ୍ରଥମ ଅବସ୍ଥାରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତିଙ୍କର ଏହି ଅନୁଷ୍ଠାନ ସହିତ ସଂପର୍କ ଓ ସହଯୋଗ ଏପ୍ରକାର ଧାରଣାକୁ ଦୃଢ଼ୀଭୂତ କରିଥିଲା ।

x x x

ପ୍ରଜାତନ୍ତ୍ର ପ୍ରଚାର ସମିତି ଟ୍ରଷ୍ଟ ବୋର୍ଡ଼ର ନିଯୁକ୍ତି ଓ ପଦଚ୍ୟୁତ ଶ୍ରୀ ମହତାବଙ୍କର ଗୋଟିଏ ହାସ୍ୟାସ୍ପଦ ଓ ଘରୋଇବ୍ୟାପାର ଥିଲା । ସେ କେତେବେଳେ ଟ୍ରଷ୍ଟ ବୋର୍ଡ଼ରେ କାହାକୁ ରଖନ୍ତି ଓ କାହାକୁ ବାହାର କରନ୍ତି, ସେକଥା ତାଙ୍କ ଇଚ୍ଛା ଉପରେ ନିର୍ଭର କରୁଥିଲା । xxx ବର୍ତ୍ତମାନ ପ୍ରଜାତନ୍ତ୍ର ପ୍ରଚାର ସମିତି ଏକ ପ୍ରକାର ଗୋଟିଏ ପାରିବାରିକ ସଂସ୍ଥାରେ ପରିଣତ ହୋଇଛି ।

ଶ୍ରୀ ନୀଳମଣି ରାଉତରାୟଙ୍କର ଏପରି ପରୋକ୍ଷ ବିରୋଧତା ପ୍ରଜାତନ୍ତ୍ର ପ୍ରଚାର ସମିତିର କାର୍ଯ୍ୟରେ କୌଣସି ବାଧା ଉପୁଜାଇ ପାରିନଥିଲା କିମ୍ବା ତାହାର ପ୍ରଗତିଶୀଳ ଗତିକୁ ଗତିରୋଧ କରି ପାରିନଥିଲା । ମହତାବ ଏପରି ଏକ ଅନୁଷ୍ଠାନ ଗଠନ କରି ସମଗ୍ର ଓଡ଼ିଶାର ଜନଜୀବନକୁ ସାହିତ୍ୟ ଓ ସଂସ୍କୃତି ମାଧ୍ୟମରେ ଏ ଯାବତ୍ ଆଚ୍ଛନ୍ନ କରି ରଖିଛନ୍ତି ଏବଂ ଏହା ବହୁ ଓଡ଼ିଆ ନବଯୁବକମାନଙ୍କର ପ୍ରେରଣାର କେନ୍ଦ୍ର ହୋଇ ରହିଆସିଛି ।

"ସ୍ୱାଧୀନ ଓଡ଼ିଶାର ଏକ ଅଧ୍ୟାୟ"ରେ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଲେଖିଛନ୍ତି- "ବାସ୍ତବିକ ଏହି ଅନୁଷ୍ଠାନ କେବଳ ଏକ ସମ୍ବାଦପତ୍ର ଅନୁଷ୍ଠାନ ନଥିଲା କି ସେପରି ଭାବେ ପରିକଳ୍ପିତ ହୋଇ ନଥିଲା । ଓଡ଼ିଶାର ସାଧାରଣ ଜୀବନରେ ଉତ୍ତୀର୍ଣ୍ଣ ବହୁ ଶିକ୍ଷିତ ଯୁବକଙ୍କର ଏହା ଥିଲା ପ୍ରାଣକେନ୍ଦ୍ର । ଓଡ଼ିଶାର ଶାସନ ସେକ୍ରେଟାରୀଏଟ୍‌ରେ ଚାଲୁଥିଲେ ମଧ୍ୟ ତା'ର ଭାଗ୍ୟ ନିୟନ୍ତ୍ରଣ ପାଇଁ ବହୁ ସିଦ୍ଧାନ୍ତ ଏଠାରେ ଆଲୋଚିତ ହୋଇ ଗୃହୀତ ହେଉଥିଲା । ଏହାର କର୍ତ୍ତୃତ୍ୱ ଓ ନେତୃତ୍ୱରେ ଥିଲେ ମହତାବ ବାବୁ, ମାତ୍ର ସମସ୍ତ କାର୍ଯ୍ୟବ୍ୟସ୍ତତା ଭିତରେ ମଧ୍ୟ ପ୍ରଜାତନ୍ତ୍ରକୁ ଆସିବା ଓ ଏଠାରେ ସମସ୍ତ ବିଷୟ ଆଲୋଚ଼ନା କରିବା ତାଙ୍କର କେବେ ବନ୍ଦ ହୋଇନାହିଁ ।"

ମହତାବ ପ୍ରଜାତନ୍ତ୍ର ଓ ପ୍ରଜାତନ୍ତ୍ର ପ୍ରଚାର ସମିତି ମାଧ୍ୟମରେ ଓଡ଼ିଶାର ଜନଜୀବନକୁ ସଂପୂର୍ଣ୍ଣ ଛୁଇଁବାକୁ ଚେଷ୍ଟା କରିଛନ୍ତି ଓ ଓଡ଼ିଆ ସାହିତ୍ୟ, ସଂସ୍କୃତି ଓ କଳାର ସୁରକ୍ଷା ଓ ସର୍ବବିଧ ଉନ୍ନତି ତାଙ୍କ ଚେତନାର ମାର୍ମିକ ଉତ୍ତରଣ । ସ୍ୱାମୀ ବିବେକାନନ୍ଦ ରାମକୃଷ୍ଣ ମଠ ଓ ମିସନ ପ୍ରତିଷ୍ଠା କରି ଯେପରି ଲକ୍ଷ୍ୟ, ଉଦ୍ଦେଶ୍ୟ ଓ ନୀତି ନିର୍ଦ୍ଧାରଣ କରିଥିବା ହେତୁ ସମଗ୍ର ବିଶ୍ୱରେ ଶହେବର୍ଷ ଧରି ଏକ ପ୍ରାଣବନ୍ତ ଅନୁଷ୍ଠାନ ଭାବେ ତ୍ୟାଗ ଓ ସେବାର

ଉଦାହରଣ ଭାବେ ସଶକ୍ତ ଦଣ୍ଡାୟମାନ ହୋଇଛି. ତଦାନୁରୂପ ପ୍ରଜାତନ୍ତ୍ର ଓ ପ୍ରଜାତନ୍ତ୍ର ପ୍ରଚାର ସମିତି ମହାତବଙ୍କ ଦୂର ଦୃଷ୍ଟି . ତ୍ୟାଗ ଓ ତପସ୍ୟାର ଉଜ୍ଜ୍ୱଳ ଇମାରତ ।

ପ୍ରଜାତନ୍ତ୍ର ସ୍ଥିତାବସ୍ଥାର ପରିବର୍ତ୍ତନର ବାର୍ତ୍ତାବହ । ଓଡ଼ିଶାରେ ଗଢ଼ି ଉଠିଥିବା କ୍ଷୁଦ୍ର କ୍ଷୁଦ୍ର ଚିନ୍ତା ରକ୍ଷଣଶୀଳତା ଓ କୁସଂସ୍କାର ବିରୋଧରେ ଏହା କରିଥିଲା ସ୍ୱର ଉତ୍ତୋଳନ । ମହତାବ ନିଜର ସ୍ୱକୀୟ ପ୍ରତିଭା. ପ୍ରଜ୍ଞାବଳରେ ପ୍ରଜାତନ୍ତ୍ରର କେନ୍ଦ୍ରବିନ୍ଦୁକୁ ଆକର୍ଷିତ କଲେ ବହୁ ପ୍ରତିଭାବାନ ଯୁବପିଢ଼ିଙ୍କୁ ଯେଉଁମାନେ ପରବର୍ତ୍ତୀ ସମୟରେ ଓ ଅଦ୍ୟାବଧି ଓଡ଼ିଶାର ସବୁପ୍ରକାର ନେତୃତ୍ୱର ପୁରୋଭାଗରେ ବିଦ୍ୟମାନ । ପ୍ରଜାତନ୍ତ୍ରର ଲକ୍ଷ୍ୟକୁ କେବଳ ସମ୍ବାଦ ପରିବେଷଣର ମାଧ୍ୟମ ନକରି. ସେଥିରେ ଭାଷା. ସାହିତ୍ୟ ଓ ସଂସ୍କୃତି ପ୍ରତି ଗୁରୁତ୍ୱ ଆରୋପ କରିବାରେ ତାହା ହେଲା ଅଗ୍ରଣୀ । ପ୍ରଜାତନ୍ତ୍ର ସୃଷ୍ଟି କରିଛି ମୁଖ୍ୟମନ୍ତ୍ରୀ ଓ ରାଜ୍ୟପାଳମାନଙ୍କୁ । ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରଜାତନ୍ତ୍ର ସଂପର୍କରେ ସ୍ମୃତିଚାରଣ କରି ଲେଖିଛନ୍ତି. "ପ୍ରଜାତନ୍ତ୍ର ମୋ ପାଇଁ ଏକ ସମ୍ବାଦପତ୍ର କିମ୍ବା ଅନୁଷ୍ଠାନ ନୁହେଁ । ଏହା ମୋ ଜୀବନର ଏକ ଅଂଶ । x x x ସେତେବେଳେ ନୂଆ ଓଡିଶା ଗଠନରେ ପ୍ରଜାତନ୍ତ୍ର ଏକ ଅସ୍ତ୍ରରୂପେ କାର୍ଯ୍ୟ କରିଥିଲା । ଗଡ଼ଜାତ ମିଶ୍ରଣ. ହୀରାକୁଦ ବନ୍ଧ ଯୋଜନା. ବିଭିନ୍ନ ସାହସିକ ପଦକ୍ଷେପ ଓ ଅର୍ଥନୀତିକ କାର୍ଯ୍ୟାବଳୀରେ ଓଡ଼ିଶାକୁ ଭାରତର ମାନଚିତ୍ରରେ ପ୍ରତିଷ୍ଠିତ କରାଇବା ପାଇଁ ଯାହା ହେଉଥିଲା. ଏହି ସମ୍ବାଦପତ୍ର ସେଥିପାଇଁ ଜନମତ ଗଠନର ଥିଲା ଏକ ଶାଣିତ ଅସ୍ତ୍ର । ଏହା ଛଡ଼ା ସାମ୍ବାଦିକତା କ୍ଷେତ୍ରରେ ଏହା କରିଥିଲା ବହୁ ନୂତନ ଦିଗନ୍ତର ସୃଷ୍ଟି–ରବିବାସରୀୟ ସଂଖ୍ୟା. ଇତ୍ୟାଦି ।"

ଓଡିଆ ସାମ୍ବାଦିକତା କ୍ଷେତ୍ରରେ 'ପ୍ରଜାତନ୍ତ୍ର' ହୋଇଛି ନୂତନ ପରୀକ୍ଷାର ପ୍ରୟୋଗଶାଳା । ମହତାବ ତାଙ୍କର ସାମ୍ବାଦିକ ଜୀବନର ପ୍ରଥମ ଦୁଇଟି ଉପଦେଶକୁ ଯେପରି ଅତି ନିଷ୍ଠା ଓ ଗୁରୁତ୍ୱର ସହିତ ପାଳନ କରିଛନ୍ତି । ଜନଚେତନାର ସ୍ୱର ଏହାର ଛତ୍ରେ ଛତ୍ରେ ଅନୁରଣିତ ହୋଇଥିଲା । ମହତାବଙ୍କର ନିର୍ଭୀକ ବିଚାର ଥିଲା ଏଇ ଜନମତର  ପ୍ରତିଫଳନ । ଗାଁ ମଜଲିସ୍ ସ୍ତମ୍ଭରେ ସାଧାରଣ ଲୋକମାନଙ୍କର ଦୈନନ୍ଦିନ ଜୀବନର ଅଭାବ ଅସୁବିଧାଠାରୁ ଶାସକ ଶ୍ରେଣୀର ଖାମଖିଆଲି ଓ ବେପରୁଆ ଶାସନର ଚିତ୍ର ଅଙ୍କିତ ହେଉଥିଲା । ଛାତ୍ରାବସ୍ଥାରୁ ସ୍ୱାମୀ ବିବେକାନନ୍ଦ ଓ ରାଜନୈତିକ ଜୀବନରେ  ମହାତ୍ମାଗାନ୍ଧୀଙ୍କ ଦ୍ୱାରା ପ୍ରଭାବିତ ହୋଇ. ସେମାନଙ୍କର ଆହ୍ୱାନ ଦରିଦ୍ର ଦେବୋଭବ. ମୂର୍ଖ ଦେବୋଭବ ମହତାବଙ୍କ କଲମ ମୁନରେ ନୂତନ ରୂପ ପରିଗ୍ରହ କରୁଥିଲା । ସେ ଥିଲେ ଏକ ଉନ୍ନତ ବିନ୍ଧାଣୀ । ତାଙ୍କର ସ୍ୱତନ୍ତ୍ର ସ୍ତମ୍ଭ 'ଗାଁ ମଜଲିସ୍' କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ସ୍ୱୀକୃତ ହୋଇ. ତାଙ୍କୁ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ କରାଇଲା । ସମ୍ବାଦ ସମୀକ୍ଷା ଓ ସାମାଜିକ ଜୀବନଧାରର ବ୍ୟବଚ୍ଛେଦ ଅତି ବିଚକ୍ଷଣ ଭାବରେ ଏବଂ ସରଳ ଭାଷାରେ 'ଗାଁ ମଜଲିସ୍' ସ୍ତମ୍ଭରେ ଡକ୍ଟର ମହତାବ କରିପାରୁ  ଥିଲେ ।

ମହତାବ ପ୍ରଜାତନ୍ତ୍ର ମାଧ୍ୟମରେ ଏକ ପ୍ରଗତିଶୀଳ ଚେତନା ସୃଷ୍ଟି କରିବାରେ ସକ୍ଷମ ହୋଇଥିଲେ । ଏବଂ ଏହା ସୃଷ୍ଟି କରି ପାରିଲା ଏକ ମଧ୍ୟବିତ୍ତ ଶ୍ରେଣୀ । ମହତାବ  ସଦାସର୍ବଦା

ଚାହୁଁଥିଲେ ପ୍ରଜାତନ୍ତ୍ର ନିରପେକ୍ଷ ସମ୍ବାଦ ପରିବେଷଣ ସହିତ ସମାଜକୁ ମାର୍ଗଦର୍ଶନ କରାଉ, ଅନ୍ୟାୟ ବିରୁଦ୍ଧରେ ଲଢୁ, ମୂକଜନତାର ମୁହଁରେ ଭାଷା ଦେଉ । ପ୍ରଜାତନ୍ତ୍ର ପରିସର ଥିଲା ମହତାବଙ୍କର ଦୈନିକ ଦରବାର । ପ୍ରତ୍ୟେକ ଦିନ ସମ୍ବାଦପତ୍ର କାର୍ଯ୍ୟାଳୟଠାରେ ଜନସାଧାରଣ ଉପସ୍ଥିତ ରହି ମହତାବଙ୍କ ସହିତ ଭାବର ଆଦାନ ପ୍ରଦାନ କରୁଥିଲେ । ଏହା ଥିଲା ସ୍ୱାଧୀନତା ପରବର୍ତ୍ତୀ ସାମ୍ବାଦିକତା କ୍ଷେତ୍ରରେ ଏକ ନୂତନ ଇତିହାସ । ମହତାବ ପ୍ରତିଷ୍ଠିତ ରାଜନୀତିଜ୍ଞ ହୋଇ ମଧ୍ୟ, ସଭା ସମିତିରେ ଦେଉଥିବା ତାଙ୍କର ଭାଷଣ ବା ଫଟୋଚିତ୍ର ପ୍ରଜାତନ୍ତ୍ରରେ ଯେପରି ପ୍ରକାଶିତ ନହୁଏ ସେଥିପ୍ରତି ଯତ୍ନବାନ ଥିଲେ କାରଣ ତାଙ୍କ ମତରେ ପ୍ରକୃତ ସାମ୍ବାଦିକତା ସବୁସ୍ୱାର୍ଥର ଊର୍ଦ୍ଧ୍ୱରେ ଏହାକୁ ସେ ଖୁବ୍ ମନ ଦେଇ ଜଗୁଥିଲେ ।

ଜନମତକୁ ରାଜ୍ୟର ବିକାଶ ପ୍ରତି ସଚେତନ କରାଇବା ପାଇଁ ମହତାବ ପ୍ରଜାତନ୍ତ୍ରର ସଂପାଦକୀୟକୁ ବ୍ୟବହାର କରୁଥିଲେ । ହୀରାକୁଦ ନଦୀବନ୍ଧ ଯୋଜନା ସଂପର୍କରେ ଯେତେବେଳେ ଆନ୍ଦୋଳନ ଆରମ୍ଭ ହେଲା, ସେ ଏହାର ଉପକାରିତା ବର୍ଣ୍ଣନା କରି 'ମହାନଦୀ ବନ୍ଧ' ଶିରୋନାମାରେ ଲେଖିଥିଲେ, " ଓଡ଼ିଶାର ଅବକ୍ଷୟ ଘଟିଲା ଯେବେ ଓଡ଼ିଶାର ବନ୍ଦର ପୋତି ହୋଇ ପଡ଼ିଲା, ସେହିଦିନଠାରୁ ଓଡ଼ିଶାର ଭାଗ୍ୟରେ ଡୋରି ବନ୍ଧା ହୋଇଛି । ସେ ଭାଗ୍ୟ ଫେରାଇ ଆଣିବାକୁ ପଡ଼ିବ । ଆଜି ମହାନଦୀ ବନ୍ଧ ହେଲେ ଧାମରା ଓ ଚାନ୍ଦବାଲିରେ ପ୍ରଥମ ଶ୍ରେଣୀର ବନ୍ଦର ହୋଇପାରିବ । ହୀରାକୁଦ ବନ୍ଧ ହେଲେ ମଧ୍ୟପ୍ରଦେଶରୁ ମହାନଦୀ ବନ୍ଧ ଦେଇ ବିରୂପା ନଦୀ ବାଟେ ସମୁଦ୍ର ପର୍ଯ୍ୟନ୍ତ ପଣ୍ୟବାହୀ ଜାହାଜମାନ ଯାତାୟତ କରିପାରିବ । ପୁଣି ମହାନଦୀର ଆଉ ଦୁଇଟି ବନ୍ଧ ହେଲେ ବଡ଼ ବଡ଼ ଜାହାଜମାନ ଯାତାୟତ କରିପାରିବ । xxx ପାଠକମାନେ ବିଚାର କରନ୍ତୁ କେବଳ ଭାରତରେ ନୁହେଁ, ପୃଥିବୀରେ ଓଡ଼ିଶା ଏକ ବିଶିଷ୍ଟ ସ୍ଥାନ ଅଧିକାର କରିପାରିବ । xxx ମହାନଦୀ ବନ୍ଧର ଆଉ ଏକ ଉପକାରିତା ହେଉଛି ବନ୍ୟା ନିୟନ୍ତ୍ରଣ । xxx ଏହି ବନ୍ଧ ନିର୍ମାଣ ପାଇଁ ଏକଲକ୍ଷ ପଞ୍ଚତ୍ରିଶହଜାର ଏକର ଜମି ଏକୁୟାର କରାଯିବ ଓ ଏଥିରୁ ବାସ୍ତରୀହଜାର ହେଉଛି ଚାଷଜମି ଏହା ଫଳରେ ପ୍ରାୟ ଦେଢ଼ଶହଗ୍ରାମ ଉଠିଯିବାକୁ ପଡ଼ିବ । ଯେଉଁ ଗ୍ରାମବାସୀମାନେ ପୈତୃକ ବାସସ୍ଥାନ ଛାଡ଼ି ଯିବେ ଓ ଯେଉଁମାନଙ୍କର ତିଆରି ଜମି ଚାଲିଯିବ ସେମାନେ ଯେ ବନ୍ଧର ବିରୋଧ କରିବେ, ଏହା ସ୍ୱାଭାବିକ । xxx ଓଡ଼ିଶାବାସୀ ଦେଖିବା ଉଚିତ ଓ ନିଶ୍ଚୟ ଦେଖିବେ, ଯେପରି ଉକ୍ତ ଗ୍ରାମବାସୀମାନେ ସୁରୁଖୁରୁରେ ଅନ୍ୟତ୍ର ବାସ କରନ୍ତି, ସେମାନଙ୍କ ପାଇଁ ଜମି, ଘରଦ୍ୱାର, ଦେବାଳୟ, ସ୍କୁଲ ଇତ୍ୟାଦି ଯାହା ତାଙ୍କର ଅଛି, ତାଠାରୁ ବରଂ ବେଶୀ ଯୋଗାଇ ଦେବାକୁ ହେବ । xxx ସୁଖର ବିଷୟ ହୀରାକୁଦ ରିପୋର୍ଟରେ କ୍ଷତିପୂରଣ ପାଇଁ ଛଅକୋଟିଟଙ୍କାର ବ୍ୟବସ୍ଥା କରାହୋଇଛି ।"

"ଯେତେ କ୍ଷତିପୂରଣ ଦିଆଗଲେ ମଧ୍ୟ ପୂର୍ବସ୍ଥାନ ପ୍ରତି ମମତା ଓ ତିଆରି ଜିନିଷ ଛାଡ଼ିବାରେ ଯେଉଁ ଅସୁବିଧା ହେବ, ତାହା କେହି ଦୂର କରିପାରିବେ ନାହିଁ । ଓଡ଼ିଶାର ଏହି ନିବେଦନ ଦେଶର ହିତକଳ୍ପେ ଓ ସମୂହ ସ୍ୱାର୍ଥ ଦୃଷ୍ଟିରୁ ଉପରୋକ୍ତ ଗ୍ରାମବାସୀମାନେ ସମସ୍ତ ଅସୁବିଧାର ସମ୍ମୁଖୀନ ପାଇଁ ପ୍ରସ୍ତୁତ ହୁଅନ୍ତୁ । ଏହା ହିଁ ସମସ୍ତ ଓଡ଼ିଶାବାସୀଙ୍କର ସେମାନଙ୍କଠାରେ ସନିର୍ବନ୍ଧ ଅନୁରୋଧ ।"

ମହାତାବ ବିକାଶ ମାଧ୍ୟମକୁ ତ୍ୱରାନ୍ୱିତ କରିବା ପାଇଁ ପ୍ରଜାତନ୍ତ୍ରକୁ ପ୍ରଚାର ଯନ୍ତ୍ର ଭାବରେ କୁଶଳତାର ସହିତ ବ୍ୟବହାର କରିଥିଲେ । ଭାଷା, ସାହିତ୍ୟ, ସଂସ୍କୃତି, ପରମ୍ପରା, କଳା, ବିଜ୍ଞାନ, ବାଣିଜ୍ୟ, ଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ, ଖାଦ୍ୟ, ବୃତ୍ତି ବିଶେଷତଃ ସମାଜ ଓ ଅର୍ଥନୀତି ଇତ୍ୟାଦି ପ୍ରତି ତାଙ୍କର ଆଗ୍ରହର ପରିସର ଏତେ ବ୍ୟାପକ ଓ ଉପଲବ୍ଧି ଏତେ ଗଭୀର ଥିଲା ଯେ ତାହା 'ଗାଁ ମଜଲିସ୍' ସ୍ତମ୍ଭରେ ପ୍ରକାଶ ପାଉଥିଲା । ଏହାର ଉପସ୍ଥାପନା ଓ ବିଶ୍ଳେଷଣ ଥିଲା ସ୍ୱତନ୍ତ୍ର । ଏହି ବିଚାର ତାଙ୍କର ବ୍ୟକ୍ତିଗତ ହୋଇଥିଲେ ହେଁ ଏହାର ରୂପରେଖ ମହତାବଙ୍କ ଅଧ୍ୟୟନ, ଅଭିଜ୍ଞତା ଓ ଅନୁଭୂତିର ସ୍ପର୍ଶ ଦ୍ୱାରା ଜନଗଣଙ୍କର ପ୍ରତିଶ୍ରୁତି ବଦ୍ଧତା ଆଡ଼କୁ ମୁହାଁଇ ନେଇଥିଲା ।

ପ୍ରଥମ ପର୍ଯ୍ୟାୟରେ 'ପ୍ରଜାତନ୍ତ୍ର' ଏକ ପରାଧୀନ ଜାତିକୁ ସ୍ୱଦେଶୀ ଭାବନା, ଜାତୀୟତା, ସ୍ୱାଧୀନତା ଓ ସ୍ୱାଭିମାନ ଦ୍ୱାରା ଉଦ୍‌ବୁଦ୍ଧ କରିବା ବେଳେ ସ୍ୱାଧୀନତା ପରେ ଏହା ହୋଇଥିଲା ଜନଚେତନାର ଜାଗ୍ରତ ପ୍ରହରୀ । ମହତାବଙ୍କର ସଂପାଦକୀୟ ଓ ଗାଁମଜଲିସ୍ ତାଙ୍କୁ ତାଙ୍କର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ଓଡ଼ିଶାର ଲୋକମାନଙ୍କ ସହିତ ଆତ୍ମିକ ସଂପର୍କ ସ୍ଥାପନରେ ସଶକ୍ତ, ସଫଳ ଓ ସମୁଜ୍ଜ୍ୱଳ ଭୂମିକା ନିଭାଇଛି । ଗାଁ ମଜଲିସ୍ ହୋଇପାରିଛି ମାନସିକ ପ୍ରକ୍ରିୟାର ସୂଚନାତ୍ମକ ଧାରା ।

ପ୍ରଜାତନ୍ତ୍ର ମହତାବଙ୍କର ମାନସ ସନ୍ତାନ । ପ୍ରଜାତନ୍ତ୍ରର ଛତ୍ରେ ଛତ୍ରେ ତାଙ୍କର ସ୍ୱପ୍ନ ଓ ଆଦର୍ଶର ବଳିଷ୍ଠ ସ୍ୱାକ୍ଷର ଦେଖିବାକୁ ମିଳେ । ସେ ପ୍ରଜାତନ୍ତ୍ର ମାଧ୍ୟମରେ ସାଧାରଣ ମତ ଗଠନ କରିବାରେ ସମର୍ଥ ହୋଇଥିଲେ । ଗାଁ ମଜଲିସ୍‌ର ବିଭିନ୍ନ ସଂଖ୍ୟାରେ ଡଃ ମହତାବ ସ୍ୱାଭିମାନ, ସ୍ୱାବଲମ୍ବନ ଓ ସ୍ୱଦେଶୀ ଏହି ତନିଗୋଟି ଭାବ ଉପରେ ଗୁରୁତ୍ୱ ଦେଉଥିଲେ । ଥରେ ଜନୈକ ଛାତ୍ର ମହତାବଙ୍କୁ 'ଗାଁ ମଜଲିସ୍' ନାମ କାହିଁକି ଦିଆ ଯାଇଛି ବୋଲି ପ୍ରଶ୍ନ କରିଥିଲେ । ଡକ୍ଟର ମହତାବ ଏହାର ଉତ୍ତରରେ ଲେଖିଥିଲେ, "ରାଜନୈତିକ ହେଉ ଅର୍ଥନୈତିକ ହେଉ ବା ଯେକୌଣସି ବିଷୟରେ ହେଉ, ସବୁ ଆଲୋଚନାରେ ସାଧାରଣ ଲୋକେ ଅଂଶ ଗ୍ରହଣ କରନ୍ତୁ ସେହି ଉଦ୍ଦେଶ୍ୟରେ 'ଗାଁ ମଜଲିସ୍'ର ସୃଷ୍ଟି ଆଜିକି ପ୍ରାୟ ତେଇଶି ବର୍ଷ ହେଲା । ଗ୍ରାମର ସାଧାରଣ ଲୋକଙ୍କ ଭିତରେ ବସି କୌଣସି ବିଷୟରେ ଆଲୋଚନା କରାହେଉଛି । ଏପରି ମନେକରି ଏହି ସ୍ତମ୍ଭରେ ବିଭିନ୍ନ ବିଷୟରେ ଆଲୋଚନା କରାଯାଇ ଥାଏ । କଲେଜ ବା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ନକରିଥିଲେ ମଧ୍ୟ ସବୁ ବିଷୟ ବୁଝିବା ଓ ସବୁ ବିଷୟରେ ମତ ଗଠନ କରିବାର ଶକ୍ତି ଗ୍ରାମବାସୀଙ୍କର ଅଛି । ସେହି ଶକ୍ତିର ଜାଗରଣ 'ଗାଁ ମଜଲିସ୍'ର ଉଦ୍ଦେଶ୍ୟ ।"

ପ୍ରଜାତନ୍ତ୍ର ସମ୍ବାଦ ପରିବେଷଣ ଓ ଉପସ୍ଥାପନାରେ ନୂତନତା ଓ ସ୍ୱତନ୍ତ୍ରତା ମହତାବଙ୍କ ଚିନ୍ତାଧାରାର ବଳିଷ୍ଠ ନିଦର୍ଶନ । ପ୍ରଜାତନ୍ତ୍ର ପୃଷ୍ଠାରେ 'ବାଟେ ଘାଟେ' ଶୀର୍ଷକ ବ୍ୟଙ୍ଗ ଚିତ୍ର ପରିବେଷଣ ଏହାକୁ ଆନ୍ତର୍ଜାତୀୟ ଓ ସର୍ବଭାରତୀୟ ସମ୍ବାଦପତ୍ରମାନଙ୍କ ସହିତ ସେହି ସ୍ତରରେ ପହଞ୍ଚାଇଛି । 1948 ଫେବୃୟାରୀ ମାସକୁ ସାପ୍ତାହିକ ପ୍ରଜାତନ୍ତ୍ର ପ୍ରକାଶ ପାଇଥିଲା । ଏଥିରେ ସୃଷ୍ଟି କରାଗଲା ଛାୟା ଓ ମଞ୍ଚ ବିଭାଗ । 1956 ରେ ତାହା ଛାୟା ଓ ରଙ୍ଗମଞ୍ଚ ନାମରେ ନାମିତ ହେଲା । ଦୈନିକ ସମ୍ବାଦପତ୍ର ଭାବେ ଓଡ଼ିଆ ଚଳଚିତ୍ର ଶିଳ୍ପକୁ ପ୍ରାଧାନ୍ୟ ଦେବାରେ ପ୍ରଜାତନ୍ତ୍ର ମଧ୍ୟ ଅଗ୍ରଣୀ ଥିଲା । ନାଟକ ବିଭାଗକୁ ଋଦ୍ଧିମନ୍ତ କରି, ଏହା ସହିତ

ସମ୍ଭ୍ରାନ୍ତ ଓ ଶିକ୍ଷିତବର୍ଗକୁ ସାମିଲ କରିବା ଉଦ୍ଦେଶ୍ୟରେ ମହତାବ ଲେଖିଥିଲେ ଏକାଙ୍କିକା 'ବାସ୍ତବିକା' ତାହା 1950 ମସିହାରେ ବିଷୁବ ମିଳନ ମଞ୍ଚରେ ଅଭିନୀତ ହୋଇଥିଲା । ଛାୟା ଓ ରଙ୍ଗମଞ୍ଚ ବିଭାଗରେ ଏହି ନାଟକ ସଂପର୍କରେ ଥିଲା ବିବରଣୀ । ସେଥିରେ ଲେଖାଥିଲା, "ବାସ୍ତବିକା" ଆଦର୍ଶ ଓ ବାସ୍ତବତାର ସଂଘର୍ଷ ଓ ପରେ ଏଇ ଦୁଇଟି ଭାବଧାରାର ସମନ୍ୱୟରେ ଲୋକେ କିପରି କ୍ରିୟାଶୀଳ ହୋଇ ଜୀବନ ପଥରେ ଅଗ୍ରସର ହୁଅନ୍ତି, ଏହା ହିଁ ନାଟକଟିର କଥାବସ୍ତୁ ।" ଏହି ନାଟକରେ ମହତାବ ମୁଖ୍ୟମନ୍ତ୍ରୀ ଥିବା ସତ୍ତ୍ୱେ ଶାସକର ଭୂମିକାରେ ଅଭିନୟ କରିଥିଲେ । ଓଡ଼ିଶା ରଙ୍ଗମଞ୍ଚର ଇତିହାସରେ ପ୍ରଥମଥର ପାଇଁ ମୁଖ୍ୟମନ୍ତ୍ରୀ, ଅଧ୍ୟାପକ, ଅଧ୍ୟାପିକା, ଛାତ୍ର ଏକତ୍ର ଭୂମିକା ଗ୍ରହଣ କରିଥିଲେ । ଆଦର୍ଶ, ବାସ୍ତବିକା, ପ୍ରଧାନ ଶାସକ ଜନତାର ପ୍ରତିନିଧି, ସାଧାରଣ ଲୋକ, ଜମିଦାର ଭୂମିକାରେ ଯଥାକ୍ରମେ ଅଧ୍ୟାପକ ଶ୍ରୀ ରାଜକିଶୋର ରାୟ, ଅଧ୍ୟାପିକା ଶ୍ରୀମତୀ ଦେବବାଳା ରାୟ, ଶ୍ରୀ ହରେକୃଷ୍ଣ ମହତାବ, ଶ୍ରୀ କେଶବଚନ୍ଦ୍ର ସାମଲ, ମହାପାତ୍ର ନୀଳମଣି ସାହୁ , ନୃସିଂହ ମହାପାତ୍ର ଅଭିନୟ କରିଥିଲେ ।

ରାଜ୍ୟର ମୁଖ୍ୟମନ୍ତ୍ରୀ ଭାବରେ ମହତାବ ସାଧାରଣ ମଞ୍ଚରେ ଅବତୀର୍ଣ୍ଣ ହେବା ତାଙ୍କର ବଳିଷ୍ଠ ଗଣତାନ୍ତ୍ରିକ ମୂଲ୍ୟବୋଧ ଓ କଳା ସଂସ୍କୃତି ପ୍ରତି ଗଭୀର ଅନୁରାଗର ପରିଚୟ ଦିଏ । ଏଥିପାଇଁ ପ୍ରଜାତନ୍ତ୍ର ପ୍ରଚାର ସମିତି ନାଟ୍ୟସଂସଦ ଗଠନ କରି ସେ ଥିଲେ ତାହାର ପ୍ରଧାନ ପୃଷ୍ଠପୋଷକ ।

କଳାକାରମାନଙ୍କୁ ସେମାନଙ୍କର କଳାକୁଶଳତାର ନୈପୁଣ୍ୟକୁ ଲୋକ ଲୋଚନରେ ଅଧିକ ପ୍ରଚାରିତ ଓ ପ୍ରସାରିତ କରିବା ପାଇଁ 1951 ମସିହା ବିଷୁବ ମିଳନ ଅବକାଶରେ ଏକ ଚିତ୍ରକଳା ପ୍ରଦର୍ଶନୀ ଆୟୋଜନ କରିଥିଲେ ମହତାବ ଏବଂ ଏହାର ଧାରାବାହିକତା ଏବେ ମଧ୍ୟ ଅବ୍ୟାହତ ରହିଛି । ପ୍ରଜାତନ୍ତ୍ର ମାଧ୍ୟମରେ ଅଗଣିତ ନବୀନ ଓ ପ୍ରବୀଣ ଶିଳ୍ପୀମାନଙ୍କର କଳା ପ୍ରତିଭାକୁ ପରିଚିତ କରାଇବାର ସୁଯୋଗ ପ୍ରଦାନ କରିବା ସହିତ ପ୍ରଜାତନ୍ତ୍ର କଳା ପୁରସ୍କାର ମଧ୍ୟ ସୃଷ୍ଟି କରିଥିଲେ । ମହତାବ ଚିତ୍ରକଳା ପ୍ରଦର୍ଶନୀ କିମ୍ବା ଚିତ୍ର ପ୍ରକାଶନ ମାଧ୍ୟମରେ ପ୍ରଜାତନ୍ତ୍ରକୁ ସୀମିତ ନରଖି ପ୍ରଜତନ୍ତ୍ରଠାରୁ ଝଙ୍କାର ପର୍ଯ୍ୟନ୍ତ ବିଭିନ୍ନ ସ୍ତମ୍ଭରେ କଳା ସଂସ୍କୃତିର ସମ୍ବାଦକୁ ଯଥୋଚିତ ସ୍ଥାନ ଦେଇଥିଲେ । ସାହିତ୍ୟ ପତ୍ରିକା ଝଙ୍କାରର ସଂପାଦକୀୟରେ ବିଶିଷ୍ଟ ଶିଳ୍ପୀମାନଙ୍କର ଆଦାନ, କୋଣାର୍କର ସଂରକ୍ଷଣ, ଭାରତରେ କଳା ଆନ୍ଦୋଳନ, ପ୍ରାଚୀନ କୀର୍ତ୍ତିର ଆବିଷ୍କାର, ପ୍ରତ୍ନତାତ୍ତ୍ୱିକ ଗବେଷଣା, ଗ୍ରୀସ୍‌ର କଳାବିଭବ ତଥା ବିଭିନ୍ନ କଳା ପ୍ରଦର୍ଶନୀ ସଂପର୍କରେ ତାଙ୍କର ବଳିଷ୍ଠ ଦୃଷ୍ଟିକୋଣ ଉପସ୍ଥାପନା କରୁଥିଲେ ।

# 7

# ଝଙ୍କାର ଓ ବିଷୁବ ମିଳନ

1949 ମସିହା ବିଷୁବ ସଂକ୍ରାନ୍ତି ଦିନ ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ପ୍ରକାଶ ପାଇଲା ଏକ ସାହିତ୍ୟ ପତ୍ରିକା ଝଙ୍କାର । ଏହା ସୃଷ୍ଟି କରିପାରିଲା ଏକ ସାହିତ୍ୟିକ ଆନ୍ଦୋଳନ । ଓଡ଼ିଆ ସାହିତ୍ୟର ସାଧନାକ୍ଷେତ୍ର ହେଲା ପ୍ରସାରିତ । ଝଙ୍କାର ସାହିତ୍ୟ ପତ୍ରିକା ସଂପର୍କରେ ତାଙ୍କର ମତ ଥିଲା ସ୍ପଷ୍ଟ । "ଆମ୍ଭମାନଙ୍କର ଉଦ୍ଦେଶ୍ୟ ସାହିତ୍ୟର ଅଭିବୃଦ୍ଧି । 'ଝଙ୍କାର' ବିଶୁଦ୍ଧ ଆଲୋଚନା ପାଇଁ, କୌଣସି ବିଷୟ ବା ନୀତିର ପ୍ରଚାର ପାଇଁ ଉଦ୍ଦିଷ୍ଟ ନୁହେଁ । ଓଡ଼ିଆ ସାହିତ୍ୟରେ ରାଜମାର୍ଗ ଅବ୍ୟବହୃତ ଅବସ୍ଥାରେ ପଡ଼ିରହିଥିବା ଫଳରେ ସେ ପଥ ଛାଡ଼ି ଲୋକେ ରୁଚି ଅନୁସାରେ ଭିନ୍ନ ଭିନ୍ନ ଅପ୍ରଶସ୍ତ ପଥର ଆଶ୍ରୟ ନେଉଛନ୍ତି । ସେହି ରାଜମାର୍ଗଟି ପରିଷ୍କାର କରି ତାକୁ ଆଧୁନିକ ଯାନବାହାନର ଉପଯୋଗୀ କରାଇବା ହେଲା ଆମ୍ଭମାନଙ୍କର ଧ୍ୟେୟ । ଏଥିରେ ହୁଏତ ଆମ୍ଭେମାନେ ଈର୍ଷାଭାଜନ ହୋଇପାରୁଁ । କିନ୍ତୁ ଆମ୍ଭେମାନେ ବାରମ୍ବାର ଘୋଷଣା କରୁଛୁ ଯେ, କାହାରି ବିରୋଧ ପାଇଁ ବା ସାହିତ୍ୟର କୌଣସି ନିର୍ଦ୍ଦିଷ୍ଟ ଗତି ନିର୍ଣ୍ଣୟ କରିବା ପାଇଁ ଆମ୍ଭେମାନେ ବାହାରି ନାହୁଁ । ଆମ୍ଭମାନଙ୍କର ସମସ୍ତ ଉଦ୍ୟମ ମାର୍ଗ ଉନ୍ମୋଚନ କରିବା ପାଇଁ । ସେଥିରେ ଯେ ଯା'ର ଯାନ ବ୍ୟବହାର କରୁ ବା ପାଦରେ ଚାଲୁ ।"

ଝଙ୍କାରରେ କି ପ୍ରକାର ସାହିତ୍ୟ ପ୍ରକାଶ ପାଇବ ଓ ସେଥିରେ କେଉଁମାନେ ଲେଖିବେ, ସେ ସଂପର୍କରେ ମଧ୍ୟ ମହତାବଙ୍କର ମତ ଥିଲା ସ୍ପଷ୍ଟ । ସେ ଲେଖିଥିଲେ, "ଯଦି ନବୀନ ଲେଖକମାନଙ୍କ ସଙ୍ଗରେ ଧାଡ଼ି ହେବା ପାଇଁ କାହାରି ଅନିଚ୍ଛା ଥାଏ, ତେବେ ଆମ୍ଭେମାନେ ନାଚାର । ସାହିତ୍ୟ କହାରିକୁ ଅପେକ୍ଷା କରେ ନାହିଁ; ସେ ତା'ର ଗତି କରିଯିବ, କେହି ସେଥିରେ ଯୋଗ ଦେଉ ବା ନଦେଉ ।"

'ଝଙ୍କାର'ର ଉଦ୍ଦେଶ୍ୟ କେବଳ ଲେଖିବା ପାଇଁ ପ୍ରଶ୍ରୟ ଦେବା ନୁହେଁ, ପଢ଼ିବା ପାଇଁ ଉତ୍ସାହ ଦେବା ମଧ୍ୟ ଏହାର ଅନ୍ୟତମ ଉଦ୍ଦେଶ୍ୟ । ମହତାବ ଝଙ୍କାରର ସଂପାଦକ ଭାବରେ ଯେଉଁ ସବୁ ସଂପାଦକୀୟ ଲେଖିଥିଲେ, ତାହା ପ୍ରଜାତନ୍ତ୍ରରେ ଲେଖୁଥିବା ସଂପାଦକୀୟ ଓ ଗାଁ ମଜଲିସ୍‌ଠାରୁ ଥିଲା ସଂପୂର୍ଣ୍ଣ ଭିନ୍ନ । 'ଝଙ୍କାର'ର ସଂପାଦକୀୟ 'ସାହିତ୍ୟର ମାର୍ଗ ଉନ୍ମୋଚନ' ଶୀର୍ଷକ ପୁସ୍ତକରେ ତିନି ଖଣ୍ଡରେ ପ୍ରକାଶ ପାଇଛି । ମହତାବ 'ଝଙ୍କାର'ର ଏକ ପରମ୍ପରା ସୃଷ୍ଟି କରିଯାଇଛନ୍ତି । "ପରମ୍ପରା ସୃଷ୍ଟି କରିବାର କାରଣ ହେଉଛି ଅନୁଷ୍ଠାନ

ପରମ୍ପରା ଯୋଗେ ବହୁକାଳ ସ୍ଥାୟୀ ହୁଏ । ପରମ୍ପରା ପ୍ରତି ଦୃଷ୍ଟି ଦେଇ ଯେଉଁ ଅନୁଷ୍ଠାନ ନିର୍ମିତ, ତା'ର ସ୍ଥାୟୀତ୍ୱ ନିଶ୍ଚିତ । ଉଦ୍ଦେଶ୍ୟ ସାଧନ ପାଇଁ ଯେଉଁ ତ୍ୟାଗ ଓ କଷ୍ଟ ସହିବାକୁ ହୁଏ, ତାହା ହିଁ ତପସ୍ୟା । ଯେଉଁ ଅନୁଷ୍ଠାନର ତପସ୍ୟା ଯେତେ ତାର ସ୍ଥାୟୀତ୍ୱ ସେତିକି ।"

ବର୍ତ୍ତମାନ ସମୟର ଓଡ଼ିଆ ସାହିତ୍ୟର ଯଶସ୍ୱୀ ଲେଖକ ମନୋଜ ଦାସ ମହତାବଙ୍କର ସ୍ମୃତିଚାରଣ କରି ଲେଖିଛନ୍ତି, "ପ୍ରଜାତନ୍ତ୍ର ପ୍ରଚାର ସମିତିର ପ୍ରତିଷ୍ଠାତା ଡକ୍ଟର ହରେକୃଷ୍ଣ ମହତାବ ଥିଲେ ତାଙ୍କ ସମୟର ଶ୍ରେଷ୍ଠ ମସ୍ତିଷ୍କ । ଭାରତୀୟ ସ୍ୱାଧୀନତାର ଅନ୍ୟତମ ସାରଥୀ, ଆଧୁନିକ ଓଡ଼ିଶାର ଏହି ନିର୍ଭୀକ ନିର୍ମାତା ବହୁ ଦୃଷ୍ଟିରୁ ଏକ ବର୍ଣ୍ଣାଢ୍ୟ ଅଥଚ୍ ବ୍ୟତିକ୍ରାନ୍ତ ବ୍ୟକ୍ତିତ୍ୱ କେବଳ ରାଜନୀତିକ ଗଣତନ୍ତ୍ର ନୁହେଁ, ଏକ ସାହିତ୍ୟିକ ଗଣତନ୍ତ୍ର ଗଢ଼ିବା ଦିଗରେ ମଧ୍ୟ ତାଙ୍କ ଆନ୍ତରିକତା ଅତୁଳନୀୟ । ସେ ଥିଲେ ଯଥାର୍ଥରେ ଏକ ଅଗ୍ରଗାମୀ ଚେତନାର ପ୍ରମୂର୍ତ୍ତ ପ୍ରତୀକ ।"

ଶ୍ରୀ ମନୋଜ ଦାସଙ୍କ ସହିତ ଡକ୍ଟର ମହତାବଙ୍କର 'ଝଙ୍କାର'ରେ ଲେଖା ନେଇ ଆଲୋଚ଼ନା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ମନୋଜ ଦାସ ପ୍ରଜାତନ୍ତ୍ର ପରିସରକୁ ଯାଇ ତାଙ୍କ ସହିତ ସାକ୍ଷାତ କଲା ବେଳେ ମହତାବ ତୀବ୍ର କଣ୍ଠରେ କହିଲେ, "ତୁମେ ଝଙ୍କାରରେ ଏତେ କମ୍ ଲେଖୁଛ କାହିଁକି ?" ଉତ୍ତର ଦେଲି, "ଝଙ୍କାର ବହୁ ଲେଖକଙ୍କ ସକାଶେ ଆଶା ତଥା ପ୍ରତିଷ୍ଠାର ମାଧ୍ୟମ । କୌଣସି ଜଣେ ଲେଖକ ବହୁତ ଅଧିକ ଲେଖିବା ଉଚ଼ିତ ନୁହେଁ ।" ମୃଦୁ ଭାବରେ ସେ ପୁଣି କହିଲେ, "ତୁମେ ଆଉ କାହାରି ପାଇଁ ଉଦ୍ଦିଷ୍ଟ ପୃଷ୍ଠା ନେଇଯିବା କଥା କେହି କହୁଛି ? ତୁମ ପାଇଁ ଉଦ୍ଦିଷ୍ଟ ପୃଷ୍ଠାରେ ତୁମେ ଲେଖିବ । ସବୁ ପତ୍ରିକାରେ କେତେ ଜଣ ନିୟମିତ ଲେଖକ ରହିବା ଆବଶ୍ୟକ ।"

ମହତାବ ଥିଲେ ବଳିଷ୍ଠ ସଂପାଦକ । ଶ୍ରୀ ରାଜକିଶୋର ରାୟ ଲେଖିଛନ୍ତି, "ଝଙ୍କାରର ଗୋଟିଏ ସଂଖ୍ୟାରେ ମୋର ଗଳ୍ପ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଉପରେ ଆଧାରିତ ଥିଲା । ତାଙ୍କର ଶ୍ରୀ ଜଗନ୍ନାଥ ଭକ୍ତି ଉପରେ ମୋର ସ୍ୱତଃସ୍ଫୁର୍ତ୍ତ ଭାବାବେଗ ସେଥିରେ ଆତ୍ମପ୍ରକାଶ କରିଥିଲା । ତାଙ୍କୁ ମୁଁ ସ୍ତୁତି କରି ନଥିଲି; ମାତ୍ର ଶ୍ରୀ କୁଞ୍ଜ ରାୟ ଡକ୍ଟର ମହତାବଙ୍କୁ ଏକ ପତ୍ର ଲେଖି ଏଭଳି ଭାଟଗିରି କରୁଥିବା ଆଧ୍ୟାପକ ରାଜ କିଶୋର ରାୟଙ୍କୁ ଏ କିସମର ଗଳ୍ପ ଲେଖିବାରୁ ନିବୃତ୍ତ କରାନ୍ତୁ ବୋଲି ପରାମର୍ଶ ଦେଇଥିଲେ, ମତେ ବି ଚ଼ିଠି ଲେଖି ତାଙ୍କର ଅସନ୍ତୋଷ ଜଣାଇଥିଲେ ।"

"ଡକ୍ଟର ମହତାବ ସଂପାଦକୀୟରେ ଲେଖିଥିଲେ, "ଗଳ୍ପ ଲେଖକ ଜଣେ ପ୍ରତିଷ୍ଠିତ ସମ୍ମାନିତ ସାହିତ୍ୟିକ, ତାଙ୍କ କଥା ସେ ଜଣାଇଲେ, ଆମେ ତାହା ପ୍ରକାଶ କଲୁ । ତାଙ୍କ ମତ ସହିତ ମତ ପାର୍ଥକ୍ୟ ଥାଇପାରେ, କିନ୍ତୁ ତାଙ୍କର ପ୍ରବୀଣତା ଓ ଦୀର୍ଘକାଳର ସାହିତ୍ୟ ସେବାକୁ ତୁଚ୍ଛ କରାଯାଇ ନପାରେ ।"

ବହୁ ବହୁ ସାରସ୍ୱତ ସ୍ରଷ୍ଟାଙ୍କୁ ସୃଷ୍ଟି କରିଛି ରବିବାସରୀୟ ପ୍ରଜାତନ୍ତ୍ର ଓ ଝଙ୍କାର । ଝଙ୍କାର ପତ୍ରିକାରେ ଏକ ସମୟରେ କାର୍ଯ୍ୟ କରିଥିବା ସାହିତ୍ୟିକ ମହାପାତ୍ର ନୀଳମଣି ସାହୁଙ୍କ ମତରେ, "ଅଶେଷ କୃତଜ୍ଞତାର ସହିତ ମୁଁ ଆଜି ସ୍ୱୀକାର କରୁଛି-ଏହି ପ୍ରଜାତନ୍ତ୍ର ଓ ଝଙ୍କାର ହିଁ ମୋତେ ଜନ୍ମ ଦେଇଛି । ଜନ୍ମ ଦେଇଛି ମୋର ସାହିତ୍ୟିକ ବ୍ୟକ୍ତିତ୍ୱକୁ; ମୋର

ସାରସ୍ୱତ ସୃଷ୍ଟିକୁ । ସେ ପାଳନ କରିଛି– ବର୍ଦ୍ଧନ କରିଛି । ମୋଠାରୁ ବହୁ ଗୁଣରେ ପ୍ରତିଭାବାନ ବିଶିଷ୍ଟ ସାହିତ୍ୟିକମାନେ ମଧ୍ୟ ମୂଳରୁ ଏଯାଏଁ ତାରି ଭିତରୁ ଜନ୍ମ ଓ ବିକାଶ ଲାଭ କରିଛନ୍ତି ଓ କରୁଛନ୍ତି ମଧ୍ୟ ଏବଂ ଅପର ପକ୍ଷରେ ଏହା ମଧ୍ୟ ସ୍ୱୀକାର କରିବାକୁ ହେବ ଯେ ଆମେ ସମସ୍ତେ ମିଳିମିଶି ପ୍ରଜାତନ୍ତ୍ର ଓ ଝଙ୍କାରକୁ ଜନ୍ମ ଦେଇଛୁ ଓ ଗଠନ କରିଛୁ । ଏ ଅନୁଷ୍ଠାନ ଆମର ଆତ୍ମଜମାନଙ୍କ ସଦୃଶ ପ୍ରିୟତର ଓ ନିକଟତର । ସେହିପରି ଏହାର ସ୍ରଷ୍ଟାଙ୍କ ପ୍ରତି ମଧ୍ୟ ଆମ ହୃଦୟରେ ଚିର ଦିନ ଏକ ଗଭୀର ବିନମ୍ର କୃତଜ୍ଞତା ଲାଗିରହିଥିବ ।

ଝଙ୍କାରର ସଂପାଦକ ଭାବେ ପ୍ରତ୍ୟେକ ଲେଖକମାନଙ୍କର ଲେଖାରୁ ଗଳ୍ପର ଚରିତ୍ରମାନଙ୍କୁ ସାଉଁଟି ଆଣି, କଥା ଛଳରେ ଉପସ୍ଥାପନା କରିବା ଥିଲା ମହତାବଙ୍କର ଅନ୍ୟ ଏକ ବିଶେଷତ୍ୱ । ଦୁର୍ଗାମାଧବ ମିଶ୍ର ଏ ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି, "କେବଳ ସେତିକି ନୁହେଁ, ପ୍ରତି ଲେଖା ସେ ନିଜେ ପଢ଼ନ୍ତି । ଗଳ୍ପର ନାୟକ ନାୟିକାମାନଙ୍କ ନାମ ମନେ ରଖନ୍ତି । ଥରେ, ତାଙ୍କୁ ଦେଖା କରିବାକୁ ଅନ୍ୟମାନଙ୍କ ସହିତ ପ୍ରଜାତନ୍ତ୍ର ଅଫିସକୁ ଯାଇଥିବା ବେଳେ (ପ୍ରାୟ ପ୍ରତି ଅପରାହ୍ଣରେ ତାଙ୍କ ସହିତ କଥାବାର୍ତ୍ତା ହେବାକୁ ଆମେ ଯାଉ) ଗମ୍ଭୀର ହୋଇ ପଚାରି ଦେଲେ, "କିଓ ଦୁର୍ଗାମାଧବ ! ସଙ୍ଖାଳି ଆଜି କ'ଣ ଖାଇବାକୁ ଦେଇଥିଲା ? ସେହି ସାରୁ ସନ୍ତୁଳା ଓ ପାଣିଆ ଡାଲି ?" ଦୁଇ ମିନିଟ୍ ଲାଗିଗଲା ମୋତେ ବୁଝିବାକୁ ଯେ ମୋର ସଦ୍ୟ ଗଳ୍ପ (ସେ ପର୍ଯ୍ୟନ୍ତ ପ୍ରକାଶ ପାଇନଥାଏ, ପରମାସରେ ପ୍ରକାଶ ପାଇବ) ର ନାୟକ ମୋ ମେସ୍‌ର ପୂଜାରୀ ସଂଙ୍ଖାଳି କଥା ପଚାରୁଛନ୍ତି । ସେହି ଗଳ୍ପରେ ଲେଖିଥିଲି, ସେ ପୂଜାରୀ ମେସରେ କ'ଣ ଖାଇବାକୁ ଦେଉଛି । ମୁଁ ମୁହଁ ପୋତିଦେଲି । ହୋ ହୋ ହୋଇ ହସି ଉଠିଲେ । ଆଣ, ଆଣ, ଜଳଖିଆ ପ୍ୟାକେଟ୍ ସବୁ ନେଇ ଆସ । ମୋତେ ତ ଲାଗୁଛି, ସେହି ସଙ୍ଖାଳି ମୋତେ ମଧ୍ୟ ଆଜି ସାରୁ ସିଝା ଖାଇବାକୁ ଦେଇଛି ।" ଲେଖକମାନଙ୍କ ପ୍ରତି ମହତାବଙ୍କର ଏଥିଲା ହୃଦୟର ସ୍ୱତଃସ୍ଫୂର୍ତ୍ତ ସଂବେଗ । ଏକ ମହାନ୍, ବିଶାଳ ଓ ବିଚକ୍ଷଣ ହୃଦୟରୁ ହିଁ ଏପରି ସ୍ନେହ ଓ ଶ୍ରଦ୍ଧାର ପ୍ରସ୍ରବଣ ହୋଇପାରେ । ଲେଖକମାନଙ୍କଠାରୁ ଝଙ୍କାର ପାଇଁ ଲେଖା ପାଇବାର ପ୍ରତିଶ୍ରୁତି ଏହି ଉଦାର ହୃଦୟ ସେହ୍ନ ଓ ଶ୍ରଦ୍ଧାରୁ ହିଁ ଜନ୍ମଲାଭ କରିଥିଲା ।

ଆଧୁନିକ ଓଡ଼ିଆ ସାହିତ୍ୟର ଅଭ୍ୟୁଦୟ ଓ ବିକାଶରେ ଉତ୍କଳ ଦର୍ପଣ, ଉତ୍କଳ ସାହିତ୍ୟ, ମୁକୁର ଓ ଝଙ୍କାରର ଭୂମିକା ଅତ୍ୟନ୍ତ ସ୍ମରଣୀୟ । ଓଡ଼ିଆ ସାହିତ୍ୟରେ 'ଝଙ୍କାର' ସୃଷ୍ଟି କରିଛି ଏକ ଉଚ୍ଚ ଐତିହ୍ୟ, ଉଚ୍ଚାଙ୍ଗ ସଂସ୍କୃତି ଓ ଏକ ଉତ୍ତୁଙ୍ଗ ପରମ୍ପରା । ଓଡ଼ିଆ ସାହିତ୍ୟର ସୃଜନ ଦିଗରେ ନୂଆ ନୂଆ ସମ୍ଭାବନା ସୃଷ୍ଟି ହୋଇପାରିଛି । ଓଡ଼ିଶାର ନିଷ୍ପ୍ରଭ ସାରସ୍ୱତ ଆକାଶରେ ଝଙ୍କାର ସୃଷ୍ଟି କରିପାରିଛି ନୂତନ ମୂର୍ଚ୍ଛନା । ଓଡ଼ିଆ ସାହିତ୍ୟର ଏକ ଦୟନୀୟ ସ୍ଥିତି ସମୟରେ ମହତାବ ରବିବାର ପ୍ରଜାତନ୍ତ୍ରର ସାହିତ୍ୟ ସଂଖ୍ୟା ପ୍ରକାଶ କରି ଝଙ୍କାର ସାହିତ୍ୟ ପତ୍ରିକାର ପରିକଳ୍ପନା କଲେ । ଏ ସଂପର୍କରେ ମହତାବ ଲେଖିଥିଲେ, "କେବଳ କର୍ତ୍ତବ୍ୟର ପ୍ରେରଣାରେ ରବିବାର ପ୍ରଜାତନ୍ତ୍ର ଓ ଝଙ୍କାର ଆରମ୍ଭ କରାଯାଇଥିଲା । ଏହି ବିଶ୍ୱାସରେ ଯେ ଲେଖକ ଲେଖିକା ବାହାରି ପଡ଼ନ୍ତୁ, ସ୍ରୋତର ପ୍ରତିବନ୍ଧକ ଦୂର ହୋଇଗଲେ ଓଡ଼ିଆ ସାହିତ୍ୟ କ୍ରମେ ସ୍ୱାଭାବିକ ଅବସ୍ଥାକୁ ଆସିଯିବ ଏହା ଥିଲା ମୋର ବିଶ୍ୱାସ । ଓଡ଼ିଆ ସାହିତ୍ୟର ଅନ୍ତର୍ନିହିତ ଶକ୍ତି ଉପରେ ବିଶ୍ୱାସ ରଖି ଏଥିରେ ମୁଁ ଆଗେଇ ଥିଲି ।"

ଝଙ୍କାର ପତ୍ରିକାର ସ୍ଥାନିତ ପ୍ରଥମ ସାରସ୍ୱତ କୃତିଟିର ନାମ ଥିଲା 'ଝଙ୍କାର' । ତା'ର ଲେଖକ ହରେକୃଷ୍ଣ ମହତାବ ।

ସେ କବିତାଟି ଏହିପରି,

"ଗଭୀର ସୁଷୁପ୍ତି ଭେଦି
ପ୍ରବେଶିଲା ସେ ଝଙ୍କାର
ବିଶ୍ୱ ବେନି କର୍ଣ୍ଣେ
ଭାଙ୍ଗିଲା ଜଡ଼ତା ବେଗେ
ଚେତନା ହୋଇଲା ସର୍ବ
ଜୀବନ ସ୍ପନ୍ଦନେ ।
ସେହି ଯେ ଝଙ୍କାର ମୂଳ
ଚାଲିଛି ମୂର୍ଚ୍ଛନା ତାର
ଯୁଗ ଯୁଗ ବାହି
ଢାଲିଥିବ କାଳ କାଳ
ଅକସ୍ମାତ ଲିଭିଯିବ
ଅନନ୍ତରେ ଯାଇ ।
ଜୀବନ ଝଙ୍କାର ସେ ତ,
ଆଶାମୟ, ପ୍ରେମମୟ
ଉନ୍ମାଦନାଭରା,
ଆନୁପ୍ରାଣି ସେହି ସ୍ୱରେ,
କର୍ମମୟ ହେଉ ସର୍ବେ
ଅନିତ୍ୟ ଜୀବନ ପରା ।"

ଝଙ୍କାର ହେଉଛି ବିଶ୍ୱ ଚେତନାର ମର୍ମରିତ ଧ୍ୱନି । ଭୂମିରୁ ଭୂମା ଅବରୋଧର ସ୍ୱର । ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ପାଦପୀଠ । ଏ ପାଦପୀଠର କାଣ୍ଡାରି ହେଉଛନ୍ତି ନମସ୍ୟ ମହତାବ ।

**ବିଷୁବ ମିଳନ :** ବିଷୁବ ମିଳନ ଏକ ସାହିତ୍ୟ ଆନ୍ଦୋଳନ । ବୈଶାଖ ମାସରେ ଅନୁଷ୍ଠିତ ବିଷୁବ ସଂକ୍ରାନ୍ତି ହିଁ ବର୍ଷର ପ୍ରଥମ ଦିବସ । ମହତାବ ଏହି ଦିନଟିକୁ ବିଷୁବ ମିଳନ ଭାବରେ ପ୍ରତିଷ୍ଠା କରାଇବା ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣା । ଲେଖକମାନଙ୍କ ମଧ୍ୟରେ ଭାବ ବିନିମୟ ପାଇଁ ଏହା ଏକ ମିଳନ ତୀର୍ଥ । ପାଠକ, ଲେଖକ, ପ୍ରକାଶକ, ବୁଦ୍ଧିଜୀବୀ, ଗବେଷକ ଓ ଛାତ୍ର ଏମାନେ ଏହି ସାରସ୍ୱତ ପୀଠରେ ଏକତ୍ରିତ ହୋଇଥାନ୍ତି ସେହି ଦିନ । 'ଝଙ୍କାର' ପତ୍ରିକାର ଏହା ହେଉଛି ବାର୍ଷିକ ଉତ୍ସବ । ବିଷୁବ ମିଳନ ସଂସ୍କୃତି ଓ ସଂଗଠନକୁ ସୁଦୃଢ଼ କରି ପାରିଛି । ବିଷୁବ ମିଳନ ବର୍ତ୍ତମାନ ଏକ ଜାତୀୟ ସାରସ୍ୱତ ପର୍ବରେ ରୂପାନ୍ତରିତ ହୋଇ ପାରିଛି । ଝଙ୍କାର ପୃଷ୍ଠାରେ ମହତାବ ଲେଖିଥିଲେ, "ନୂତନ ଯୁଗର ପରିକଳ୍ପନା ।

ଏଥିରେ ମୁଁ ଓତପ୍ରୋତ ଭାବରେ ଜଡ଼ିତ ହେବା ସ୍ୱାଭାବିକ । x x x ମୋର କଳ୍ପନା- ଓଡ଼ିଶାରେ ସବୁ କ୍ଷେତ୍ରରେ ଏକ ନବଯୁଗର ସୃଷ୍ଟି କରିବା, ଆଶା ଅଭିଳାଷ ଜାଗ୍ରତ କରିବା । ଓଡ଼ିଶା ସବୁକ୍ଷେତ୍ରରେ ଅନ୍ୟ ଉନ୍ନତ ପ୍ରଦେଶ ସହିତ ସମକକ୍ଷ ହେଉ, ଓଡ଼ିଶା ପାଇଁ ଗର୍ବ ଅନୁଭବ କରୁ । x x x ଆଗପଛ କିଛି ବିଚାର ନକରି 'ପ୍ରଜାତନ୍ତ୍ର ପ୍ରଚାର ସମିତି' ସ୍ଥାପିତ ହେଲା 1947 ରେ । x x x ବହୁ ଶିକ୍ଷିତ ଉତ୍ସାହୀ ଯୁବକ ତ୍ୟାଗ ସ୍ୱୀକାର କରି ଆମ ସହିତ ଯୋଗ ଦେଲେ । ଏପରି ଘନିଷ୍ଠ ଭାବରେ ସେମାନେ ଯୋଗଦେଲେ ଯେ ବାସ୍ତବିକ ପ୍ରଜାତନ୍ତ୍ର ପ୍ରଚାର ସମିତି ଏକ ବିରାଟ ପରିବାରରେ ପରିଣତ ହେଲା । 'ପ୍ରଜାତନ୍ତ୍ର'କୁ କେନ୍ଦ୍ରକରି ଛୋଟ ବଡ଼ ବହୁ ଅନୁଷ୍ଠାନ ଗଢ଼ିବାରେ ପ୍ରଧାନ ହେଲା 'ଝଙ୍କାର' ଓ ତାର ସ୍ୱାଭାବିକ ପରିଣତି 'ବିଷୁବ ମିଳନ' ।

ମହତାବ 1987 ବିଷୁବ ଅଭିନନ୍ଦନରେ କହିଥିଲେ, "ଲେଖକମାନଙ୍କ ମଧ୍ୟରେ ବ୍ୟକ୍ତିଗତ ପରିଚୟ ଓ ଭାବର ଆଦାନପ୍ରଦାନ ଏ ମିଳନର ଉଦ୍ଦେଶ୍ୟ । ଦୁଇଟି ପତ୍ର ପତ୍ରିକା(ରବିବାର ପ୍ରଜାତନ୍ତ୍ରଓ ଝଙ୍କାର) ପ୍ରତି ସେମାନଙ୍କର ପ୍ରୀତି ଆଶୀର୍ବାଦ ଭିକ୍ଷା ମଧ୍ୟ ସେଥିରେ ଅଛି । ଆନନ୍ଦୋତ୍ସବ ସେଥିରେ ଅଂଶ । ଆମ୍ଭେମାନେ ଆଶା କରୁ ଏହି ମିଳନ ବର୍ଷକୁ ବର୍ଷ ଦୃଢ଼ତର ହେବ" । ସେ ପୁନଶ୍ଚ ଲେଖିଥିଲେ, "କ୍ଷୁଦ୍ର ପରିସରରେ ପରସ୍ପର ମତଭେଦ ଅତିବେଶୀ ପ୍ରକାଶ ପାଏ; ସ୍ତାବକତ୍ୱ ପ୍ରଶ୍ରୟ ପାଇଥାଏ, କ୍ଷୁଦ୍ରଚିନ୍ତା ପ୍ରାଧାନ୍ୟ ଲାଭ କରେ । ଏ ସବୁକୁ ଅତିକ୍ରମ କରିବାର ଉପାୟ ହେଉଛି ଉଚ୍ଚାଭିଳାଷ । ଏଇଠି ଆମର କ୍ଷୁଦ୍ର ଗଣ୍ଡି ମଧ୍ୟରେ ପ୍ରଶଂସା ଭାଜନ ହେବାର, ପ୍ରତିଷ୍ଠା ଅର୍ଜନ କରିବାର ଅଭିଳାଷ ଜାଗ୍ରତ ହେଉ । ଏହି ଅଭିଳାଷ ଟିକକ ଜାଗ୍ରତ ହେଲେ ହେଁ ଓଡ଼ିଶାର ଅଗ୍ରଗତି ଅପ୍ରତିହତ ରହିବ, ଏଥିରେ ସନ୍ଦେହ ନାହିଁ । ସେହି ଅଭିଳାଷର ଉଦ୍ରେକ କରାଇବା, 'ପ୍ରଜାତନ୍ତ୍ର ପ୍ରଚାର ସମିତି'ର କାର୍ଯ୍ୟ ସେହି ଅଭିଳାଷର କର୍ଷଣ କରିବା 'ବିଷୁବ ମିଳନ'ର ଉଦ୍ଦେଶ୍ୟ । ସେହି ଅଭିଳାଷକୁ ରୂପରେଖ ଦେବା ସାହିତ୍ୟିକର ଧର୍ମ ।"

ମହତାବ ବିଷୁବ ମିଳନ ଆରମ୍ଭ କରିବା ମୂଳରେ ଥିବା ଉଦ୍ଦେଶ୍ୟଗୁଡ଼ିକ ହେଲା (କ) ଲେଖକମାନଙ୍କ ମଧ୍ୟରେ ପାରସ୍ପରିକ ଭାବବିନିମୟ । ଦୀର୍ଘବର୍ଷଧରି ବିଷୁବ ମିଳନ ଏହି ଉଦ୍ଦେଶ୍ୟକୁ ପୂରଣ କରିଚାଲିଛି । (ଖ) ଲେଖକମାନଙ୍କୁ କର୍ମ ପ୍ରବଣ କରି ଗଢ଼ିତୋଳିବା ଏବଂ ବରିଷ୍ଠ ଓ କନିଷ୍ଠ ମଧ୍ୟରେ ସୁସଂପର୍କ ସ୍ଥାପନ କରି ଅଗ୍ରଗାମୀ ମୂଲ୍ୟବୋଧର ପ୍ରତିଷ୍ଠା କରିବା । ବିଷୁବ ମଞ୍ଚରେ ଉଭୟ ବରିଷ୍ଠ ଓ କନିଷ୍ଠମାନଙ୍କର ମିଳନ ହେବା ବେଳେ ଝଙ୍କାର ପୃଷ୍ଠାରେ ସେମାନଙ୍କର ଲେଖନୀ ମଧ୍ୟ ଝଙ୍କୃତ ହୋଇଛି । (ଗ) ସମଗ୍ର ରାଜ୍ୟରେ ଏକ ସାହିତ୍ୟିକ ପରିବାର ଗଠନ କରିବା । ପରିବାର ମଧ୍ୟରେ ଥିବା ସୌହାର୍ଦ୍ଦ୍ୟ, ସଂହତି ଓ ସଂପ୍ରୀତିକୁ ବିଷୁବ ମିଳନ ଅଧିକ ଦୃଢ଼ୀଭୂତ କରିବ ଏହା ଥିଲା ମହତାବଙ୍କର ବିଶ୍ୱାସ । (ଘ) ଝଙ୍କାର ଓ ରବିବାର ପ୍ରଜାତନ୍ତ୍ର ପାଇଁ ଲେଖକୀୟ ଶ୍ରଦ୍ଧା ହାସଲ କରିବା । ଏଥିପାଇଁ ସେ ସାହିତ୍ୟର ବିଭିନ୍ନ ବିଭାଗରେ ଅବଦାନ ପାଇଁ ପୁରସ୍କାର ଓ ଉପଢୌକନର ବ୍ୟବସ୍ଥା କରିଥିଲେ । ବିଷୁବ ମଣ୍ଡପରେ ସାହିତ୍ୟିକ, କଳାକାର, ଶିଳ୍ପୀ ଓ କ୍ରୀଡ଼ାବିତ୍‌ମାନଙ୍କୁ ସମ୍ବର୍ଦ୍ଧିତ କରିବା ଦ୍ୱାରା ଏହି ଲେଖନୀୟ ଶ୍ରଦ୍ଧା ହାସଲ ଦିଗଟି ଚରିତାର୍ଥ ହୋଇଛି ।

(ଡ) ବିଭିନ୍ନ ଭାଷାର ବରିଷ୍ଠ ଓ ସ୍ୱନାମଧନ୍ୟ ଲେଖକମାନଙ୍କୁ ଆହ୍ୱାନକରି ସେମାନଙ୍କ ମାଧ୍ୟମରେ ଭାରତୀୟ ଭାଷା ସଂପର୍କରେ ଅବଗତ ହେବା ଏବଂ ରାଷ୍ଟ୍ରସ୍ତରରେ ଓଡ଼ିଆ ଭାଷା ଓ ଲେଖକଙ୍କ ପ୍ରତି ସଦିଚ୍ଛା, ଶ୍ରଦ୍ଧା ଓ ସୁଯୋଗ ସୃଷ୍ଟି କରିବା । ଏହା ସାହିତ୍ୟିକ ପରମ୍ପରାକୁ ବଳିଷ୍ଠ କରେ ଓ ସାହିତ୍ୟିକ ବାତାବରଣକୁ ସ୍ଫୂର୍ତ୍ତି ଓ ପ୍ରେରଣା ଯୋଗାଇ ଥାଏ । (ଚ) ବିଷୁବ ମିଳନରେ ବିଭିନ୍ନ ଅତିଥିମାନଙ୍କ ଦ୍ୱାରା ପ୍ରଦତ୍ତ ଅଭିଭାଷଣ ଓଡ଼ିଆ ସାହିତ୍ୟର ଗବେଷକ ଓ ପାଠକମାନଙ୍କ ପାଇଁ ନୂତନ ଦିଗନ୍ତର ସନ୍ଧାନ ଦେଇଛି । ବିଭିନ୍ନ ପ୍ରାନ୍ତୀୟ ଓ ବୈଦେଶିକ ସାହିତ୍ୟ ସହ ପରିଚିତ ହେବାର ସୁଯୋଗ ସୃଷ୍ଟି କରିଛି । (ଛ) ବିଷୁବ ମଣ୍ଡପରେ ଅନୁଷ୍ଠିତ ହୁଏ କବିତା ପାଠୋତ୍ସବ । ପ୍ରମୁଖ ଓ ଅଗ୍ରଗଣ୍ୟ କବିମାନଙ୍କ ସହିତ ତରୁଣମାନେ ମଧ୍ୟ କବିତା ପାଠରେ ଅଂଶ ଗ୍ରହଣ କରନ୍ତି । ତରୁଣ କବି ମନରେ ସୃଷ୍ଟି ହୁଏ ନୂତନ ଉନ୍ମାଦନା ଓ ଉତ୍ସାହ । (ଜ) ସର୍ବୋପରି ବିଷୁବ ମିଳନ ସମଗ୍ର ଓଡ଼ିଶାରେ ସୃଷ୍ଟି କରିଛି ଏକ ସାହିତ୍ୟ ଆନ୍ଦୋଳନ ଯାହାର ବ୍ୟାପ୍ତି ଓ ପ୍ରଶସ୍ତି ରାଜ୍ୟବ୍ୟାପୀ ହୋଇପାରିଛି ।

1950 ମଇ ମାସ ଝଙ୍କାରର ଦ୍ୱିତୀୟ ସଂଖ୍ୟାରେ ମହତାବ ବିଷୁବ ମିଳନ ସଂପର୍କରେ ଲେଖିଥିଲେ, "ଗତ ଅପ୍ରେଲ 13 ତାରିଖ ବିଷୁବ-ସଂକ୍ରାନ୍ତି ଦିନ ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା 'ବିଷୁବମିଳନ' ଅନୁଷ୍ଠିତ ହୋଇଯାଇଛି । ଏହାର ବିବରଣୀ ଅନ୍ୟତ୍ର ପ୍ରକାଶିତ ହୋଇଛି । ଏ ମିଳନରେ ଏତେ ସଂଖ୍ୟକ ଲେଖକ ଓ ଲେଖିକା ଯୋଗ ଦେବେ ବୋଲି ଆଶା କରାଯାଇ ନଥିଲା । ଅନେକ ଦୂରସ୍ଥାନରୁ ହାତରୁ ଖର୍ଚ୍ଚକରି ଆସି ଏ ମିଳନରେ ଯୋଗ ଦେଇଥିଲେ । ବାସ୍ତବିକ ସାହିତ୍ୟିକମାନଙ୍କର ପାରସ୍ପରିକ ମିଳନ, ପ୍ରତ୍ୟେକର ଉତ୍ସାହ ଓ ଅଭିବୃଦ୍ଧି ଆବଶ୍ୟକ । 'ବିଷୁବ ମିଳନ ପରେ ପ୍ରତ୍ୟେକ ଉତ୍ସାହରେ ଫେରିଛନ୍ତି, ଏ ସମ୍ବାଦ ମଧ୍ୟ ମିଳିଛି । 'ବିଷୁବ ମିଳନ'ଯେ ଏ ବର୍ଷକରେ ଶେଷ ହେଲା, ତାହା ନୁହେଁ । ଏ ମଧ୍ୟ ଧୀରେ ଧୀରେ ଏକ ଅନୁଷ୍ଠାନରେ ପରିଣତ ହେବ । ଆସନ୍ତା ବର୍ଷ ଆହୁରି ବିଧିବଦ୍ଧ ଭାବେ ଏ ମିଳନଟି ଅନୁଷ୍ଠିତ ହେବ ବୋଲି ଆଶା କରୁଁ ।"

ମହତାବ ବିଷୁବ ମିଳନଟି ଆରମ୍ଭ କରିବା ଦିନଠାରୁ ଏହା ଯେପରି ଦିନକୁ ଦିନ ଉତ୍କର୍ଷତା ଲାଭକରେ ଓ ସମସ୍ତଙ୍କର ଗ୍ରହଣୀୟ ହୁଏ, ସେଥିପ୍ରତି ସଚେତନ ଥିଲେ । 1951 ମାର୍ଚ୍ଚ ମାସରେ ବିଷୁବ-ମିଳନର ଅବ୍ୟବହିତ ପୂର୍ବରୁ ସେ ଲେଖିଥିଲେ, "ଦ୍ୱିତୀୟ ବର୍ଷର ଶେଷରେ ତୃତୀୟ ବର୍ଷର ଅଭିନନ୍ଦନ ପାଇଁ ଆମ୍ଭେମାନେ ପୁଣି 'ବିଷୁବ ମିଳନ'ର ଆୟୋଜନ କରୁଛୁଁ । ଦିନକ ପାଇଁ ପରିବାରର ସମସ୍ତ ବନ୍ଧୁବାନ୍ଧବଙ୍କ ସହ ମିଳନ ହେବ, ଯଥା ଶକ୍ତି ପ୍ରୀତ୍ୟୁପହାର ମଧ୍ୟ ଆମ୍ଭେମାନେ ଅର୍ପଣ କରିବୁ, ଯେଉଁମାନେ ଆମ୍ଭମାନଙ୍କୁ ସେମାନଙ୍କର ଲେଖାର ଉପହାର ଦେଇ ଆସୁଛନ୍ତି ସେମାନଙ୍କ ପ୍ରତି ସାଧାରଣ ଗୃହସ୍ଥର ସୌଜନ୍ୟ ପାଳନ କରିବା ପାଇଁ ଆମ୍ଭେମାନେ ଚେଷ୍ଟା କରିବୁଁ । ବିଷୁବ ମିଳନର କାର୍ଯ୍ୟକ୍ରମ ଅନ୍ୟତ୍ର ପ୍ରକାଶିତ ହୋଇଛି । ସମ୍ବାଦପତ୍ରରେ ମଧ୍ୟ ବାହାରିବ । ଆମ୍ଭେମାନେ ଆଶା କରୁଁ ଆମର ପରିବାରର ସମସ୍ତେ ଆମେ ବିଷୁବ ସଂକ୍ରାନ୍ତି ଦିନ ଆମରି ଘରେ ଏକତ୍ର ହୋଇ ତୃତୀୟ ବର୍ଷର ଅଭିନନ୍ଦନ କରିବୁ ।"

ବିଷୁବ ମିଳନ ପରେ ସେ ସଂପର୍କରେ କିପରି ଆତ୍ମସମୀକ୍ଷା କରି ଆତ୍ମ-ସମାଲୋଚନା କରିଛନ୍ତି ତାହା ମଧ୍ୟ ଉଲ୍ଲେଖଯୋଗ୍ୟ । ସେ ଲେଖିଥିଲେ, "ଗତ ଅପ୍ରେଲ 13 ତାରିଖ ଦିନ ବିଷୁବ ମିଳନର ଦ୍ୱିତୀୟ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଅଧ୍ୟାପକ ଆର୍ତ୍ତବଲ୍ଲଭ

ମହାନ୍ତି ସଭାପତିର ଆସନ ଗ୍ରହଣ କରିଥିଲେ । ଏ ଅଧିବେଶନର ବିଶେଷତ୍ୱ ଏହା ଥିଲା, ଓଡ଼ିଶାର ପ୍ରକାଶିତ ପତ୍ରପତ୍ରିକା ଓ ପୁସ୍ତକପୁସ୍ତିକାମାନଙ୍କର ଏକ ପ୍ରଦର୍ଶନୀ ଆୟୋଜନ କରାଯାଇଥିଲା । ମୁଦ୍ରାଯନ୍ତ୍ର ବ୍ୟବହାର ଦିନଠାରୁ ଆଜି ସୁଦ୍ଧା ପ୍ରକାଶିତ ବସ୍ତୁ ଯେଉଁଠି ଯାହା ମିଳିଛି ସବୁଥିର ନମୁନା ପ୍ରଦର୍ଶିତ ହୋଇଥିଲା । ଏ ପ୍ରଦର୍ଶନୀ ସର୍ବସମ୍ମତି କ୍ରମେ ଏକ ନୂତନ ଉଦ୍ୟମ ଓ ଏହା ଦର୍ଶକମାନଙ୍କର ପ୍ରଶଂସା ଅର୍ଜନ କରିଥିଲା । କିନ୍ତୁ ବିଷୁବ ମିଳନର ବୈଠକଟି ସୁସଂଯତ ହୋଇ ପାରିଲା ନାହିଁ । ସେଥିପାଇଁ କେହି ଜଣେ ବ୍ୟକ୍ତିବିଶେଷ ଯେ ଦାୟୀ ବା ଦୋଷୀ ତା ନୁହେଁ । ଅବସ୍ଥାର ତାଡ଼ନାରେ ସାହିତ୍ୟିକ ବୈଠକଟି ସ୍ଥିରତା ସଂଗ୍ରହ କରିପାରିଲାନାହିଁ । ସାହିତ୍ୟିକମାନଙ୍କର ଭୋଜନାନ୍ତ ମିଳନ ଓ କଥୋପକଥନ ମଧ୍ୟ ହୋଇ ପାରିଲା ନାହିଁ । ଅତିଥିମାନଙ୍କର ସମୁଚିତ ସତ୍କାର କରାଯାଇ ପାରିଲା ନାହିଁ ବୋଲି ଆମ୍ଭମାନଙ୍କର ଆଶଙ୍କା । ପ୍ରୀତ୍ୟୁପହାର ଅର୍ପଣ ପାଇଁ ଲେଖକ ନିର୍ଣ୍ଣୟ ମଧ୍ୟ ଏତେ ଅଳ୍ପସମୟ ମଧ୍ୟରେ କରିବାକୁ ପଡ଼ିଲାଯେ, ସେଥିରେ ଭ୍ରମ ରହିଯିବା ଅତି ସମ୍ଭବ । ଏସବୁ ପାଇଁ ଆମ୍ଭେମାନେ ଦାୟୀ । କାରଣ ଏକ ମାସିକ ପତ୍ରଭଳି ଅନୁଷ୍ଠାନର ଦାୟିତ୍ୱ ନେଇ, ସେ ଦିଗରେ ଆବଶ୍ୟକୀୟ ସମୟ ନଦେଇ ପାରିବା ଦୁଃଖ ଓ ଲାଜର ବିଷୟ । ସବୁ ବିଷୟକୁ ଆମ୍ଭେମାନେ ମୁଣ୍ଡପାତି ନେଉଛୁଁ ଓ ନିବେଦନ କରୁଛୁଯେ ସହୃଦୟ ବନ୍ଧୁମାନେ ନିଜଗୁଣରେ କ୍ଷମା କରିବେ । ଏ ବର୍ଷର ଅଭିଜ୍ଞତାରୁ ଆମ୍ଭେମାନେ ଏତିକି ପ୍ରତିଶ୍ରୁତି ନମ୍ରଭାବରେ ଦେଇପାରୁଁ ଯେ ଭବିଷ୍ୟତରେ ଏପରି ହେବ ନାହିଁ । ଏ ସମସ୍ତ ତ୍ରୁଟି ଘଟିଥିଲେ ମଧ୍ୟ ବିଷୁବ ମିଳନରୁ ବହୁ ବନ୍ଧୁ ଆନନ୍ଦ ଲାଭ କରିଛନ୍ତି । ଏହାର ସାଫଲ୍ୟ ପାଇଁ ପ୍ରଜାତନ୍ତ୍ର ପ୍ରଚାର ସମିତିର ସମସ୍ତ କର୍ମୀ ଅବିଶ୍ରାନ୍ତ ଚେଷ୍ଟା କରିଛନ୍ତି ।"

ବିଷୁବ ମିଳନକୁ ବର୍ଷକୁ ବର୍ଷ କିପରି ଉନ୍ନତ କରାଯାଇ ପାରିବ, ସେଥିପାଇଁ ମହତାବ ଥିଲେ ସତତ ଯତ୍ନଶୀଳ । ତୃତୀୟ ବର୍ଷ ପାଳନ କରିବା ପୂର୍ବରୁ ସେ 'ଝଙ୍କାର'ର ଏକ ବାର୍ଷିକ ସଂଖ୍ୟା ପ୍ରକାଶ କରିବା ପାଇଁ ନିଷ୍ପତ୍ତି ନେଇ କାର୍ଯ୍ୟକାରୀ କରିଥିଲେ । ଏହା ଥିଲା ନିୟମିତ ସଂଖ୍ୟାର ଦୁଇଗୁଣ । ସେ ଏହି ପତ୍ରିକାରେ ସର୍ବୋତ୍କୃଷ୍ଟ ଲେଖା ପ୍ରକାଶ ପାଇଁ ଲେଖକ/ଲେଖିକାମାନଙ୍କୁ ଅନୁରୋଧ କରିବା ସହିତ ଚିତ୍ରକରମାନଙ୍କୁ ସର୍ବୋତ୍କୃଷ୍ଟ ଚିତ୍ର ପଠାଇବାର ଅନୁରୋଧ ମଧ୍ୟ କରିଥିଲେ । ବିଷୁବ ମିଳନରେ ବହୁ ସଂଖ୍ୟାରେ ଲେଖିକା ଯେପରି ଯୋଗ ଦିଅନ୍ତି, ସେ ଦିଗଟି ପ୍ରତି ମଧ୍ୟ ଦୃଷ୍ଟି ରଖିଥିଲେ ।

ଚତୁର୍ଥ ବର୍ଷ ବିଷୁବ ମିଳନର ସମୟକୁ ଦିନେ ବଢ଼ାଇ ଦିଆଗଲା । 'ମୀନାମଣ୍ଡଳ' ଓ 'ନାରୀ ଜଗତ'ର ବାର୍ଷିକ ପୁରସ୍କାର ବିତରଣୀ ମଧ୍ୟ ବିଷୁବ ମିଳନ ଉତ୍ସବ ସହିତ ଯୋଡ଼ି ଦିଆଗଲା । ଏହାଦ୍ୱାରା ପ୍ରଜାତନ୍ତ୍ର ପ୍ରଚାର ସମିତିର ଯାବତୀୟ ସାଂସ୍କୃତିକ କାର୍ଯ୍ୟର ବାର୍ଷିକ ସମାବର୍ତ୍ତନ ଉତ୍ସବମାନଙ୍କର ସମୂହରୂପ 'ବିଷୁବ ମିଳନ' ଧାରଣ କରିଛି ।

ମହତାବ ପ୍ରତ୍ୟେକ ବର୍ଷ ବିଷୁବ ମିଳନ ପୂର୍ବରୁ ବିଷୁବ ସଂପର୍କରେ ଧାରଣା ଦେବା ସହିତ ଲେଖକ/ଲେଖିକାମାନଙ୍କର ସବୁ ପ୍ରକାର ସାହାଯ୍ୟ କାମନା କରନ୍ତି ଓ ବିଷୁବ ଉତ୍ସବ ପରେ ସେ ସଂପର୍କରେ ଭଲମନ୍ଦ ଦିଗର ଟିକିନିଖି ଆଲୋଚନା କରନ୍ତି । ଏହା କରିବା ଦ୍ୱାରା ସେ ବିଷୁବ ମିଳନକୁ ସାହିତ୍ୟ ଆନ୍ଦୋଳନର ଏକ ବିରାଟ ମାଧ୍ୟମ ଭାବେ ରୂପାନ୍ତରିତ କରି ପାରିଛନ୍ତି ।

ପ୍ରଖ୍ୟାତ ସାହିତ୍ୟିକ ଓ ଭାଷା ତତ୍ତ୍ୱବିଦ୍ ସୁନୀତ କୁମାର ଚାଟାର୍ଜୀ ବିଷୁବ ମିଳନକୁ ଲକ୍ଷ୍ୟ କରି କହିଥିଲେ, "Dr. Harekrushna Mahatab, distinguished scholar and statesman of orissa, has sought to bring the Bengalis, Oriyas, Assamese, Maithilis and others close to each other by instituting his 'Visuva Milan' gatherings every year at Cuttack when writers and scholars from outside Orissa, Bengalies, Assamese, Maithilis and others would be asked to get together and give address and exchange views through their own languages and through a language like Bengali or Oriya which most people in the gathering world understand . This has been a good idea and it has been partially successful and as an experiment towards the cultural integration of the eastern states. This should be pondered over and continued even in modified and extended forms."*

ମହତାବଙ୍କ ଅନୁରୋଧକ୍ରମେ ଯେଉଁ ପ୍ରଥିତଯଶା ସାହିତ୍ୟସାଧକମାନେ ବିଭିନ୍ନ ସମୟରେ ବିଷୁବ ମଣ୍ଡପରୁ ନିଜନିଜର ବକ୍ତବ୍ୟ ଶୁଣାଇଛନ୍ତି ସେମାନେ ହେଲେ ଡକ୍ଟର ମାୟାଧର ମାନସିଂହ, ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଡକ୍ଟର ରଘୁବୀର, ଡକ୍ଟର ସୂର୍ଯ୍ୟକୁମାର ଭୂୟାଁ, ଡକ୍ଟର ସୁନୀତି କୁମାର ଚ଼ଟାର୍ଜୀ, ଡକ୍ଟର କାଳୀଦାସ ନାଗ, କୃଷ୍ଣଜୀ ପାଣ୍ଡୁରଙ୍ଗା କୁଲକର୍ଣ୍ଣି, ମାମାଓାରେକର, ମନୋଜ ବସୁ, ବିଶ୍ୱନାଥ ସତ୍ୟାନାରାୟଣା, ରାମଧାରୀ ସିଂହ 'ଦିନକର', ଅମ୍ରିତା ପ୍ରୀତମ, ଉମାଶଙ୍କର ଯୋଶୀ,ବୀଣାରାୟ, ଜୈନେନ୍ଦ୍ର କୁମାର, ଡକ୍ଟର ହୁମାୟୁନ କବୀର, ପ୍ରେମେନ୍ଦ୍ର ମିତ୍ର, ଅଥର ବସେନ ବର୍ଗ, ତୈଲକ୍ୟ ନାଥ ଗୋସ୍ୱାମୀ, ମୈତ୍ରେୟୀ ଦେବୀ, ସଚ୍ଚିଦାନନ୍ଦ ହୀରାନନ୍ଦ ବାତ୍ସାୟନ, ସୁକୁମାର ସେନ, ଡ. ଆଶୁତୋଷ ଭଟ୍ଟାଚାର୍ଯ୍ୟ, ଡ. କେ ଏସ ଶ୍ରୀନିବାସ ଆୟାଙ୍ଗାର, ଛୋଟେ ନାରାୟଣ ଶର୍ମା, ଏ.ଏଲ. ବାସାମ୍, ଡ. ସଚ୍ଚିଦାନନ୍ଦ, ଜଷ୍ଟିସ୍ ହରିହର ମହାପାତ୍ର, ଡ. ଜନ୍ ୱାଲଟନ୍, ଡ. ଦୀନେଶ ଚନ୍ଦ୍ର ସରକାର, ଡ. ରାମନାଥ ତ୍ରିପାଠୀ, ଡ. ଦେବେଦାସ, ନିହାର ରଞ୍ଜନ ରାୟ, ଡ. ନାମବର ସିଂହ, ଆର ଏସ ତୋମର, ଡ. ବୀରେନ୍ଦ୍ର କୁମାର ଭଟ୍ଟାଚାର୍ଯ୍ୟ, ଡ. ଖୁଦୀରାମ ଦାସ, ଗଙ୍ଗାଶରଣ ସିଂହ, ଡ. ଭୋଲାଭାଇ ପଟେଲ, ଡ. ଶମ୍ଭୁନାଥ ସିଂହ, ଡ. ଦାଶରଥି, ଶିଶିର କୁମାର ଦାସ, ଡ. ରାଜାରାଓ, ସୁରେନ୍ଦ୍ର ଝାଡସୁମନ, ନୟନତାରା ସାଇଗଲ, ପ୍ରଭଜ୍ୟୋତ କାଉର, ଡ. ରଘୁବୀର ସହାୟ, ଡ. ସି. ନାରାୟଣ ରେଡ୍‌ଡୀ, ଡ. ଭୀଷ୍ମ ସାହାଣୀ, ଡ. କର୍ତ୍ତାର ସିଂ ଦୁଗଲ, କେଦାର ନାଥ ସିଂହ, ସମରେଶ ମଜୁମଦାର, ରାଜେନ୍ଦ୍ର ଯାଦବ, ଡ. ଗୋପୀଚନ୍ଦ ନାରଙ୍ଗ, ଡ. ବିଦ୍ୟାନିବାସ ମିଶ୍ର, କଲ୍ୟାଣ ମୟୀ ଲାଡ଼ା, ସୁକୁମାର ଅଡିକୋଡ଼, ଡ. ଶିବରାମ କାରନ୍ଥ, ମୁଜତବା ହୁସେନ, ନବକାନ୍ତ ବଡୁଆ, ଶରତ ମୁଖୋପାଧ୍ୟାୟ ପ୍ରମୁଖ ବିଦ୍ୱାନଗଣ । ମହତାବଙ୍କ ଅବର୍ତ୍ତମାନରେ ମଧ୍ୟ ଏ ବ୍ୟବସ୍ଥା ସ୍ଥିର ରହିଛି ।

ବିଷୁବ ମିଳନ ବାସ୍ତବ ପକ୍ଷେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ମଧ୍ୟରେ ଏକ ସଂଯୋଗକାରୀ ସେତୁ । ଜାତି, ଧର୍ମ, ବର୍ଣ୍ଣ ଓ ଭାଷାଭାଷୀ ନିର୍ବିଶେଷରେ ଏହା ଏକ ମହାମିଳନର କ୍ଷେତ୍ର । ଶ୍ରୀ ପଠାଣି ପଟ୍ଟନାୟକଙ୍କ ମତରେ, "ବିଷୁବ ଆନ୍ଦୋଳନର ବିଶାଳ

* Linguistic situation in the states of the Eastern Zone, page - 23-24, 1976.

ସାମିଆନା ତଳେ ବହୁ ଲେଖକ ଲେଖିକା ଜନ୍ମ ଗ୍ରହଣ କରି ନିଜ ନିଜ କ୍ଷେତ୍ରରେ ଆଜି ସୁପ୍ରତିଷ୍ଠିତ ଏବଂ ଆମ ସାହିତ୍ୟକୁ ସମୃଦ୍ଧ ଓ ଗୌରବାନ୍ୱିତ କରିବାରେ ସେମାନଙ୍କର ଆବଦାନ ଅବିସ୍ମରଣୀୟ ।

ଓଡ଼ିଆ ସାହିତ୍ୟର ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ଇତିହାସ ହେଉଛି ପ୍ରଜାତନ୍ତ୍ର-ଆନ୍ଦୋଳନ ଏବଂ ତହିଁରେ ଶ୍ରୀ ମହତାବଙ୍କ ନେତୃତ୍ୱର ଯାଦୁକାରୀ ସ୍ପର୍ଶ । ଏହି ଅର୍ଦ୍ଧ ଶତାବ୍ଦୀର ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଯାହା କିଛି ପରୀକ୍ଷା ନିରୀକ୍ଷା ଏବଂ ପ୍ରାଣ ପ୍ରତିଷ୍ଠା ସମ୍ଭବ ହୋଇଛି; ତାହାର ଆଦ୍ୟ ପ୍ରେରଣାର ଉତ୍ସ ହେଉଛି ଝଙ୍କାର-ସାହିତ୍ୟ ଆନ୍ଦୋଳନ ଏବଂ ବିଷୁବ ମଞ୍ଚର ସାରସ୍ୱତ ମିଳନ ।" ଶ୍ରୀ ଚିନ୍ତାମଣି ବେହେରାଙ୍କ ମତରେ, "ସାଂପ୍ରତିକ ଯୁଗରେ ରାଜନୀତିର ମତ୍ତତାଣ୍ଡବବେଳେ ବିଷୁବ ମିଳନ ସାହିତ୍ୟର ଆତ୍ମ ପ୍ରତିଷ୍ଠାକୁ ବୃଦ୍ଧି କରିଛି । ଚେକଭ୍ କହିଥିଲେ, "But great writers engage in politics only in so far as it is necessary to defend people against politics." ଅର୍ଥାତ "ମହତ୍ ଲେଖକମାନଙ୍କର ରାଜନୀତି ସହିତ କେବଳ ସେଇ ପର୍ଯ୍ୟନ୍ତ ସଂପର୍କ ଯେଉଁ ସଂପର୍କର ସୀମା ଜନସାଧାରଣଙ୍କୁ ରାଜନୀତିର କବଳରୁ ଉଦ୍ଧାର କରିବାରେ ସୀମିତ ।"

୪

# ସାହିତ୍ୟସାଧକ ମହତାବ

ସାହିତ୍ୟ ଓ ରାଜନୀତି ଏହା ପରସ୍ପରର ବିରୋଧାଭାସ ମଧ୍ୟରେ ମହତାବଙ୍କ ନିକଟରେ ଉଭୟର ସହାବସ୍ଥାନ ସମ୍ଭବ ହୋଇ ପାରିଛି । ତାଙ୍କର ଜୀବନ ସାଧନାରେ ସାହିତ୍ୟ ଓ ରାଜନୀତି ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ । ସେ ନିଜେ ଏ ସମ୍ବନ୍ଧରେ ତାଙ୍କର ଆତ୍ମଜୀବନୀରେ ଲେଖିଛନ୍ତି,"ରାଜନୀତି କ୍ଷେତ୍ରରେ ମୋର ଯେତିକି ଆଗ୍ରହ, ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେତିକି । ଏ ପରି ମୋର ଅଭ୍ୟାସ ହୋଇ ଯାଇଛି–ଏ ଦୁଇଟି ବିଷୟରେ ମୁଁ ପ୍ରଭେଦ ବେଶି କିଛି ଜାଣି ପାରେ ନାହିଁ । ଯେଉଁ ସମୟର କଥା ମୁଁ ଲେଖୁଛି, ସେ ସମୟରେ ରାଜନୈତିକ ଓ ଶାସନଗତ ଅତି ଜଟିଳ ପରିସ୍ଥିତି ଭିତରେ ଗତି କରୁଥିଲେ ମଧ୍ୟ ସାହିତ୍ୟିକ ଉଦ୍ୟମ ମୁଁ ଅକ୍ଷୁଣ୍ଣ ରଖି ପାରିଥିଲି ।"

ସାହିତ୍ୟ ସାଧନାର ସ୍ପୃହା ମହତାବଙ୍କ ବାଲ୍ୟକାଳରୁ ପ୍ରକାଶ ପାଇଥିଲା । ତାଙ୍କ ନିଜ ଭାଷାରେ, "ଗାଁ ସ୍କୁଲରେ ପଢୁଥିବାବେଳେ ରାମାୟଣ କଥାକୁ ପଦ୍ୟାକାରରେ ମୁଁ ରଚନା କରିଥିଲି, ପାଲାବାଲାମାନେ ମନରୁ ସଙ୍ଗୀତ ରଚନା କରି ବୋଲି ଯାଉଥିବାର ଦେଖି ମୁଁ ଭାବିଲି, ମୁଁ କାହିଁକି ରଚନା କରି ନ ପାରିବି ? କେବଳ ପଦ ମିଳିବା ଛଡ଼ା ସେ ରଚନାରେ ଅନ୍ୟକିଛିନଥିଲା ।" ରେଭେନସା କଲେଜରେ ପଢୁଥିବା ବେଳେ 'ମଳୟ' ନାମରେ ଏକ ହାତଲେଖା ମାସିକ ପତ୍ରିକା, 'ଡଷ୍ଟବିନ' ନାମରେ ଏକ ସାପ୍ତାହିକ ହାତଲେଖା ଇଂରାଜୀ ପତ୍ରିକା ପ୍ରକାଶ କରୁଥିଲେ । 'ଉତ୍କଳ ଦୀପିକା'ରେ କଟକ ସହରର ପୋଲିସ ଓ ଅନ୍ୟାନ୍ୟ କର୍ମଚାରୀମାନଙ୍କର ଜୁଲୁମ ସଂପର୍କରେ ଇଂରାଜୀ ଲେଖା ପ୍ରକାଶିତ ହୋଇଥିଲା ।

ବାଲେଶ୍ୱରଠାରେ ସ୍ୱାଧୀନତା ସଂଗ୍ରାମର ଘନଘଟା ମଧ୍ୟରେ ସ୍ୱାଧୀନତା ସଂଗ୍ରାମ ବାର୍ତ୍ତାର ପ୍ରଚାର ପାଇଁ ସେ 'ସ୍ୱରାଜ ସମାଚାର' ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରୁଥିଲେ । 1922-23 ରେ ଭାଗଲପୁର ଜେଲରେ ଥିବାବେଳେ ସେ 'ଅଜବ-ଦୁନିଆ' ନାମରେ ଏକ ଉପନ୍ୟାସ ରଚନା କରିଥିଲେ । ଏ ଉପନ୍ୟାସ ସଂପର୍କରେ ମହତାବ ଲେଖିଛନ୍ତି, "ସେତେବେଳର ଭାବପ୍ରବଣତା ଏଥିରେ ଏପରି ପରିସ୍ଫୁଟ ହୋଇଥିଲା ଯେ, ବାହାରେ ମୋର କେତେକ ବନ୍ଧୁ ପଢ଼ି କାନ୍ଦି ପକାଇଲେ । "ଉପନ୍ୟାସର ଭାଷା ମଧ୍ୟ ଅଲଗା ପ୍ରକାରର ଥିଲା । ସେ ଭାଷା ଓ ଭାବପ୍ରବଣତା ଏବେ ଆଉ ନାହିଁ । କାରଣ ସେତେବେଳେ ପ୍ରାଣ ବେଶି ସରଳ ଥିଲା ଓ ସଂସାରର ଅଭିଜ୍ଞତା ଫଳରେ ଏତେ କଠିନ ନଥିଲା ।" 1930 ମସିହାରେ ପୋଲିସ ଦ୍ୱାରା ଏହା ଜବତ୍ କରାଯାଇ ପୋଡ଼ି ଦିଆଯାଇ ଥିଲା ।

ସେ ମଧ୍ୟ ଇଂରାଜୀରେ ଗୋଟିଏ ବହି 'Free Thinking' ନାମରେ ଲେଖିଥିଲେ । ପାଣ୍ଡୁଲିପିଟି ହଜିଯାଇଥିବାରୁ ଏହାର ସନ୍ଧାନାହିଁ ଯଦିଓ ଏହାର କିଛିଅଂଶ ସ୍ୱର୍ଗତ ଲକ୍ଷ୍ମୀ

ନାରାୟଣ ସାହୁ 'ଷ୍ଟାର ଅଫ ଉତ୍କଳ'ରେ ପ୍ରକାଶ କରିଥିଲେ ।

1923ରେ ମହତାବ ଆରମ୍ଭ କଲେ ସାପ୍ତାହିକ ପ୍ରଜାତନ୍ତ୍ର । ଏହାର ଉଦ୍ଦେଶ୍ୟ ଥିଲା ଗାନ୍ଧୀନୀତି ଓ ଗଠନମୂଳକ କାର୍ଯ୍ୟର ପ୍ରଚାର । କନିକାରେ ଅମାନୁଷିକ ପ୍ରଜାପୀଡ଼ନ ବିରୋଧରେ ତାଙ୍କର ଲେଖା ଆଡ଼ଭେନଚ଼ର ଇଂରାଜୀ ପତ୍ରିକାରେ ପ୍ରକାଶିତ ହୋଇଥିଲା । ସେ ନୀଳଗିରି ଅତ୍ୟାଚାର ନାମରେ ଏକ ପୁସ୍ତିକା ମଧ୍ୟ ପ୍ରକାଶ କରିଥିଲେ ।

ପୁଣ୍ୟାତ୍ମା ଗୋପବନ୍ଧୁ ନାମକ ଏକ ଗାଉଁଲି କବିତା ତାଙ୍କ ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ ହୋଇଥିଲା । ସେ ଲେଖିଥିଲେ ଚ଼ଷାଭାଇ ଓ ପଲାସୀ ଅବସାନେ । ସରକାର ପଲାସୀ ଅବସାନକୁ ବାଜ୍ୟାପ୍ତ କରିଥିଲେ । 1930 ହଜାରୀବାଗ ଜେଲରେ ଥିବା ବେଳେ ବାଲ୍ମିକୀ ରାମାୟଣକୁ ସଂସ୍କୃତରୁ ଓଡ଼ିଆ ଅନୁବାଦ କରିଥିଲେ ଓ ଗୀତାକୁ ସରଳ ଗଦ୍ୟରେ ଓଡ଼ିଆରେ ଲେଖିଥିଲେ ଯାହା ଏଯାଏ ଅପ୍ରକାଶିତ ।

1930-31 ପାଟନା ଜେଲରେ ସେ ଲେଖିଥିଲେ କବିତା ସଂକଳନ "ବନ୍ଦିର ଝନ ଝନ' । ଏହା 1947 ରେ 'ନିଗଡ଼ ନିସ୍ୱନ' ନାମରେ ପ୍ରକାଶିତ ହୋଇଥିଲା । ସେହି ବନ୍ଦୀ ସମୟରେ ସେ ଲେଖିଥିଲେ ଦୁଇଟି ନାଟକ । 'ସ୍ୱରାଜ ସାଧନ' ନାଟକଟି ସେଠାରେ ଦୁଇଥର ଅଭିନୀତ ହୋଇଥିଲା । ହଜାରିବାଗ ଜେଲରେ ବନ୍ଦୀ ଥିବା ସମୟରେ ସେ ରଚ଼ନା କଲେ 'ନୂତନ ଧର୍ମ' ନାମକ ଏକ ଉପନ୍ୟାସ । ଏହା ଥିଲା ତାଙ୍କର ପ୍ରଥମ ମୁଦ୍ରିତ ଉପନ୍ୟାସ । ସେହି ସମୟରେ ସେ ଲେଖିଥିଲେ 'ଦଶ ବର୍ଷର ଓଡ଼ିଶା' । ତାହା 1935 ରେ ପ୍ରକାଶିତ ହୋଇଥିଲା । 1945 ପର୍ଯ୍ୟନ୍ତ ଅହମ୍ମଦନଗର ଦୁର୍ଗରେ ବନ୍ଦୀ ଥିବାବେଳେ ତିନିଗୋଟି କାବ୍ୟ, ତିନିଗୋଟି ଉପନ୍ୟାସ ଓ ଅନେକ କବିତା ଲେଖିବା ସହିତ ଓଡ଼ିଶା ଇତିହାସ ଲେଖିବା ଆରମ୍ଭ କରିଥିଲେ । ତାଙ୍କର ସେହି ତିନିଗୋଟି କାବ୍ୟ ହେଲା 'ଚାରିଚ଼କ୍ଷୁ', 'ଆତ୍ମଦାନ', 'ଜୀବନ ସମସ୍ୟା', ତିନିଗୋଟି ଉପନ୍ୟାସ ହେଉଛି 'ଟାଉଟର', 'ପ୍ରତିଭା' ଓ 'ଅବ୍ୟାପାର' ।

1949ରେ ମହତାବଙ୍କ ଦ୍ୱାରା ପ୍ରକାଶିତ ହେଲା ତାଙ୍କର ଆତ୍ମଜୀବନୀ 'ସାଧନାର ପଥେ' । 1950ରୁ ମହତାବ ପ୍ରଜାତନ୍ତ୍ରରେ 'ଗାଁ ମଜଲିସ୍' ଲେଖା ଆରମ୍ଭ କରିଥିଲେ । ତାହା ବିଭିନ୍ନ ଖଣ୍ଡରେ ପ୍ରକାଶିତ ହୋଇଛି । 'ଝଙ୍କାର'ରେ ଲେଖୁଥିବା ସଂପାଦକୀୟ 'ସାହିତ୍ୟର ମାର୍ଗ ଉନ୍ମୋଚ଼ନ' ଶୀର୍ଷକରେ ତିନିଖଣ୍ଡରେ ପ୍ରକାଶିତ ହୋଇଛି । 1956ରେ ତାଙ୍କର କବିତା ସଂକଳନ 'ଛାୟା ପଥର ଯାତ୍ରୀ', 1959ରେ ଏକାଙ୍କିକା ସଂକଳନ 'ଯୁଗ ସଂକେତ', 1977 ରେ ରାଜନୈତିକ ଉପନ୍ୟାସ 'ତୃତୀୟ ପର୍ବ' ଓ କ୍ଷୁଦ୍ର ଗଳ୍ପ ସଂକଳନ 'ସ୍ୱର୍ଗରେ ଇମରଜେନ୍‌ସି' ଏବଂ 1979ରେ '୧୯୭୫' ଶୀର୍ଷକ ଉପନ୍ୟାସ ପ୍ରକାଶିତ ହୁଏ । 1982ରେ 'ସାହିତ୍ୟ ଓ ଆଲୋଚ଼ନା' ନାମରେ ଏକ ପ୍ରବନ୍ଧ ସଂକଳନ ପ୍ରକାଶ ପାଏ । 1986 ରେ 'ହ୍ୱାଇଲ ସର୍ଭିଙ୍ଗ ମାଇଁ ନେସନ୍', 1987 ରେ 'ଆରବସାଗରରୁ ଚ଼ିଲିକା', ଗାନ୍ଧିଜୀଙ୍କ ତିରୋଧାନରେ 'ଶେଷ ଅଶ୍ରୁ', 'ଭକ୍ତ ଜୀବନୀ' ଶୀର୍ଷକ ଝଙ୍କାର ସଂପାଦକୀୟକୁ 'ଓଡ଼ିଶାର ସାଧୁ ସନ୍ଥ' ଭାବେ 1994 ରେ ପ୍ରକାଶ କରାଯାଇଛି । 1964 ମସିହାରେ ଆନାମଲାଇ ବିଶ୍ୱବିଦ୍ୟାଳୟରେ ତାଙ୍କ ଦ୍ୱାରା ପ୍ରଦତ୍ତ ଭାଷଣ 'ଗାନ୍ଧୀ-ଦି ପଲିଟିକାଲ ଲିଡର' ପ୍ରଥମେ 1965 ରେ ପ୍ରକାଶ ପାଏ ଓ ତାର ପରିବର୍ତ୍ତିତ ରୂପ ପ୍ରକାଶିତ ହୁଏ 1973ରେ । କକାଙ୍କ କାହାଣୀ-୧ ଓ

କକାଙ୍କ କାହାଣୀ-୨ କ୍ରମରେ ଶିଶୁ ସାହିତ୍ୟ, 'ବିଷ୍ଣୁପୁରର ଭିତିରି କଥା' ଓ 'ଶ୍ରୀ ଗଣେଶଙ୍କ ପାଠ ପଢ଼ା' ୧୨୯୨ ରେ ଡକ୍ଟର ହରେକୃଷ୍ଣ ମହତାବ ଫାଉଣ୍ଡେସନ ଦ୍ୱାରା ପ୍ରକାଶିତ ହୋଇଛି ।

ତରୁଣ ବୟସରୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମହତାବ ନିଜକୁ ସାହିତ୍ୟ ସାଧନା ସହିତ ଓତଃପ୍ରୋତ ଜଡ଼ିତ କରି ରଖିଥିଲେ । ତାଙ୍କ ଲେଖନୀ କ୍ଷୁଦ୍ରଗଳ୍ପ, ଉପନ୍ୟାସ, ଏକାଙ୍କିକା, ପ୍ରବନ୍ଧ ଓ ଆଲୋଚନା, ଫିଚର, ଶିଶୁ ସାହିତ୍ୟ, ଇତିହାସ ଓ ଆତ୍ମଜୀବନୀକୁ କରିଛି ରଞ୍ଜିମନ୍ତ ।

**(କ) ଗାଳ୍ପିକ ମହତାବ :** ମହତାବ ଯେତେବେଳେ ଗଳ୍ପ ଲେଖିବାକୁ ଆରମ୍ଭ କଲେ, ସେତେବେଳକୁ ଓଡ଼ିଆ ଗଳ୍ପ ସାହିତ୍ୟ ସମୃଦ୍ଧ । ମହତାବ ପ୍ରାକ୍ ସ୍ୱାଧୀନତା ଓ ସ୍ୱାଧିନୋତ୍ତର ଜନଜୀବନ ସହିତ ଓତପ୍ରୋତ ଜଡ଼ିତ ଥିଲେ । କାରଣ ସେ ଥିଲେ ରାଜନୀତି ସହିତ ସଂଶ୍ଳିଷ୍ଟ ସଂଗ୍ରାମୀ, ସେବକ, ସାଧକ ଓ ସଂସ୍କାରକ । ତାଙ୍କ ସୃଷ୍ଟିର ମୁଖ୍ୟ ପ୍ରେରଣା ହେଉଛି କ୍ରାନ୍ତିକାରୀ ଆଭିମୁଖ୍ୟ ଓ ସଂସ୍କାରଧର୍ମୀ ଚେତନା । ତେଣୁ ତାଙ୍କ ଗଳ୍ପଗୁଡ଼ିକରେ ରାଜନୈତିକ, ସାମଜିକ, ପାରିବାରିକ ଓ ଜୀବନ ସ୍ମୃତି ଚିତ୍ର ଅତ୍ୟନ୍ତ ସୁସ୍ପଷ୍ଟ । ହୃଦୟର, ନୂଆଚଳଣ, ମୋ ଘର ଶ୍ରୀଜଙ୍ଗ, ସ୍ୱର୍ଗରେ ଇମରଜେନ୍‌ସି, ଦଶବର୍ଷପରେ, ଭିକାରିର ଜବାବ, କଂଗ୍ରେସିଆ, ବାବନାଭୂତ, ଏପରି ବି ହୁଏ, ଧର୍ମଶାଳା ଇତ୍ୟାଦି ଗଳ୍ପରେ ରାଜନୈତିକ ଚିତ୍ର ଅତ୍ୟନ୍ତ ନିଷ୍ଠାର ସହ ବର୍ଣ୍ଣିତ ହୋଇଛି । ଗଳ୍ପଗୁଡ଼ିକ ବାସ୍ତବଧର୍ମୀ ହୋଇଛି । ତାଙ୍କର ଅଧିକାଂଶ ଗଳ୍ପ ଘଟଣା ପ୍ରଧାନ ହୋଇଥିବା ବେଳେ କେତେକ ଗଳ୍ପ ଭାବନା ଓ ଚରିତ୍ର ପ୍ରଧାନ ମଧ୍ୟ । 'ସ୍ୱର୍ଗରେ ଇମରଜେନ୍‌ସି' ଗଳ୍ପ ପ୍ରତୀକଧର୍ମୀ । ତାଙ୍କର ଘରୋଇ, ଫାଟକବାବୁ, ଇମରଜେନସି, ପ୍ରେମର ପରିଣାମ, ରିକ୍‌ସାବାଲା, ତୋ ଲାଗି ଛାତି ପଥର, ଏସ୍. ନାୟକ, ସାବିତ୍ରୀ, ଦୁର୍ଭିକ୍ଷ, ଭାତହାଣ୍ଡିରୁ ଗୋଟିଏ ଇତ୍ୟାଦି ଗଳ୍ପ ସାମାଜିକ ଓ ପାରିବାରିକ ଜୀବନର ନିଛକ ପ୍ରତିଛବି । ତାଙ୍କର ଜୀବନୀମୂଳକ ଗଳ୍ପଗୁଡ଼ିକ ହେଲା ଏକା, ମୋ ନିଜଗପ, ଉପକ୍ରମଣିକା, ଅପରାହ୍ନର ଉଦ୍ଦୀପନା, ବୃଦ୍ଧର ପ୍ରାର୍ଥନା, ସେ ପାରିର ଡାକ ଇତ୍ୟାଦି ।

'କଥା ସାହିତ୍ୟର ଗତିଶୀଳତା' ପ୍ରବନ୍ଧରେ ମନୋଜ ଦାସ ଲେଖିଛନ୍ତି, "ଆମେ ଯେଉଁ ସମୟ ଭିତର ଦେଇ ଗତି କରୁଛୁ ତାହା ମୁଖ୍ୟତଃ ଏକ ଆତ୍ମଚେତନା ପ୍ରଧାନ ଯୁଗ (Subjective Age) । ଆତ୍ମଚେତନା ଶାଣିତ ହେବା, ଅନ୍ତର୍ମୁଖୀ ହେବା, ବିବର୍ତ୍ତନଗତ ପ୍ରଗତିର ଲକ୍ଷଣ । x x x ଯେଉଁ ଆତ୍ମଚେତନାର କଥା କୁହାଯାଇଛି, ଏହାର ଅନାଗତ ପରିଣତି ହେବ, ମଣିଷର ନିଜର ଅନ୍ତର୍ସତ୍ତାକୁ ଆବିଷ୍କାର କରିବାରେ, କିନ୍ତୁ ତହିଁ ପୂର୍ବରୁ ସେ ପ୍ରାଣସତ୍ତାର ଉଦ୍ଦାମ ଢେଉରେ ବାଡ଼େଇ ପିଟି ହେବାର ଅଭିଜ୍ଞତାରୁ ତ୍ରାହି ପାଇବ ନାହିଁ ।"

ମହତାବଙ୍କ ଗଳ୍ପ ଏଇ ପ୍ରାଣସତ୍ତାର ଅଭିବ୍ୟକ୍ତି । ଯଦିଓ ମହତାବଙ୍କର ଗଳ୍ପ ନିରାଭରଣ, ଗଦ୍ୟମୟ, ତଥାପି କେତେକ କ୍ଷେତ୍ରରେ ହୃଦୟର ଉଚ୍ଛ୍ୱାସର କଲ୍ଲୋଳିନୀ ଧାରା ପ୍ରବାହିତ । "ଅଧୁନା କ୍ଷୁଦ୍ରଗଳ୍ପର ଭାଷା ଶୈଳୀର ପ୍ରଧାନ ବୈଶିଷ୍ଟ୍ୟ ହେଲା, କ'ଣ କହିବାକୁ ହେବ ବଡ଼ କଥା ନୁହେଁ, କିପରି କହିବାକୁ ହେବ, ତାହାହିଁ ବଡ଼କଥା । କିନ୍ତୁ ମହତାବଙ୍କ ଗଳ୍ପ ବକ୍ତବ୍ୟ

ପ୍ରଧାନ, ଅନେକ କ୍ଷେତ୍ରରେ ବିବରଣୀଧର୍ମୀ । ଭାଷା ପ୍ରୟୋଗରେ ସେ ଉଭୟ ଶିକ୍ଷିତ ଓ ଅଶିକ୍ଷିତଲୋକଙ୍କର ଭାଷା ପ୍ରୟୋଗ କରିଛନ୍ତି । ଭାଷା ତାଙ୍କର ନିଜସ୍ୱ ଶୈଳୀ । ସେ ନିଜେ କହିଛନ୍ତି, "ପ୍ରତ୍ୟେକ ଲୋକର ଭାଷା ଏପରି ନିଜସ୍ୱ ହୋଇଯାଏ ଯେ ପଢ଼ିଲେ ଜଣା ପଡ଼ିବ କିଏ ତାର ଲେଖକ; ମୋର ଭାଷା ସେହିପରି ମୋର ନିଜର ହୋଇ ଯାଇଛି ବୋଲି ଅନେକ କହନ୍ତି- ସେଥିରେ ମୁଁ ଆନନ୍ଦ ଅନୁଭବ କରେ ।"

**(ଖ) ଔପନ୍ୟାସିକ ମହତାବ :** ଗଦ୍ୟ ସାହିତ୍ୟର ଅନ୍ୟତମ ବଳିଷ୍ଠ ବିଭାଗ ହେଉଛି ଉପନ୍ୟାସ । ଆଧୁନିକ ସାରସ୍ୱତ ମାନସର ଭାବମୂର୍ତ୍ତି ଏଥିରେ ପ୍ରତିଫଳିତ । କାହାଣୀ ହିଁ ଉପନ୍ୟାସର ମୌଳିକ ସତ୍ତା । ଗଳ୍ପହୀନ ଉପନ୍ୟାସ ମେରୁଦଣ୍ଡହୀନ ପ୍ରାଣୀ ସହ ତୁଳନୀୟ । ଏଥିରେ କାଳଧର୍ମ ବା ସମୟାନୁକ୍ରମ ତଥା ବାସ୍ତବଧର୍ମୀ ଘଟଣାର ସଂଯୋଜନା ରହିବାଆବଶ୍ୟକ । ମହତାବଙ୍କ ଉପନ୍ୟାସ ସୃଷ୍ଟି ଚେତନାର ପୃଷ୍ଠଭୂମି ସଂପର୍କରେ ସେ ନିଜେ କହିଛନ୍ତି, "ସମାଜ ସହିତ ଜଡ଼ିତ ଥିବାରୁ ଚିନ୍ତା ମଧ୍ୟ ସାମାଜିକ - ତେଣୁ ମୋର ସାହିତ୍ୟ ସମାଜ ଅଭିମୁଖୀ । ସମାଜ ସହିତ ରାଜନୀତି ମଧ୍ୟ ଓତଃପ୍ରୋତ ଭାବରେ ଜଡ଼ିତ । ଏଣୁ ସାମାଜିକ ସାହିତ୍ୟ ସହିତ ରାଜନୀତିର ସଂପର୍କ ରହିବ ହିଁ ରହିବ ।" ତେଣୁ ତାଙ୍କ ଉପନ୍ୟାସ ତାଙ୍କ ସମୟର ସମାଜ ଓ ରାଜନୀତିର ପୃଷ୍ଠଭୂମି ଉପରେ ରଚିତ । ତାଙ୍କର ପ୍ରଥମ ଚାରିଗୋଟି ଉପନ୍ୟାସ ନୂତନ ଧର୍ମ, ଟାଉଟର, ଅବ୍ୟାପାର ଓ ପ୍ରତିଭା ସ୍ୱାଧୀନତା ଆନ୍ଦୋଳନ ସମୟରେ ଲେଖା ଯାଇଛି । ଶେଷୋକ୍ତ ଦୁଇଟି ଉପନ୍ୟାସ 'ତୃତୀୟ ପର୍ବ' ଓ 'ଉଣେଇଶ ଶହ ପଚସ୍ତରୀ' କ୍ଷମତା ରାଜନୀତିଠାରୁ ଦୂରେଇ ଯିବା ପରେ ଲେଖାଯାଇଛି ।

ତାଙ୍କର 'ନୂତନଧର୍ମ' ଉପନ୍ୟାସ ଏକ ସଂସ୍କାରଧର୍ମୀ ସାମାଜିକ ଉପନ୍ୟାସ । ଉପନ୍ୟାସରେ ଦେଖିବାକୁ ମିଳେ ସେ ସମୟର ସମାଜର ପ୍ରଚଳିତ ଅନ୍ଧ-ବିଶ୍ୱାସ, କୁସଂସ୍କାର, ଜମିଦାରମାନଙ୍କର ଅତ୍ୟାଚାର, ସ୍ୱଦେଶୀ ଆନ୍ଦୋଳନ, ବିଧବା ବିବାହ ଇତ୍ୟାଦି । ନୂତନ ଧର୍ମ ସଂପର୍କରେ ସେ କହିଛନ୍ତି, "ଯେଉଁ ହରିଜନ ଆନ୍ଦୋଳନ ପ୍ରାୟ ଦେଢ଼ବର୍ଷ ପରେ ମାହାତ୍ମାଗାନ୍ଧୀ ଆରମ୍ଭ କରିଥିଲେ, ସେଇ ଆନ୍ଦୋଳନ ବିଷୟ ସେତେବେଳେ ମୋ' ମନକୁ ଆସିଥିଲା ଏବଂ ସେଥିପାଇଁ ନୂତନଧର୍ମ ଉପନ୍ୟାସ ଲେଖିଥିଲି । ଅସ୍ପୃଶ୍ୟତାର ପୂର୍ଣ୍ଣବର୍ଜନ ଯାହାର ଅର୍ଥ ଜାତି-ପ୍ରଥାର ପୂର୍ଣ୍ଣ ନିପାତ ତାହା ମଧ୍ୟ ଆମ ଘରେ କରିବାକୁ ହେବ । ଏହାକୁ ହିଁ ମୂଳଭିତ୍ତିକରି ନୂତନଧର୍ମ ଲେଖିଲି ।"

ନୂତନଧର୍ମ ସଂପର୍କରେ ମତ ଦେଇ ସୁରେନ୍ଦ୍ର ମହାନ୍ତି କହିଛନ୍ତି, "ଗାନ୍ଧିଜୀଙ୍କ ବାର୍ତ୍ତା ଓଡ଼ିଶାରେ ନୂଆ ନୂଆ ପ୍ରଚଳିତ ହେଉଥିବା ବେଳେ କଂଗ୍ରେସ ଅନୁଷ୍ଠାନକୁ ଓଡ଼ିଶାର ଅଭିଜାତ ଗୋଷ୍ଠୀ କିପରି ଘୃଣାଚକ୍ଷୁରେ ଦେଖୁଥିଲେ, 'ନୂତନଧର୍ମ'ରେ ତାର ପ୍ରତିଛବି ଦେଖିବାକୁ ମିଳେ । ଗୌଡ଼ୀୟ ବୈଷ୍ଣବ ଧର୍ମର ମହନ୍ତ ଓ ବାବାମାନଙ୍କ ଉପରେ ମହତାବଙ୍କ ସଂସ୍କାରବାଦୀ ଆକ୍ରମଣର କିଛିଟା ଛିଟା ମଧ୍ୟ ଛିଟିକି ପଡ଼ିଛି ।"

ମହତାବଙ୍କ ସୃଷ୍ଟି ପ୍ରତିଭାର ଅନ୍ୟତମ ବଳିଷ୍ଠ ସ୍ୱାକ୍ଷର ହେଉଛି ଉପନ୍ୟାସ 'ପ୍ରତିଭା' । ସ୍ୱାଧୀନତା ସଂଗ୍ରାମର ପୃଷ୍ଠଭୂମି ଉପରେ ପ୍ରତିଭାର ପ୍ରତିଷ୍ଠା । ସେତେବେଳର ଜାତୀୟ ଆନ୍ଦୋଳନ, ସାମାଜିକ ଅବସ୍ଥା, ଜାତି ପ୍ରୀତି, ତ୍ୟାଗ, ନୂତନ ପରିପ୍ରେକ୍ଷୀରେ ଗଢ଼ି ଉଠୁଥିବା ଆଶ୍ରମ ଜୀବନ, ନାରୀଶିକ୍ଷା ତଥା ପ୍ରେମର ଚିରନ୍ତନ ଆନ୍ତର୍ନିବେଦନ ଏହି ଉପନ୍ୟାସର

ଛତ୍ରେ ଛତ୍ରେ ପ୍ରତିଫଳିତ ହୋଇଛି । ଗାନ୍ଧୀବାଦର ଆଦର୍ଶରେ ଅନୁପ୍ରେରିତ ହୋଇ ପ୍ରତିଭାର ପରିକଳ୍ପନା ଓ ରାଜନୀତିକ ଜୀବନରୁ ରସ ସଂଗ୍ରହକରି ଏହାକୁ ପରିପୁଷ୍ଟ କରିଛନ୍ତି । ବାସ୍ତବତାର ତାଡ଼ନାରେ ସମୟର ଯଥାର୍ଥ ଉପଯୋଗ ପାଇଁ ଜେଲ ଜୀବନରେ ସେ ପ୍ରତିଭାକୁ ସୃଷ୍ଟି କରିଛନ୍ତି । ଉପନ୍ୟାସ ସୃଷ୍ଟି ପାଇଁ ନିଜ ଜୀବନର ପୃଷ୍ଠଭୂମିକୁହିଁ ନିରୀକ୍ଷଣ କରିଛନ୍ତି । ସମାଜର ଜାତି ପ୍ରଥା, ପରଦାପ୍ରଥା, ଅଶିକ୍ଷା, କୁଶିକ୍ଷା ଦୂରୀକରଣ, ସରକାରୀ ଚାକିରୀ ବର୍ଜନ, ଚିରକୁମାର ବ୍ରତ ପାଳନ ପ୍ରଭୃତି ଆଦର୍ଶବୋଧକୁ ଦୃଷ୍ଟିରେ ରଖି ପ୍ରତିଭାର କଥାବସ୍ତୁ ପରିକଳ୍ପନା କଲେ । 'ପ୍ରତିଭା'କୁ ଯେପରି ଜୀବନ୍ତ ଓ ପ୍ରାଣବନ୍ତ କରି ପାରିଛନ୍ତି, ତାହା ତାଙ୍କ ଜୀବନାନୁଭୂତି ।

ଅଧ୍ୟାପକ ଚିନ୍ତାମଣି ଦାସଙ୍କ ମତରେ, "ଏଥିରେ ବର୍ଣ୍ଣିତ ଘଟଣାମାନ ସେ ନିଜେ ଅଙ୍ଗେ ନିଭେଇଥିବାରୁ କିମ୍ବା ଏ ଘଟଣାମାନଙ୍କ ସହ ତାଙ୍କର ପ୍ରତ୍ୟକ୍ଷ ନିଗୂଢ଼ ସଂପର୍କ ଥିବାରୁ ଏଥିରେ କୌଣସି ଅସମ୍ଭବ ବା ଅବିଶ୍ୱାସର ଉପାଦାନ ନାହିଁ ।"

ଅହମ୍ମଦନଗର କାରାଗାର ଜୀବନରେ ରଚିତ ତାଙ୍କର ଅନ୍ୟତମ ବିଖ୍ୟାତ ରାଜନୈତିକ ଉପନ୍ୟାସ 'ଅବ୍ୟାପାର' । 'ପ୍ରତିଭା' ଉପନ୍ୟାସ ଭଳି ଏହା ମଧ୍ୟ ମହତାବଙ୍କ ବ୍ୟକ୍ତିଗତ ଅଭିଜ୍ଞତା ଓ ଅଭିଜ୍ଞାନର ସାହିତ୍ୟିକରୂପ । ଦେଶପ୍ରେମ, ସ୍ୱାଧୀନତା, ଆଶ୍ରମ ପ୍ରତିଷ୍ଠା, ଗଡ଼ଜାତ ଆନ୍ଦୋଳନ, ଅହିଂସା, ସୂତ୍ରଯଜ୍ଞ, ନାରୀଶିକ୍ଷା ଇତ୍ୟାଦି ଉପରେ ଉପନ୍ୟାସଟି ରଚିତ ହୋଇଥିଲେ ମଧ୍ୟ ଏକ ନିତ୍ୟନୂତନ ପରିବେଶକୁ କେନ୍ଦ୍ରକରି ଉପନ୍ୟାସଟି ପରିବର୍ଦ୍ଧିତ । ଓଡ଼ିଶାର ବିଭିନ୍ନ ଗଡ଼ଜାତରେ ଅତ୍ୟାଚାରୀ ରାଜାମାନଙ୍କ ବିରୋଧରେ ତେଜି ଉଠୁଥିବା ପ୍ରଜା-ଆନ୍ଦୋଳନ, ଜାତିପ୍ରଥା ଯୋଗୁଁ ପରିଣାମରେ ଦେଖାଦେଇଥିବା ବେଶ୍ୟା-ସମସ୍ୟା, କଲିକତାରେ ନିରୀହ ଓଡ଼ିଆ ଝିଅଙ୍କ ଦୁଃଖ ଦୁର୍ଦ୍ଦଶା ଓ ଓଡ଼ିଶାର ପଲ୍ଲୀରେ ଦେଖାଦେଇଥିବା ଖାଦ୍ୟ ସମସ୍ୟା, ଶିକ୍ଷିତ ଯୁବକଙ୍କ ସହିତ ଅଶିକ୍ଷିତା ଯୁବତୀର ବିବାହ ଜନିତ ସମସ୍ୟା ଏ ଉପନ୍ୟାସର ମୁଖ୍ୟ ଉପଜୀବ୍ୟ ବିଷୟବସ୍ତୁ ।

'ଅବ୍ୟାପାର' ନାମକରଣ ସଂପର୍କରେ ବ୍ରଜମୋହନ ମହାନ୍ତି କହିଛନ୍ତି, "ପରାଧୀନ ଦେଶରେ ଦେଶ ସେବା କରିବାକୁ ବାହାରି ଘର ସଂସାର କରିବା ଏକ ଅବ୍ୟାପାର । ପ୍ରେମବନ୍ଧନରେ ମଧ୍ୟ ନିଜକୁ ବନ୍ଦୀ କରିବାକୁ ବାଧ୍ୟ କରିବା ହିଁ ଅବ୍ୟାପାର, ନାରୀମାନଙ୍କ ମନ ନେଇ ବୁଝେଇ ସୁଝେଇ ରଖିବା ଏକ ଅବ୍ୟାପାର ଓ ଦେଶପ୍ରାଣ ସ୍ୱେଚ୍ଛାସେବୀ ସାଜି ଜୀବନ ପ୍ରତି ମୋହ ରଖିବା ଏକ ଅବ୍ୟାପାର ।

ଅହମ୍ମଦନଗର ଫୋର୍ଟ ବନ୍ଦୀ ଜୀବନର ଆଉ ଏକ ସ୍ମରଣୀୟ ଉପନ୍ୟାସ 'ଟାଉଟର' । ମହତାବ ଯେଉଁ ବିଶୃଙ୍ଖଳ ଆତ୍ମଘାତୀ ସମାଜକୁ ଅଙ୍ଗେ ନିଭେଇଛନ୍ତି, ଆଖିରେ ଦେଖିଛନ୍ତି ସେଇ ସମାଜର କଥା ହିଁ 'ଟାଉଟର' ଉପନ୍ୟାସରେ ବର୍ଣ୍ଣନା କରାଯାଇଛି । ସମାଲୋଚକଙ୍କ ମତରେ ସେସମୟରୁ ସମଗ୍ର ଦେଶରେ ଯେଉଁ ଗାନ୍ଧୀବାଦର ପ୍ରବଳ ବହ୍ନି ପ୍ରଜ୍ଜ୍ୱଳିତ ହୋଇଥିଲା ତାହା ହିଁ ଉପନ୍ୟାସକୁ ଏକ ପ୍ରଚାରମୁଖୀ ସାହିତ୍ୟ ଭାବେ ଗଢ଼ି ତୋଳିଲା । ତେଣୁ ମହତାବ ଯେଉଁ ପରିମାଣଟିର ଜଣେ ଶ୍ରେଷ୍ଠ ଔପନ୍ୟାସିକ ନୁହଁନ୍ତି, ସେ ପରିମାଣରେ ହୋଇଛନ୍ତି ପ୍ରଚାରକ । ଅନ୍ୟ କେତେକଙ୍କ ମତରେ, " ଅନନ୍ତକାଳ ପାଇଁ ସମାଜ ସଂସ୍କାରର ଆବଶ୍ୟକତା ରହିଛି । ତେଣୁ ଟାଉଟର ଭଳି ଉପନ୍ୟାସକୁ ଭୁଲି ହେବ ନାହିଁ । ଉପନ୍ୟାସଟି କପୋଳ କଳ୍ପିତ ହେଉ ବା ବାସ୍ତବ ସତ୍ୟ ଉପରେ ଲିଖିତ ହେଉ, ଓଡ଼ିଆ ସାହିତ୍ୟରେ ଉପନ୍ୟାସର

ସୌଧ ରଚ଼ନା କାଳରେ ଯେ ଏହା ଯଥେଷ୍ଟ ସାହାଯ୍ୟ କରିଛି, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଭାରତୀୟ ଗଣତନ୍ତ୍ର ଶାସନର ସତ୍ତା ଓ ସ୍ୱରୂପର ଅଭିବ୍ୟକ୍ତି ତାଙ୍କର 'ତୃତୀୟ ପର୍ବ' ଉପନ୍ୟାସରେ ବର୍ଣ୍ଣିତ । ଏହା ତାଙ୍କ ପ୍ରଜ୍ଞାଦିପ୍ତ ଜୀବନର ପ୍ରଥମ ଉପନ୍ୟାସ । ଉପନ୍ୟାସର ନାମକରଣ ସଂପର୍କରେ ସେ କହିଛନ୍ତି, "ଭାରତର ସ୍ୱାଧୀନତା ଇତିହାସର ଦୁଇଟି ପର୍ବ ଶେଷ ହୋଇ ବର୍ତ୍ତମାନ ତୃତୀୟ ପର୍ବ ଚାଲିଛି । 1921 ରୁ 1946 ପର୍ଯ୍ୟନ୍ତ 25 ବର୍ଷ ପ୍ରଥମ ପର୍ବ, ପୁଣି 1947 ରୁ 1971 ଯାଏଁ 25 ବର୍ଷ ହେଉଛି ଦ୍ୱିତୀୟ ପର୍ବ, ଯାହାର ବିଷୟ ବସ୍ତୁ ଥିଲା ସ୍ୱାଧୀନତା ସଂଗ୍ରାମୀଙ୍କ ହାତରେ ଶାସନର ପରିଚାଳନା, ତୃତୀୟ ପର୍ବ ହେଉଛି ସେ ଶାସନର ପରିଣତି ।"

ମହତାବ ଏହି ଉପନ୍ୟାସରେ କିପରି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିବା ସ୍ୱାଧୀନତା ସଂଗ୍ରାମୀମାନେ ଶାସନଗାଦୀ ପାଇଁ ପାଗଳ ତାହାର ଏକ ଚ଼ିତ୍ର ଦେବାବେଳେ ଅନ୍ୟ କେତେକ ଶାସନବ୍ୟବସ୍ଥା ପ୍ରତି ବିକ୍ଷୁବ୍ଧ ଓ ଯୁବଗୋଷ୍ଠୀ ମଧ୍ୟରେ ବ୍ୟାପକ ଅସନ୍ତୋଷର ବର୍ଣ୍ଣନା କରି ବର୍ତ୍ତମାନ ସୁବିଧାବାଦୀ ରାଜନୀତି ଦ୍ୱାରା ଉପୁଜୁଥିବା ସଂଘର୍ଷକୁ ରୂପ ଦେଇଛନ୍ତି । ଏହା କେବଳ ଏକ ନିଛକ ସାହିତ୍ୟକୃତି ଭାବେ ଏହାର ବୈଶିଷ୍ଟ୍ୟ ସୀମିତ ନୁହେଁ, ସାଂପ୍ରତିକ ଭାରତୀୟ ରାଜନୀତିକ ଜୀବନଚ଼ର୍ଯ୍ୟାର ଏହା ଏକ ଭାଷା, ଏକ ଦର୍ଶନ ଏବଂ ଏକ ଦିଗଦର୍ଶନ ରୂପେ ସ୍ମରଣୀୟ ।

1979 ମସିହାରେ ମହତାବଙ୍କ '୧୯୭୫' ଉପନ୍ୟାସ ପ୍ରକାଶିତ । ଇମରଜେନ୍‌ସି ସମୟରେ ମହାତବଙ୍କୁ ସ୍ୱାଧୀନୋତ୍ତର ଭାରତରେ ବନ୍ଦୀଜୀବନ କଟାଇବାକୁ ହୋଇଥିଲା । ସେ ଯେପରି ସ୍ୱାଧୀନତା ପୂର୍ବେ ଶାସକବର୍ଗଙ୍କର ଶୋଷଣ ଓ ଅତ୍ୟାଚାରର ଅନୁଭବୀ ଥିଲେ, ଠିକ୍ ସେହିପରି ସ୍ୱାଧୀନତାର ପରବର୍ତ୍ତୀ ବ୍ୟବସ୍ଥା ପ୍ରତି ସେ ହୋଇ ଉଠିଥିଲେ ବିକ୍ଷୁବ୍ଧ । ତାଙ୍କର ସଂଗ୍ରାମୀ ମନ କୌଣସି କଥାକୁ ସାଲିସ କରିପାରିନଥିଲା । ଭୟ, ଉଦ୍‌ବିଗ୍ନ, ଉଦ୍‌ବେଗ ଓ କିଂକର୍ତ୍ତବ୍ୟମୂଢ଼ତାରେ ଆଛନ୍ନ ଓ ଅଭିଭୂତ ଭାରତ ବର୍ଷ- ସେଇ ଆତଙ୍କ ଓ ଅବସାଦ ଗ୍ରସ୍ତ ଦୁଃସମୟର ଏକ ପୂର୍ଣ୍ଣାଙ୍ଗ ଛବି-ଘଟଣାଗୁଡ଼ିକର ବିଶ୍ଳେଷଣରେ ଓ ଚ଼ରିତ୍ରଗୁଡ଼ିକର ସଜୀବତାରେ ରସୋତୀର୍ଣ୍ଣ ଏ ରାଜନୈତିକ ଉପନ୍ୟାସଟି ଏକ ନିର୍ଦ୍ଦିଷ୍ଟ କାଳକୁ ଅଙ୍ଗୀକାରକରି ମଧ୍ୟ ରସୋତ୍ତୀର୍ଣ୍ଣ ହୋଇପାରିଛି । ପ୍ରାୟ ପ୍ରତ୍ୟେକ ଉପନ୍ୟାସର ଚ଼ରିତ୍ରମାନଙ୍କ ମାଧ୍ୟମରେ ମହତାବଙ୍କର ନିଜର ଜୀବନଦର୍ଶନ ଓ କର୍ମ ସାଧନାର ଚିତ୍ର ସ୍ପଷ୍ଟ । ଉପନ୍ୟାସଗୁଡ଼ିକ ମୁଖ୍ୟତଃ ପୁରୁଷ ପ୍ରଧାନ । ଏପରିକି ବୃଦ୍ଧ ଓ ଶିଶୁମାନଙ୍କୁ ଦେଖିବାର ସୁଯୋଗ ସେ ସୃଷ୍ଟି କରିନାହାଁନ୍ତି । କିନ୍ତୁ ଯେଉଁ କେତେ ଗୋଟି ନାରୀ ଚ଼ରିତ୍ର ସୃଷ୍ଟି କରିଛନ୍ତି, ସେମାନଙ୍କୁ ମହିମାଦିପ୍ତ କରିଛନ୍ତି । ସେମାନଙ୍କ ତ୍ୟାଗର ପରାକାଷ୍ଠା ଓଡ଼ିଆ ସାହିତ୍ୟରେ କ୍ୱଚିତ ଦେଖିବାକୁ ମିଳେ ।

ପ୍ରଖ୍ୟାତ ସମାଲୋଚ଼କ ହେନରୀ ଜେମ୍‌ସଙ୍କ ମତରେ, ଯେତେବେଳେ ଶକ୍ତିଶାଳୀ ଲେଖକ ତାର ପକ୍ୱତା ଲାଭ କରେ, ଆମେ ତାଙ୍କ ଲେଖନୀରେ ଅବିସମ୍ବାଦିତଭାବେ ଜୀବନ ଓ ଜଗତ ଉପରେ ସାମଗ୍ରିକ ଅନ୍ତର୍ଦୃଷ୍ଟିର ପରିପ୍ରକାଶ ଦେଖିବାକୁ ପାଇବୁ । ଏହା ହିଁ ତାଙ୍କ ଲେଖନୀର ଆମ ପ୍ରତି ଶ୍ରେଷ୍ଠ ଉପହାର ।" ମହତାବଙ୍କ ଅଭିଜ୍ଞତାର ବିସ୍ତୃତି ଅତ୍ୟନ୍ତ ବ୍ୟାପକ ଥିବା ହେତୁ, ତାଙ୍କର ଜୀବନ ଦର୍ଶନ ସୁଗଭୀର, ପରିସୂକ୍ଷ୍ମ ପ୍ରଜ୍ଞା ଓ ପ୍ରତ୍ୟୟରେ

ପରିପୂର୍ଣ୍ଣ । ସାହିତ୍ୟର ସମସ୍ତ ବିଭାଗର କୃତିତ୍ୱ ଭିତରେ ତାଙ୍କ ଉପନ୍ୟାସ ରଚ଼ନାର ସିଦ୍ଧି ନିଶ୍ଚିତ ମୁଖ୍ୟ । ଉପନ୍ୟାସ ହିଁ ତାଙ୍କୁ ପ୍ରଥମେ ସାହିତ୍ୟିକର ସିଦ୍ଧି ଓ ସମ୍ମାନ ଦେଇଛି ।

କେବଳ ଓଡ଼ିଆ ସାହିତ୍ୟ କାହିଁକି ସମଗ୍ର ଭାରତୀୟ ସାହିତ୍ୟରେ ପ୍ରତ୍ୟକ୍ଷ ରାଜନୀତିରେ ସଂଶ୍ଳିଷ୍ଟ କୌଣସି ରାଜନୈତିକ ବ୍ୟକ୍ତିଙ୍କ ଦ୍ୱାରା ଲିଖିତ ଉପନ୍ୟାସ କୃତି ବିରଳ । ସାହିତ୍ୟିକ ଭାବେ କଳ୍ପନା ଓ ଅନୁଭୂତି ନେଇ ଅନେକ ଶ୍ରେଷ୍ଠ ରାଜନୈତିକ କଥା ସାହିତ୍ୟ ସୃଷ୍ଟି କରିଛନ୍ତି ସତ୍ୟ କିନ୍ତୁ ସେସବୁରେ ଲେଖକଙ୍କ ନିଜସ୍ୱ ଜୀବନ ଭାଷ୍ୟ ତଥା ବାସ୍ତବ ବ୍ୟକ୍ତିତ୍ୱର ଛାପ ଏକାନ୍ତ ଭାବେ ଅକୃତ୍ରିମ ନୁହେଁ । ଯଥାର୍ଥ ଉପନ୍ୟାସରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଉପନ୍ୟାସକାରଙ୍କ ଜୀବନ ହିଁ ଉପସ୍ଥାପିତ ହୋଇଥାଏ, ତେଣୁ ଉପନ୍ୟାସକାରଙ୍କ ବ୍ୟକ୍ତିତ୍ୱର ପ୍ରତିଫଳନ କେଉଁଠି ନା କେଉଁଠି ଘଟିଥାଏ । ଏ ଦୃଷ୍ଟିରୁ ମହତାବଙ୍କ ବ୍ୟକ୍ତିତ୍ୱର ପ୍ରତିବିମ୍ବନ ଉପନ୍ୟାସ ଗୁଡ଼ିକରେ ପ୍ରତିଫଳିତ ହୋଇ ଏହାକୁ ଜୀବନ୍ତ କରି ଗଢ଼ି ତୋଳିବାରେ ସାହାଯ୍ୟ କରିଛି । ତାଙ୍କର ଉପନ୍ୟାସ କେବଳ ସାରସ୍ୱତ ସୃଷ୍ଟି ଭାବରେ ନୁହେଁ, ଅଧିକନ୍ତୁ ପ୍ରାମାଣିକ ଇତିହାସ ଭାବରେ ଜାତୀୟଜୀବନର ମହାନ୍ ସଂପଦ ହୋଇ ରହିଥିବ ।

**(ଗ) କବି ମହତାବ :** ମହତାବଙ୍କୁ କବି ଭାବରେ ଚ଼ିହ୍ନିତ କରିବା ନିଶ୍ଚିତ ଭାବେ ଭୁଲ୍ ହେବ; କିନ୍ତୁ ସେ ଅନେକ କବିତାର ସ୍ରଷ୍ଟା । ତାଙ୍କର ରାଜନୈତିକ ଜୀବନର ଘନଘଟା ମଧ୍ୟରେ ସେ ଯେ କବି ହୃଦୟ ନେଇ କବିତା ରଚ଼ନା କରିଛନ୍ତି, ଏହା ଓଡ଼ିଆ ସାହିତ୍ୟ ପାଇଁ ଗର୍ବ ଓ ଗୌରବ ହୋଇ ରହିବ । ସେ ନିଜର କାବ୍ୟ ଭୂମିକା ସଂପର୍କରେ ଲେଖିଛନ୍ତି, "ନିର୍ଦ୍ଧୁମ ଖରାବେଳେ ହଳ ଫିଟାଇ ମୂଲିଆ ଦୂର ବିଲରୁ ଘରକୁ ଫେରୁ ଫେରୁ କ୍ଲାନ୍ତ ହୋଇ ବାଟରେ ବର ବା ଓସ୍ତଗଛ ଛାଇରେ ଥକା ମେଣ୍ଟାଇବା ପାଇଁ ଯେତେବେଳେ ବସି ପଡ଼େ ସେତେବେଳେ ସେ ଚାରିଆଡ଼କୁ ଅନାଇ କିଛି ସୁର ଧରି ଗାଇବାକୁ ମନକରେ । ସଙ୍ଗୀତ ତାକୁ ଜଣା ନାହିଁ, ମାତ୍ର ଶୁଣିଛି ସେ କେତେଥର ଅନେକ ସଙ୍ଗୀତ ଯାହା ତାକୁ ସୁଖ ଲାଗିଛି, ସେଇଆକୁ ମନେ ପକାଇ ରାଗ ଧରି କିଛି ଗାଇବାକୁ ମନ କରେ, କାରଣ ଚାରିଆଡ଼େ ସୂର୍ଯ୍ୟର ପ୍ରଖର କିରଣ ଭିତରେ ସେ ଯେ ଟିକିଏ ଛାଇ ପାଇଛି, ସେଇ ହେଉଛି ତାର ସଙ୍ଗୀତର ପ୍ରେରଣା- ଯାହା ଦିନରାତି ଜୀବିକା ପାଇଁ ପରିଶ୍ରମରେ କୁଆଡ଼େ ଦବିଯାଇଥାଏ । ମୋର ସାହିତ୍ୟ ଚର୍ଚ୍ଚା ସେହିପରି । ରାଜନୀତିର କର୍ମମୟ ଜୀବନରେ ହନ୍ତସନ୍ତ ହୋଇ ଯେତେବେଳେ ଜେଲ ଆସିବାକୁ ପଡ଼େ, ସେତେବେଳେ ଟିକିଏ ଛାଇରେ ବସି ପଡ଼ିଲା ଭଳି ମନେ ହୁଏ । ସେତିକିବେଳେ ଆପେ ଆପେ ସାହିତ୍ୟ ଆଡ଼କୁ ମନ ଯାଏ । ସେ ଦିଗରେ ସାଧନା ବା ଯୋଗ୍ୟତା ନଥିଲେ ମଧ୍ୟ ।"

ମହତାବଙ୍କ କାବ୍ୟ କବିତା ମଧ୍ୟରେ ତିନି ଗୋଟି କାବ୍ୟ, ଦୁଇଟି କାବ୍ୟ ନାଟିକା, ଗୋଟିଏ କ୍ଷୁଦ୍ର କବିତା ସଂକଳନ ଓ କେତେ ଖଣ୍ଡ କବିତା ବିଭିନ୍ନ ସମୟରେ ରଚିତ ଓ ପ୍ରକାଶିତ, ସେଗୁଡ଼ିକ ହେଲା-ଶେଷ ଅଶ୍ରୁ, ଆତ୍ମଦାନ, ପୁଣ୍ୟାତ୍ମା ଗୋପବନ୍ଧୁ, ଢ଼ଷାଭାଇ ଇତ୍ୟାଦି । କେତୋଟି ଗଣଧର୍ମୀ କାବ୍ୟ ବା ବୃହତ କବିତା ପୁସ୍ତିକା ଛପା ଆକାରରେ ବା ପାଣ୍ଡୁଲିପି ଆକାରରେ ମିଳୁନାହିଁ । ଏତଦ୍‌ବ୍ୟତୀତ କାରାଗାରରେ ଲେଖିଥିବା 'ନିଗଡ଼ ନିସ୍ୱନ' ମଧ୍ୟ ଦୁଷ୍ପ୍ରାପ୍ୟ ।

କାବ୍ୟ ନାଟିକା 'ଆତ୍ମଦାନ'ର କଥା ବସ୍ତୁ ମଧ୍ୟରେ ଭାରତର ସ୍ୱାଧୀନତା ଆନ୍ଦୋଳନ,

ମହାତ୍ମାଗାନ୍ଧୀଙ୍କର ମହାନତା ବର୍ଣ୍ଣିତ । ଗାନ୍ଧିଜୀଙ୍କର ଅହିଂସା ସତ୍ୟାଗ୍ରହର ବାର୍ତ୍ତାକୁ ଗାଁ ଲୋକଙ୍କ ମୁହଁରେ ମହତାବ ଏପରି ବ୍ୟକ୍ତ କରିଛନ୍ତି,

"କହେ ଯେବେ ସନ୍ନ୍ୟାସୀର ଜୟ ଜୟ କାର
ପୂରି ଉଠେ ମନ ମୋର କେ ଜାଣେ କାହିଁକି ।
ଭୁଲିଯାଏଁ ଦୁଃଖ ଯେତେ ଘର କରଣାର
ସୁଖର ବିଜୁଳିମାରେ ସତେକି ଅନ୍ଧାରେ
ଶୁଖିଲା ପୋଖରୀ ପାଇ ଖରାଦିନ ବର୍ଷା
ଜମିଗଲେ ଅଳ୍ପପାଣି ଦିଶଇ ଯେପରି
ସେହିପରି ହୋଇଯାଏ ଏ ଶୁଖିଲା ମନ ।"

ଶ୍ରୀ ନିତ୍ୟାନନ୍ଦ ଶତପଥୀଙ୍କ ଭାଷାରେ, "ଜାତୀୟ ସଂଗ୍ରାମର ପୃଷ୍ଠଭୂମିରେ ଏହିପରି ଏକ ବଳିଷ୍ଠ ମୂଲ୍ୟବୋଧକୁ ଉର୍ଦ୍ଧ୍ୱାୟିତ କରିବାରେ ତାଙ୍କ କାବ୍ୟ କଳାଗତ ଉଚ୍ଚତା ହାସଲ କରି ନଥାଇ ପାରେ କିନ୍ତୁ ସାମାଜିକ ଉପଯୋଗିତାରେ ଖୁବ୍ ତୀବ୍ର ଓ ଶାଣିତ, ଏଥିରେ ସନ୍ଦେହ ନାହିଁ । ।"

ମହତାବଙ୍କର ବିଶେଷତ୍ୱ ଏହିଯେ ତାଙ୍କର ସମସ୍ତ ଲେଖାରେ ସ୍ୱଦେଶ ପ୍ରୀତି ଓ ଜାତୀୟତା ଭାବର ସ୍ପନ୍ଦନ ସ୍ପଷ୍ଟ ଭାବରେ ରେଖାଙ୍କିତ । ତାଙ୍କ କାବ୍ୟ ଚେତନାରେ ମାନବିକ ଦୃଷ୍ଟିଭଙ୍ଗୀ ବେଶ୍ ବାରି ହୋଇ ପଡ଼େ । ମହତାବଙ୍କର କ୍ଷୁଦ୍ର କାବ୍ୟ 'ପଲାସୀ ଅବସାନେ' ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ ହୋଇଥିଲା । କାବ୍ୟଟିର ଭୂମିକାରେ ମହତାବ କହିଛନ୍ତି, "ପଲାସି ରଣଭୂମିରେ ଯେଉଁ ଦିନ ଇଂରେଜ ବଣିକମାନଙ୍କର ବିଜୟ ବୈଜୟନ୍ତି ଉଡ଼ିଥିଲା, ସେଦିନ ଭାରତ କାରାଗାରର ଦ୍ୱାର ଦେଶରେ ଉପସ୍ଥିତ ହେଲା । ପଲାସି ଯୁଦ୍ଧ ଭାରତ ଇତିହାସରେ ଅତି ପ୍ରସିଦ୍ଧ ଘଟଣା । ବିଦେଶୀ ଐତିହାସିକମାନେ ସିରାଜଉଦ୍ଦୌଲ୍ଲାଙ୍କୁ କୁତ୍ସିତ ଭାବରେ ଚିତ୍ରଣ କରିଛନ୍ତି । କ୍ଲାଇବ ସେମାନଙ୍କ ଦ୍ୱାରା ସୁଚିତ୍ରିତ । ସୁଖର ବିଷୟ ବହୁ ଗବେଷଣା କରି କେତେଜଣ ଭାରତୀୟ ଐତିହାସିକ କମ୍ପାନୀ ଅମଳର ପ୍ରକାଶିତ ପୁରୁଣା କାଗଜ ପତ୍ର, ତତ୍କାଳୀନ ଲେଖକମାନଙ୍କର ଲେଖା ଓ ଆନୁସଙ୍ଗିକ ଅନେକ ବିଷୟ ଆଲୋଚନା କରି ବହୁତ ତଥ୍ୟ ବାହାର କରିଛନ୍ତି । ପଲାସୀ ଯୁଦ୍ଧର ଅବସାନ ପରେ ତତ୍ସଂପର୍କୀୟ ବ୍ୟକ୍ତିମାନଙ୍କର କି ବ୍ୟବସ୍ଥା ହୋଇଥିଲା ଓ ସେମାନଙ୍କର ପ୍ରକୃତ ଚରିତ୍ର କିପରି ଥିଲା ଏ ପୁସ୍ତକରେ ବର୍ଣ୍ଣିତ ହୋଇଛି । ଏ ପୁସ୍ତକରେ କିଛି କଳ୍ପନା ନାହିଁ, ସଂପୂର୍ଣ୍ଣ ଐତିହାସିକ ।"

ଇଂରେଜ ଚରିତ୍ର କିପରି, ତାହାର ଗୋଟିଏ ପଙ୍କ୍ତି ତଳେ ଉଦ୍ଧାର କଲେ ଜଣାଯିବ ଯେ କାହିଁକି ଏହି ପୁସ୍ତକଟି ବାଜ୍ୟାପ୍ତ କରାଯାଇଥିଲା ।

"ବିଶ୍ୱାସଘାତକତାର ପୂର୍ଣ୍ଣ ଅବତାର
ରକ୍ତ ସଙ୍ଗେ ଧର୍ମର ବହେ ମିଥ୍ୟାଚାର
ରାଜନୀତି କ୍ଷେତ୍ରେ ଯାହା କଳ୍ପନା ଅତୀତ
(କିନ୍ତୁ) କରନ୍ତି ଫିରିଙ୍ଗି ତାହା ଗୌରବ ସହିତ ।

ମହତାବଙ୍କର 'ଶେଷ ଅଶ୍ରୁ'କୁ ଯଦିଓ କାବ୍ୟ କୁହାଯାଏ, ଏହା ଏକ ମିଶ୍ରିତ ସଂକଳନ ଯେଉଁଥିରେ ଦୁଇଟି କ୍ଷୁଦ୍ର କାବ୍ୟ ନାଟିକା, ତିନିଗୋଟି କବିତା ଓ ଛ'ଟି କ୍ଷୁଦ୍ର ଗଦ୍ୟ ଲେଖା ରହିଛି । ଗାନ୍ଧୀଙ୍କ ତିରୋଧାନରେ ଏହା ଗାନ୍ଧୀଙ୍କ ପ୍ରତି ମହତାବଙ୍କ ହୃଦୟର ଭାବୋଚ୍ଛ୍ୱାସ । ମହତାବ ତାଙ୍କର ଜୀବନ ବ୍ୟାପି ସଂଗ୍ରାମ ଓ ସାଧନାରେ ଗାନ୍ଧୀ ଦର୍ଶନ ପ୍ରତି ନିଜର ଅକୁଣ୍ଠ ଆନୁଗତ୍ୟ ପ୍ରକାଶ କରିଛନ୍ତି ।

ସେ ଲେଖିଛନ୍ତି, "କିଏସେ ହସିବ ଟିକେ ଦେଖା ହେଲେ ଏବେ,
ପଚାରିବ ଭଲମନ୍ଦ ପିତୃସ୍ନେହଭରେ ?
କିଏସେ କରିବ କ୍ଷମା, ସହିବ କିଏସେ
ଶତଶତ ପୁତ୍ରଙ୍କର ଶତ ଶତ ଭେଦ ?
କିଏସେ ଥାପିବ ଆଉ ସରଳ ସମତା,
ବହୁଳ ବିଭେଦ ମଧ୍ୟେ ନିରପେକ୍ଷ ହୋଇ ?"

କବିତା ଚର୍ଚ୍ଚା ତାଙ୍କର ସ୍ୱଧର୍ମ ନୁହେଁ । ସେ କେବେ ହେଲେ କବି ଆଖ୍ୟା ପାଇବା ପାଇଁ ମଧ୍ୟ ଆଶାୟୀ ହୋଇ ନାହାଁନ୍ତି । ଏହା ତାଙ୍କ ସାମୟିକ ଭାବନାର ପରିପ୍ରକାଶ ମାତ୍ର । ସେ ନିଜକୁ ଅତ୍ୟାଧୁନିକତାଠାରୁ ଦୂରେଇ ରଖି ଅତି ସାବଲୀଳ ଓ ବୋଧଗମ୍ୟ ଭାଷାରେ କବିତା ରଚନା କରିଛନ୍ତି । କବିତା ସଂପର୍କରେ ମଧ୍ୟ ନିଜର ମତ ଦେଇ ସେ କହିଛନ୍ତି, "ବିଜ୍ଞାନ ଚର୍ଚ୍ଚା ଦ୍ୱାରା ମନୁଷ୍ୟର ଜ୍ଞାନ କ୍ରମେ ଏପରି ବିସ୍ତାର ଲାଭ କଲାଣି ଓ କରୁଛି ଯେ, ସେଥିରେ ସରଳ ବିଶ୍ୱାସର ସ୍ଥାନ ନାହିଁ ବା ହୃଦୟରେ ଭାବପ୍ରବଣତାର ବିକାଶ ପାଇଁ ଅବକାଶ ନାହିଁ । ତେଣୁ କବିତା ଭାବମୂଳକ ନ ହୋଇ କ୍ରମେ ବେଶି ଜ୍ଞାନମୂଳକ ହେଉଛି, କିନ୍ତୁ ମନୁଷ୍ୟର ଅନ୍ତର ଜ୍ଞାନ ଉପରେ ଯେତେ ପ୍ରତିଷ୍ଠିତ ନୁହେଁ, ଭାବ ଉପରେ ତାହା ପୂର୍ଣ୍ଣ ରୂପେ ପର୍ଯ୍ୟବସିତ । ଏହି ହେଉଛି ମୁଖ୍ୟ କାରଣ ଆଧୁନିକତା ହୃଦୟସ୍ପର୍ଶୀ ନହେବାର ।"

ମହତାବ ରାଜନୀତି ମଧ୍ୟଦେଇ ଦାର୍ଶନିକ ପାଲଟି ଯାଇଛନ୍ତି । ଜୀବନଦର୍ଶନର ବିଭିନ୍ନ କବିତା ମଧ୍ୟରେ 'ଉଠା ଦୋକାନୀର ନୋଟିସ'ରେ ସମସ୍ତଙ୍କ ଠାରୁ ବିଦାୟ ନେଇ ଚାଲିଯିବାର ଏକ ଆବେଗମୟ ଆନ୍ତରିକ ବାଣୀ ତାଙ୍କୁ ମହନୀୟ କରି ତୋଳିଛି ।

"ତେଣୁ ଏ ନୋଟିସ ହେଉଛି ସଭିଙ୍କୁ
ହୁଅନ୍ତୁ ସମସ୍ତେ ସଦୟ
ଉଠା ଦୋକାନୀକୁ ବନ୍ଧାବନ୍ଧି ପାଇଁ
ଦିଅନ୍ତୁ ଟିକିଏ ସମୟ
ଏଠାକାର କଥା ଏଇଠି ସଇଲା
ଆର ମେଳା ପାଇଁ ତିଆରି
ନ କଲେଯେ ମୋର ସର୍ବନାଶ ହେବ ।
ଶେଷେ ସିନା ହେବି ଭିକାରି ।"

**(ଘ) ଏକାଙ୍କିକା ସ୍ରଷ୍ଟା ମହତାବ :** ମହତାବ ପ୍ରାୟ କୋଡ଼ିଏଟି ଏକାଙ୍କିକା ରଚ଼ନା କରିଛନ୍ତି; ତନ୍ମଧ୍ୟରୁ 10 ଗୋଟି 'ଯୁଗ ସଂକେତ'ରେ ସ୍ଥାନିତ "ତାଙ୍କର ଏକାଙ୍କିକାଗୁଡ଼ିକ ମଧ୍ୟ ଗଳ୍ପ ଓ ଉପନ୍ୟାସ ଭଳି ରାଜନୈତିକ ଓ ସାମାଜିକ ପୃଷ୍ଠଭୂମି ଉପରେ ରଚ଼ିତ ; କିନ୍ତୁ ସେଗୁଡିକ ଘଟଣା-ପ୍ରଧାନ ନ ହୋଇ ଚ଼େତନା-ପ୍ରଧାନ ହୋଇଛନ୍ତି । ଏକାଙ୍କିକା ସ୍ରଷ୍ଟା ଭାବେ ମହତାବଙ୍କର ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ସ୍ୱୀକୃତ । ଚିରାଚରିତ ପ୍ରଣୟ-ପ୍ରଧାନ ବସ୍ତୁ ଗ୍ରହଣ ନକରି ସେ ମଣିଷର ସାମାଜିକ ବିବର୍ତ୍ତନ ଓ ବିଭିନ୍ନ ପ୍ରତିକ୍ରିୟାକୁ ଗ୍ରହଣ କରିଛନ୍ତି । ଏ ଦିଗରେ ସେ ହେଉଛନ୍ତି ପ୍ରଥମ ସାର୍ଥକ ଶିଳ୍ପୀ ।" ମହତାବଙ୍କର ଏକାଙ୍କିକା ଗୁଡ଼ିକର ନାମ 'ରୂପାନ୍ତର', 'ଯୁଗ ସଂକେତ', 'ଗୁପ୍ତ ପ୍ରଣୟ', 'ଉତ୍ତରୋତ୍ତର', 'ଇତିହାସର ପରିହାସ', 'ଅନ୍ଧଯୁଗ', 'ପ୍ରବଞ୍ଚନା' ଇତ୍ୟାଦି । ଏସବୁରେ ପ୍ରଚ଼ଳିତ ସମୟର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଜୀବନର ଚ଼ିତ୍ର ପ୍ରଦାନ କରାଯାଇଛି । ମହତାବ ନାଟ୍ୟକାର ନଥିଲେ କିମ୍ବା ଏକାଙ୍କିକା ରଚ଼ନା ମାଧ୍ୟମରେ ନାଟ୍ୟକାର ହେବାକୁ ଚେଷ୍ଟା କରିନାହାଁନ୍ତି । ତେଣୁ ତାଙ୍କ ଏକାଙ୍କିକାଗୁଡ଼ିକରେ ନାଟକୀୟତା ସୃଷ୍ଟି ହେବାର କୌଣସି ପ୍ରୟାସ ସେ ସୃଷ୍ଟି କରିନାହାଁନ୍ତି । ସେଥିପ୍ରତି ସେ ଆଦୌ ସଜାଗଥିଲା ପରି ଉପଲବ୍ଧ ହୁଏ ନାହିଁ ।

ନାଟକ ହେଉଛି ଜୀବନଧର୍ମୀ ଚ଼ିନ୍ତାକୁ ପ୍ରକାଶ କରିବାର ଏକ କଳା । ହଡ଼ସନଙ୍କ ମତରେ, "ଏହା ଜୀବନର ଏକ ନିରପେକ୍ଷ ନୈର୍ବ୍ୟକ୍ତିକ ଉପସ୍ଥାପନ ।" ମହତାବଙ୍କ ଏକାଙ୍କିକାଗୁଡ଼ିକ ଆଙ୍ଗିକ, ଭାଷା ସଂଳାପ, ଉଭଟତା ଓ ବୌଦ୍ଧିକତା ଦୃଷ୍ଟିରୁ ଦୁର୍ବଳ ହେଲେ ହେଁ ତାଙ୍କର କଥାବସ୍ତୁ, ବିଷୟ ଉପସ୍ଥାପନା, ବିଶ୍ଳେଷଣ ଅତ୍ୟନ୍ତ ପ୍ରାଣସ୍ପର୍ଶୀ ।

**(ଙ) ପ୍ରାବନ୍ଧିକ ମହତାବ :-** ମହତାବ ଅତ୍ୟନ୍ତ ଉଚ୍ଚକୋଟୀର ଗଦ୍ୟଶିଳ୍ପୀ ଓ ପ୍ରାବନ୍ଧିକ । ଜୀବନ ଓ ସମାଜକୁ ଯୋଡ଼ି ଦେଇଥିବା ଏପରି କୌଣସି ବିଷୟ ନାହିଁ, ଯାହା ମହତାବଙ୍କର ଚ଼ିନ୍ତା ଓ ଚେତନାକୁ ସଂକ୍ରମିତ କରିନାହିଁ । ଯେହେତୁ ସେ ନିଜର କର୍ତ୍ତବ୍ୟ ଭାବରେ ସାହିତ୍ୟକୁ ଗ୍ରହଣ କରିଥିଲେ, ସେହି କାରଣରୁ ସମାଜର ସବୁକିଛି ଚ଼ିନ୍ତାଧାରା ତାଙ୍କ ଲେଖନୀ ଦ୍ୱାରା ପ୍ରସୂତ ହୋଇଥିଲା ଏବଂ ପ୍ରବନ୍ଧ ଥିଲା ସବୁଠାରୁ ଶକ୍ତିଶାଳୀ ମାଧ୍ୟମ । "ସ୍ୱାଧୀନ ଚ଼ିନ୍ତନ ଓ ସାମାଜିକ ମନନ ତାଙ୍କ ପ୍ରବନ୍ଧଗୁଡିକର ବାଙ୍ମୟ ବିଳାସ ।" ତାଙ୍କ ପ୍ରବନ୍ଧର ସ୍ୱାତନ୍ତ୍ରତା ହେଉଛି ନୂତନ ବିଚାର, ଅଭିନବତ୍ୱ ଓ ଅକୃତ୍ରିମତା । 'ଗାଁ ମଜଲିସ୍' ଠାରୁ ଆରମ୍ଭ କରି ତାଙ୍କର ଆତ୍ମଜୀବନୀ 'ସାଧନାର ପଥେ', 'ଗାନ୍ଧିଜୀ ଓ ଓଡ଼ିଶା' 'ଓଡ଼ିଶା ଇତିହାସ' ପ୍ରଭୃତି ତାଙ୍କୁ ଓଡ଼ିଆ ସାହିତ୍ୟର ଯଶସ୍ୱୀ ପ୍ରାବନ୍ଧିକ ଭାବରେ ପରିଚ଼ୟ ଦିଏ ।

ମହତାବଙ୍କ ପ୍ରବନ୍ଧଗୁଡ଼ିକୁ ବିଶ୍ଳେଷଣ ଓ ଅନୁଶୀଳନ କଲେ ଦେଖାଯାଏ ଏହା ରାଜନୈତିକ, ସାମାଜିକ, ଆର୍ଥିକ, ସାଂସ୍କୃତିକ ଓ ବ୍ୟକ୍ତିଗତ ବିଚାରରେ ପୁଷ୍ଟ ଓ ସ୍ୱୟଂସଂପୂର୍ଣ୍ଣ । ତାଙ୍କ ପ୍ରବନ୍ଧ ସାହିତ୍ୟରୁ ଜଣାପଡ଼େ ମହତାବ ଓଡ଼ିଆ ଜାତିର ଓ ଓଡ଼ିଆ ସାହିତ୍ୟର ମଙ୍ଗୁଆଳ । ତାଙ୍କର ଆତ୍ମଜୀବନୀ 'ସାଧନାର ପଥେ'ରେ ମହତାବ ନିଜର ବଢ଼ତି ବହୁତ କମ୍ ସ୍ଥାନରେ କରିଛନ୍ତି । ପ୍ରବନ୍ଧ ହେଉଛି ବ୍ୟକ୍ତିତ୍ୱର ହିଁ ଦର୍ପଣ ବା ନିଜର ବ୍ୟକ୍ତି ସ୍ୱରୂପ ସେଥିରେ ପ୍ରକାଶ ପାଏ । ଶ୍ରୀ ଚ଼ିନ୍ତାମଣି ବେହେରାଙ୍କ ମତରେ, "ଜଗତ ସହିତ ତାର ପରିଚିତିରେ ଥାଏ ସଂରାଗ (passion), ବାସ୍ତବତା (realism) ଓ

ଦୂରକଳ୍ପନା (speculation) । ସ୍ଥଳ ବିଶେଷରେ ଏଥିରେ ଥାଏ ସ୍ୱାଧୀନ ଚିନ୍ତା, ଗବେଷଣା ଓ ନନ୍ଦନଧର୍ମିତାର ସମନ୍ୱୟ ଘଟିଥାଏ । ଯେକୌଣସି ଜ୍ଞାନଗର୍ଭକ ଓ ତତ୍ତ୍ୱଧର୍ମୀ ବିଷୟବସ୍ତୁକୁ ମଧ୍ୟ ପ୍ରାବନ୍ଧିକ ତାର ବ୍ୟକ୍ତିତ୍ୱର ମାଧୁରୀ- ପ୍ରଲେପ ଦ୍ୱାରା ସହଜ, ସରଳ ଓ ସମ୍ବେଦନଧର୍ମୀ କରିପାରେ । ପ୍ରବନ୍ଧକୁ ସାଧାରଣ ଭାବରେ ମନ୍ମୟ ବା ତନ୍ମୟ, ବ୍ୟକ୍ତିନିଷ୍ଠ ବା ବସ୍ତୁନିଷ୍ଠ, ବ୍ୟକ୍ତିକ ବା ନୈର୍ବ୍ୟକ୍ତିକ ଅଥବା ସୃଜନଧର୍ମୀ ବା ସମ୍ବାଦଧର୍ମୀ ଦୁଇଟି ବିଭାଗରେ ବିଭକ୍ତ କରାଯାଇଥାଏ ।"

ମହତାବଙ୍କ ଆତ୍ମଜୀବନୀ 'ସାଧନାର ପଥେ'ରେ ନିଜର ସଂଗ୍ରାମ ଓ ସାଧନାର କଥାକୁ ହିଁ କହିଛନ୍ତି । ଆତ୍ମଜୀବନୀ 'ସାଧନାର ପଥେ' ଓଡ଼ିଆ ସାହିତ୍ୟର ଏକ ମାଇଲଖୁଣ୍ଟ । ଏହି ପୁସ୍ତକରେ ଓଡ଼ିଶାର ସାମଗ୍ରିକ ଚିତ୍ର ଓ ସ୍ୱାଧୀନତା ଆନ୍ଦୋଳନର ବର୍ଣ୍ଣନା ସ୍ପଷ୍ଟ ଓ ପ୍ରାଞ୍ଜଳ ଭାବରେ ଥିବା ହେତୁ ଏହା ଅନ୍ୟ ମନିଷୀମାନଙ୍କର ଜୀବନୀ ଲେଖିବାରେ ସାହାଯ୍ୟ କରୁଛି ଓ କରିବ । ମହତାବଙ୍କର ଆତ୍ମଜୀବନୀ ସାଧନାର ପଥେ ଏକ ଉଚ୍ଚକୋଟୀର ପ୍ରବନ୍ଧ ସାହିତ୍ୟ ଭାବେ ଗ୍ରହଣ କରିବାବେଳେ ଆତ୍ମଜୀବନୀ ସଂପର୍କରେ ସମ୍ୟକ ଅବଧାରଣା ହେବା ଆବଶ୍ୟକ । ମନରେ ପ୍ରଥମେ ପ୍ରଶ୍ନ ଆସେ ଏହି ଆତ୍ମଜୀବନୀରେ ସେହି ବ୍ୟକ୍ତିଟି କ'ଣ ଲେଖିବାକୁ ଚାହେଁ ? ସେ କ'ଣ ନିଜେ ଯାହା କରିଛି, ତାହା ପ୍ରମାଣସିଦ୍ଧ କରିବାକୁ ଇଚ୍ଛା କରେ କିମ୍ବା ନିଜକୁ ଅନ୍ୟର ସମସାମୟିକ ସହିତ ତୁଳନାତ୍ମକ ଭାବରେ ଉପସ୍ଥାପିତ କରେ କିମ୍ବା ନିଜକୁ ଭବିଷ୍ୟତ ପ୍ରତି ନିଜର ପ୍ରତିବଦ୍ଧତାକୁ ପ୍ରମାଣ କରି ରଖିବାକୁ ଚାହେଁ ?

ଗୋଟିଏ ଅର୍ଥରେ କୁହା ଯାଇପାରେ ଯେ ଯେକୌଣସି ଆତ୍ମଜୀବନୀ ନିଜର ଆତ୍ମ-ଶ୍ଳାଘା ପ୍ରତିଷ୍ଠା କରିବା ଉଦ୍ଦେଶ୍ୟ ନେଇ ଲେଖାଯାଏ । କାରଣ ବ୍ୟକ୍ତି ଚାହେଁ ନାହିଁ ଯେ ସେ ସଂପୂର୍ଣ୍ଣ ଲୋପ ପାଇଯାଉ ବା ଲୋକମାନେ ତାକୁ ସଂପୂର୍ଣ୍ଣ ଭୁଲିଯାଆନ୍ତୁ । ସବୁ କଥା ମଣିଷ ମନରେ ରହେ ନାହିଁ , ଯାହା ଲିଖିତ ରହେ, ତାହା ସବୁଦିନକୁ ମନେ ରହିଯାଏ । ଆତ୍ମଜୀବନୀ ଲେଖିବା ଅର୍ଥ ମାସ, ବର୍ଷ କ୍ରମରେ ଘଟଣାଗୁଡ଼ିକୁ ସଜ୍ଜିତ କରି ରଖିବା ନୁହେଁ ବରଂ ଜୀବନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ କେତେ ମାତ୍ରାରେ ସଫଳତା ବା ବିଫଳତା ଲାଭ କଲା, ତା'ର ଚିତ୍ର ଅସ୍ପଷ୍ଟ ଭାବରେ ମିଳେ । ଏପରିକି ଆତ୍ମଜୀବନୀ ମଧ୍ୟରେ ନିଜ ଜୀବନକୁ ବ୍ୟକ୍ତି ଅତ୍ୟନ୍ତ ନିଷ୍ଠେଷ୍ଟ ଓ ସାଧୁ ଭାବରେ ଦେଖି ନିଜ ଜୀବନର ଦର୍ଶନକୁ ଯେପରି ସେ ବଞ୍ଚି ଆସିଛି, ସେପରି ଉପସ୍ଥାପିତ କରେ ।

ଜଣେ ବ୍ୟକ୍ତି ନିଜର ଆତ୍ମଜୀବନୀ ଲେଖିବାର ପୃଷ୍ଠ ଭୂମିରେ ନିଜର ବ୍ୟକ୍ତି ସତ୍ତାର ସ୍ଥିତି ସଂପର୍କରେ ଅବଗତ କରାଏ । ଏଜୀବନର ସାୟାହ୍ନରେ ପହଞ୍ଚିବା ପରେ ହିଁ କେବଳ ଆତ୍ମଜୀବନୀ ଲେଖାଯାଇପାରେ କାରଣ ଯୌବନର ସମସ୍ତ ସ୍ୱପ୍ନ ଓ ଭବିଷ୍ୟତକୁ ପାଇବାର ସମସ୍ତ ଆକାଂକ୍ଷା ଶେଷ ହୋଇଯାଇଥାଏ । ଏପରି କେତେଗୁଡ଼ିଏ ସ୍ମୃତି ଥାଏ ଯାହା ସବୁ ଦିନେ ମନେ ରଖିବାକୁ ଇଚ୍ଛା ହୁଏ, ଅନ୍ୟକୁ ଜଣାଇବାକୁ ମନ ଚାହେଁ । ଅନ୍ୟ କେତେକ ସ୍ମୃତି ଥାଏ, ଯାହାକୁ ଭୁଲି ଯିବା ହିଁ ଯଥାର୍ଥ ବୋଲି କୁହାଯାଇପାରେ । ଯଦି ସବୁ ସ୍ମୃତି ଗୁଡ଼ିକ ଦୁଃଖାତ୍ମକ ହୋଇଥାଏ, ତେବେ ବ୍ୟକ୍ତି ସତ୍ତାଟି ନିଜର ଆତ୍ମଜୀବନୀ ଲେଖିବାକୁ କେବେ ହେଲେ ଚାହିଁବ ନାହିଁ । ଏଠାରେ ସୋମରସେଟ୍ ମମ୍‌ଙ୍କର 'ଦି ପାର୍ସିଆଲ ଭିଉ', ପୁସ୍ତକର ଉକ୍ତି ମନେ ପଡ଼େ । "I must write as though I were a person of importance, and indeed I am to myself. To myself, I am the most important person in the world; though I do not forget that, not even taking into consider-

ation so grand a conception as the Absolute, but from the stand point of common sense, I am of no consequence whatever. It would have made small difference to the universe if I had never existed. Though I may seem to write as though significance must necessarily be attached to certain of my works I mean only that they are of moment to me for the purpose of any discussion during which I may have occasion to mention them."

ଆତ୍ମଜୀବନୀ ଲେଖିଲା ବେଳେ ଲେଖକ କେବଳ ସତ୍ୟ ପ୍ରକାଶ କରିବା ହିଁ ଉଚିତ । ସତ୍ୟ କହିବା ଅର୍ଥ ନୁହେଁ ସମସ୍ତ ସତ୍ୟକୁ ଉନ୍ମୋଚିତ କରିଦେବା ବା ପ୍ରକାଶ କରବା । କାରଣ ଏହା କରିବା ଦ୍ୱାରା ସେ ଅନ୍ୟର ଅନୁପସ୍ଥିତିରେ ଓ ଏକପାଖିଆ ନିଜର ସିଦ୍ଧାନ୍ତକୁ ଜଣାଏ । କୌଣସି ବ୍ୟକ୍ତି କଦାଚିତ ଅନ୍ୟ ସଂପର୍କରେ ନିଜର ମତ ଦେବା ଉଚିତ ନୁହେଁ । କୌଣସି ବ୍ୟକ୍ତି ଠିକ୍ କି ଭୁଲ୍, ଭଲ କି ମନ୍ଦ ତାହା ଇତିହାସ ଉପରେ ଓ ଅନାଗତ ଭବିଷ୍ୟତ ଉପରେ ନିର୍ଭର କରେ । ସମସାମୟିକ ଘଟଣା ବା ବ୍ୟକ୍ତିବିଶେଷଙ୍କ ସଂପର୍କରେ ଲେଖିବା ବେଳେ ଯେତେ ସମ୍ଭବ ସାବଧାନତା ଅବଲମ୍ବନ କରାଯିବା କଥା, କରାଯିବା ଉଚିତ ।

ମହତାବ ତାଙ୍କର, 'ସାଧନାର ପଥେ' ଆତ୍ମଜୀବନୀରେ ଏହା ପ୍ରମାଣ କରି ଯାଇଛନ୍ତି । ପରବର୍ତ୍ତୀ ସମୟରେ ଜୀବନୀ ବା ଆତ୍ମଜୀବନୀର ଲେଖକମାନେ ମହତାବଙ୍କ ସଂପର୍କରେ ଯେଉଁ କିଛି ମନ୍ତବ୍ୟ ଦେଇଛନ୍ତି । ସେମାନେ କିନ୍ତୁ 'ସାଧନାର ପଥେ' ପ୍ରକାଶ ପରେ ଏହାର ଆଦୌ ବିରୋଧ ବା ସମାଲୋଚନା କରି ନାହାଁନ୍ତି କିମ୍ବା ତଥ୍ୟଗତ ପ୍ରମାଦ ଥିବାର ଦର୍ଶାଇ ନାହାଁନ୍ତି । ଆତ୍ମଜୀବନୀ ପରି ଏକ ସ୍ପର୍ଶକାତର ସାହିତ୍ୟ ସୃଷ୍ଟି କରିବା ବେଳେ ମହତାବ ସ୍ଥାନ, କାଳ, ପାତ୍ର ଓ ଭବିଷ୍ୟତ ପ୍ରତି ସଚେଷ୍ଟ ସଜାଗ ରହିଥିବା ପରି ମନେ ହୁଏ । ଅନେକ କ୍ଷେତ୍ରରେ ନିଜର ବଡ଼ପଣିଆ ବା ପ୍ରାଧାନ୍ୟକୁ ଉପସ୍ଥାପିତ କରିବା ବେଳେ, ତାଙ୍କର ଅନ୍ୟମାନଙ୍କ ପ୍ରତି ସମ୍ମାନବୋଧ କମ୍ ହୋଇଯାଇନି ।

ମହତାବଙ୍କ ମନ୍ତ୍ରୀମଣ୍ଡଳରେ ନବକୃଷ୍ଣ ଚୌଧୁରୀଙ୍କ ପରି ଆଦର୍ଶବାଦୀ ନେତା କାର୍ଯ୍ୟ କରିଛନ୍ତି । ମହତାବ ତାଙ୍କ ନେତୃତ୍ୱରେ କାର୍ଯ୍ୟ କରୁଥିବା ତତ୍କାଳୀନ ମନ୍ତ୍ରୀମଣ୍ଡଳ ବିଷୟରେ 'ସାଧନାର ପଥେ'ରେ ଲେଖିଛନ୍ତି, "ସେ ସମୟର କଥା ମନେ କଲେ ମୁଣ୍ଡ ତଳକୁ ନଇଁ ଯାଏ । ଏତେ ଅନୁଗତ ସଙ୍ଗୀ ଜୀବନରେ କେହି ପାଇଥିବେ କି ନାହିଁ ସନ୍ଦେହ ।. . . ମୋ'ର ବନ୍ଧୁମାନଙ୍କର ମୋ'ପ୍ରତି ଏତେ ବିଶ୍ୱାସ ଥାଏ ଯେ, ମୁଁ ସବୁକଥା ସେମାନଙ୍କୁ ପଚାରିବା ମଧ୍ୟ ଦରକାର ପଡୁନଥାଏ । ଆମ୍ଭମାନଙ୍କ ମଧ୍ୟରେ ପରସ୍ପର ବିଶ୍ୱାସ ଓ ସହୃଦୟତା ହିଁ ଏ ସଫଳତାର କାରଣ । ସେତେବେଳେ ମୋ'ଠି ମୋ' ସହକର୍ମୀମାନେ ଯେପରି ଅତୁଟ ବିଶ୍ୱାସ ପୋଷଣ କରିଥିଲେ, ଆଜି ଭାବିଲେ ମୁଁ ସେ ସମୟ ପାଇଁ ନିଜକୁ ଧନ୍ୟ ମନେ କରୁଛି ।. . . ଆଜି କେହି ବିଶ୍ୱାସ କରିବେନି ସେତେବେଳେ ବ୍ୟବସ୍ଥା ସଭାରେ ପ୍ରଶ୍ନୋତ୍ତର ସମୟରେ ସବୁ ମନ୍ତ୍ରୀମାନଙ୍କର ପ୍ରଶ୍ନର ଉତ୍ତର ମୁଖ୍ୟମନ୍ତ୍ରୀ ଭାବରେ ମୁଁ ଦେଉଥିଲି ଓ ଏଥିରେ ମନ୍ତ୍ରୀମାନେ ଓ ବ୍ୟବସ୍ଥା ସଭାର ସଭ୍ୟମାନେ କେହି କେବେ କିଛି ଆପତ୍ତି କରିନଥିଲେ । ସମୁଦାୟ ଶାସନକୁ ନିଜ ହାତମୁଠାରେ ରଖିବା ପାଇଁ ସମସ୍ତଙ୍କ ସମ୍ମତି

ସହ ଏହି ପଦକ୍ଷେପ ମୁଁ ନେଇଥିଲି ।"

ମହତାବଙ୍କର ଏପରି ବିଚାର ଓ ବକ୍ତବ୍ୟ ବିରୋଧିତାର ଊର୍ଦ୍ଧ୍ୱକୁ ଯାଇଛି କାରଣ ସେ ଅନ୍ୟମାନଙ୍କୁ ପ୍ରଶଂସା କରି ନିଜର ନେତୃତ୍ୱକୁ ଗ୍ରହଣୀୟ କରାଇ ପାରିଛନ୍ତି ।

ସଫଳ ଆତ୍ମଜୀବନୀ ଭିତରେ ପାଠକ ଯଥାର୍ଥରେ ନିଜକୁ ହଜାଇ ଦିଏ ଏବଂ ନିଜେ ଜଣେ ଅଂଶୀଦାର ବୋଲି ଭାବିନିଏ । ମହତାବଙ୍କ ଆତ୍ମଜୀବନୀ 'ସାଧନାର ପଥେ' ଓଡ଼ିଶାର ଅନ୍ୟାନ୍ୟ ବହୁ ମନଷୀଙ୍କର ଜୀବନୀ ଲେଖିବାରେ ସାହାଯ୍ୟ କରିଛି । ଆତ୍ମଜୀବନୀର ପରିସମାପ୍ତିରେ ସେ ଲେଖିଛନ୍ତି, "ଜୀବନର ମଧ୍ୟଭାଗରେ ଆଜି ଛିଡ଼ା ହୋଇ ପଛକଥା ମନେ ପକାଇ ଆଗକୁ ଅଗ୍ରସର ହେବାକୁ ପଡୁଛି । ଅତି କ୍ଷିପ୍ର ଗତିରେ ଚାଲିଛି ପ୍ରବାହ । ପ୍ରତି ଜଳକଣାର ପୁଙ୍ଖାନୁପୁଙ୍ଖ ବିବରଣୀ ରଖୁଛି ବା କିଏ ?  ବର୍ଣ୍ଣନା କଲେ ପ୍ରତ୍ୟେକ ବୁନ୍ଦ୍ ବୁନ୍ଦ୍‌ର ମଧ୍ୟ ଜୀବନୀ ଲେଖାଯାଇ ପାରିବ ।" କିନ୍ତୁ ଯେତିକି ତଥ୍ୟ ସେ 'ସାଧନାର ପଥେ'ରେ ଉପସ୍ଥାପିତ କରିଛନ୍ତି ତାହା 'ଆଧୁନିକ ଓଡ଼ିଶାର ନିର୍ମାଣ ପଞ୍ଜିକା' ଭାବରେ ସାହାଯ୍ୟକାରୀ ହେବ ।

ତାଙ୍କର ଆତ୍ମଜୀବନୀ 'ସାଧନାର ପଥେ' ପରି 'ଓଡ଼ିଶା ଇତିହାସ' ମହତାବଙ୍କର ଏକ ଐତିହାସିକ ସୃଷ୍ଟି । ଅହମ୍ମଦନଗର ଫୋର୍ଟରେ ବନ୍ଦୀ ଥିବା ବେଳେ ସେ ଏହି କାର୍ଯ୍ୟକୁ ହାତକୁ ନେଇଥିଲେ । ଏଥିରେ ଅନେକ ଉଚ୍ଚକୋଟୀର ପ୍ରବନ୍ଧ ରହିଛି । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମହତାବଙ୍କର ଓଡ଼ିଶା ଇତିହାସ ସଂପର୍କରେ ମତ ଦେଇ କହିଛନ୍ତି, "ଓଡ଼ିଶା ଇତିହାସର ସ୍ଥୂଳ ବିବରଣୀ ଜାଣିବାକୁ ଇଚ୍ଛା କଲେ ସାଧାରଣ ପାଠକ, ଛାତ୍ର ତଥା ଶିକ୍ଷକଙ୍କୁ ସ୍ୱର୍ଗତ ଅଧ୍ୟାପକ ରାଖାଲ ଦାସ ବାନାର୍ଜି ଓ ଡକ୍ଟର ହରେକୃଷ୍ଣ ମହତାବଙ୍କ ଇତିହାସ ଉପରେ ହିଁ ନିର୍ଭର କରିବାକୁ ପଡ଼ିଥାଏ । ଅନେକ କହନ୍ତି ଯେ ଉଭୟ ଗ୍ରନ୍ଥରେ ତ୍ରୁଟି-ବିଚ୍ୟୁତି ରହିଛି । କୌଣସି ଗ୍ରନ୍ଥ ଅଭ୍ରାନ୍ତ ନୁହେଁ; ଏ ଗ୍ରନ୍ଥଗୁଡ଼ିକୁ ମଧ୍ୟ ଅଭ୍ରାନ୍ତ ବୋଲି କେହି କହୁ ନାହିଁ; କିନ୍ତୁ ତିରିଶ ବର୍ଷର ସମବେତ ଚେଷ୍ଟାରେ ଓଡ଼ିଶାର ଯେଉଁ ପୂର୍ଣ୍ଣାଙ୍ଗ ଇତିହାସ ରୂପରେଖ ଧରିପାରିଲା ନାହିଁ, ସେହି ପୂର୍ଣ୍ଣାଙ୍ଗ ଇତିହାସକୁ ସାହସ, ଧୈର୍ଯ୍ୟ, ନିଷ୍ଠା ଓ ଶ୍ରମ ସହିତ ସ୍ୱସ୍ୱ ଗ୍ରନ୍ଥରେ ଅତ୍ୟନ୍ତ କଙ୍କାଳକାରରେ ଦେଇଥିବାରୁ ଉଭୟ ପଣ୍ଡିତ ନିଶ୍ଚିତ ଭାବରେ ଧନ୍ୟବାଦାର୍ହ ।" ଡକ୍ଟର ମହତାବ ଓଡ଼ିଶା ଇତିହାସକୁ ସତ୍ୟନିଷ୍ଠ କରିବା ପାଇଁ ସଦାସର୍ବଦା ଚେଷ୍ଟା କରିଆସିଛନ୍ତି । ଏ ସଂପର୍କରେ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଲେଖିଛନ୍ତି, "ସେ ଯେଉଁ ଓଡ଼ିଶା ଇତିହାସ ଲେଖିଥିଲେ, ତାହା ମୋ ପକ୍ଷରେ ସ୍ୱାଗତ ଯୋଗ୍ୟ ଥିଲା; ମାତ୍ର ସେଥିରେ ଥିବା 'କେଶରୀ ବଂଶ'କୁ ଗ୍ରହଣ କରିବା ପାଇଁ ମୁଁ କୌଣସି ମତେ ପ୍ରସ୍ତୁତ ନଥିଲି । ଏହି ତଥାକଥିତ କେଶରୀ ବଂଶରେ ଯେ ବହୁ ଜାଲନାମ ରହିଛି, ତାହା ମୁଁ ଏକାଧିକ ପ୍ରବନ୍ଧରେ ଦର୍ଶାଇଥିଲି ।" ଡକ୍ଟର ମହତାବ ମାଦଳା ପାଞ୍ଜିର ଅସତ୍ୟକୁ ପରିହାର କରି ଓଡ଼ିଶା ଇତିହାସର ନୂତନ ସଂସ୍କରଣରେ 'କେଶରୀ ବଂଶ'କୁ ବାଦ ଦେଇଥିଲେ ।

ଓଡ଼ିଶା ଇତିହାସ ପାଇଁ ବହୁ ବିଶିଷ୍ଟ ସାହିତ୍ୟିକ, ସମାଲୋଚକ ଓ ଐତିହାସିକ ମହତାବଙ୍କୁ ପ୍ରଶଂସା କରିଛନ୍ତି । ଓଡ଼ିଶା ଗଠନ କରିବାରେ ଜଣେ ରାଜନୈତିକ ନେତା ଭାବରେ ସେ ଯେପରି ଦୂରଦୃଷ୍ଟି ଓ ପରାକାଷ୍ଠା ପ୍ରଦର୍ଶନ କରିଥିଲେ, ଓଡ଼ିଶାର ପରିଚ୍ଛୟକୁ ଇତିହାସରେ ଲିପିବଦ୍ଧ କରି ରଖିବାର ମହାନ ଯୋଗଦାନ ହୋଇଛି ଓଡ଼ିଶା ଇତିହାସ । ଏପରିକି ଓଡ଼ିଶା ବାସୀ ଯେଉଁ ଜଗନ୍ନାଥଙ୍କୁ ନେଇ ଗର୍ବ କରନ୍ତି ଯାହାଙ୍କ ଦ୍ୱାରା ହିଁ ସମଗ୍ର

ଭାରତରେ ପରିଚିତ ହୁଅନ୍ତି ଏବଂ ଜଗନ୍ନାଥ ଧର୍ମ ହିଁ ଓଡ଼ିଶାର ଧର୍ମ ବୋଲି କୁହନ୍ତି. ମହତାବ ଓଡ଼ିଶା ଇତିହାସରେ ଜଗନ୍ନାଥ ଧର୍ମ ସଂପର୍କରେ ଆଲୋଚ଼ନା କରିଛନ୍ତି । ସେ ନିଜେ ଏ ସଂପର୍କରେ ଲେଖିଛନ୍ତି. "ଓଡ଼ିଶା ଇତିହାସରେ ଓଡ଼ିଶାର ଜଗନ୍ନାଥ ଧର୍ମ ସମ୍ବନ୍ଧରେ ବିସ୍ତୃତ ଆଲୋଚ଼ନା କରିବା ଆବଶ୍ୟକ ବୋଲି ମନେ କରି ପ୍ରଥମ ଥର ତାକୁ ଇତିହାସରେ ସ୍ଥାନ ଦେଇଥିଲି । ମୋର ମନେ ହୁଏ ଏହି ହେଉଛି ଜଗନ୍ନାଥ ଧର୍ମ ସମ୍ବନ୍ଧରେ ଗବେଷଣାର ପ୍ରଥମ ସୂତ୍ରପାତ ।"

ଐତିହାସିକ କାଞ୍ଚନମୟ ମଜୁମଦାର ମହତାବଙ୍କ ଇତିହାସ ସଂପର୍କରେ କହିଛନ୍ତି. "ଓଡ଼ିଆ ଭାଷାରେ ଆଧୁନିକ ବୈଜ୍ଞାନିକ ପଦ୍ଧତିରେ ଯେଉଁ କେତୋଟି ଓଡ଼ିଶାର ପୂର୍ଣ୍ଣାଙ୍ଗ ଇତିହାସ ରଚିତ ହୋଇଛି. ତନ୍ମଧ୍ୟରୁ ମହତାବଙ୍କ ଓଡ଼ିଶା ଇତିହାସ ଶ୍ରେଷ୍ଠ ଗ୍ରନ୍ଥ । ଓଡ଼ିଆ ଜାତିର କ୍ରମବିକାଶ ଜାଣିବାକୁ ହେଲେ ଏହି ଗ୍ରନ୍ଥ ଅପରିହାର୍ଯ୍ୟ ।"

ଏ ସଂପର୍କରେ ମାୟାଧର ମାନସିଂହ କହିଛନ୍ତି. "ରାଜନୈତିକ ନେତା ଡକ୍ଟର ହରେକୃଷ୍ଣ ମହତାବ ସମସାମୟିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଜଣେ ଲେଖକ ଭାବରେ ମଧ୍ୟ ପରିଚିତ । ଅହମ୍ମଦନଗର ଜେଲରେ ବନ୍ଦୀ ଅବସ୍ଥାରେ ସମୟ କଟେଇବା ପାଇଁ ହିଁ ସେ ଓଡ଼ିଶାର ଇତିହାସ ଆଲୋଚ଼ନା କରି ବସିଲେ । ଫଳରେ ତାଙ୍କ ହାତରୁ ଆମେ ଓଡ଼ିଶାର ଏକ ନୂତନ ଇତିହାସ ପାଇଲୁ । ଏ ଇତିହାସ ଦଲିଲ-ପ୍ରମାଣରେ ଭର୍ତ୍ତି ସତ; କିନ୍ତୁ ଏହାର ସାହିତ୍ୟିକ ମୂଲ୍ୟ ବିଶେଷ ଅଛି ବୋଲି କହିହେଉନି ।" ଏଠାରେ ମନେ ହୁଏ. ମହତାବ ଯଦି ଓଡ଼ିଶା ଇତିହାସର ସ୍ରଷ୍ଟା ହୋଇ ନଥାନ୍ତେ. ତେବେ ଜଣେ ରାଜନୀତିଜ୍ଞ ଭାବେ କେବେ ହେଲେ ଭୁବନେଶ୍ୱରକୁ ଓଡ଼ିଶାର ରାଜଧାନୀ ଭାବେ ବାଛି ନଥାନ୍ତେ ଓ ସମସ୍ତ ଅସୁବିଧା ସତ୍ତ୍ୱେ ଏହାକୁ ଗଠନ କରିବାର ସଫଳ ରୂପ ଦେଇ ନଥାନ୍ତେ । ଏପ୍ରିଲ 13 ତାରିଖ ପଣା ସଂକ୍ରାନ୍ତି ଦିନ ଭୁବନେଶ୍ୱର ରାଜଧାନୀର ପଣ୍ଡିତ ନେହେରୁ ଶୁଭ ଦେବା ଅବସରରେ ମହତାବ କହିଥିଲେ. "ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀଠାରୁ ଏହା ଗୋଟିଏ ଅତି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ହୋଇ ରହି ଆସିଛି । ଭୁବନେଶ୍ୱର ବୁଦ୍ଧ. ଜୈନ. ଶଙ୍କର ପ୍ରଭୃତି ବହୁ ଧର୍ମ ଓ ସଂସ୍କୃତିର ପୀଠ ରୂପେ ପ୍ରାଧାନ୍ୟ ଲାଭ କରିଛି । ଏହି ଐତିହାସିକ ରାଜଧାନୀ କେତେ ଶାସନର ଉତ୍‌ଥାନ ଓ ପତନ ଦେଖି ଆସିଛି । ଭାରତରେ କିମ୍ବା ପୃଥିବୀରେ ଭୁବନେଶ୍ୱର ପରି କୌଣସି ସ୍ଥାନ 25 ଶହ ବର୍ଷ ଧରି ପ୍ରାଧାନ୍ୟ ଓ ଗୁରୁତ୍ୱ ରକ୍ଷା କରିପାରି ନାହିଁ । ଆଜି ଏହି ପୀଠରେ ଆମେ ଓଡ଼ିଶାର ନୂଆ ରାଜଧାନୀ ଗଢ଼ିବାକୁ ଯାଉଛେ । ଆମର ରାଜଧାନୀ ପାଇଁ ଏଠାରେ ବହୁ ଉପାଦେୟ ଓ ଶିକ୍ଷଣୀୟ ବିଷୟ ରହିଛି । ଏଠି ଅଶୋକ. ଖାରବେଳଙ୍କଠାରୁ ଆରମ୍ଭ କରି କପିଳେନ୍ଦ୍ର ଦେବଙ୍କ ପର୍ଯ୍ୟନ୍ତ ଶିଳାଲିପି ସବୁ ରହିଛି । ଏହି ଶିଳାଲିପି ଆମର ଅତୀତର ଗୌରବ ।"

ମହତାବ ନିଜେ ଐତିହାସିକ ହୋଇ ନଥିଲେ ଭୁବନେଶ୍ୱରକୁ ରାଜଧାନୀ କରିବାର ଐତିହାସିକ ପଦକ୍ଷେପ ସେ କେବେ ହେଲେ ନେଇ ନଥାନ୍ତେ । ଭୁବନେଶ୍ୱରକୁ ରାଜଧାନୀ କରିବାର ସିଦ୍ଧାନ୍ତ ତ୍ରୁଟିପୂର୍ଣ୍ଣ ବୋଲି ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତି ମତ ଦେଇଥିଲେ ମଧ୍ୟ ଏହା ବାସ୍ତବ ଦୃଷ୍ଟିକୋଣରୁ ସଠିକ୍ ନୁହେଁ । ବାସ୍ତବବାଦୀ ରାଷ୍ଟ୍ରନୀତିଜ୍ଞ ଭାବେ ମହତାବ ଏହା ଦ୍ୱାରା ନିଜର ପୁରୋଦୃଷ୍ଟିର ପରଚ଼ୟ ଦେଇଛନ୍ତି ।

ଓଡ଼ିଶା ଇତିହାସର ଲେଖକ ଭାବରେ ତାଙ୍କର ମହନୀୟ ଅବଦାନକୁ ସ୍ୱୀକାର କରି 1950 ରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟ, 1956 ରେ ଉତ୍କଳ ବିଶ୍ୱବିଦ୍ୟାଳୟ, ଏବଂ 1958 ରେ ସାଗର ବିଶ୍ୱବିଦ୍ୟାଳୟ ପକ୍ଷରୁ ତାଙ୍କୁ ସମ୍ମାନସୂଚକ ଡିଲିଟ୍ ଉପାଧିରେ ସମ୍ମାନିତ କରାଯାଇ ଥିଲା ।

ଓଡ଼ିଆ ସାହିତ୍ୟରେ ସୃଷ୍ଟି ହୋଇଥିବା କେତେକ ସ୍ୱାଧୀନତା ପୂର୍ବ ଉପନ୍ୟାସର କଥାବସ୍ତୁର ସତ୍ୟତାକୁ ମହତାବଙ୍କର ଇତିହାସ ଦ୍ୱାରା ପ୍ରମାଣିତ କରାଯାଇ ପାରେ । ଓଡ଼ିଆ ସାହିତ୍ୟର ପ୍ରଥମ ଉପନ୍ୟାସ ଉମେଶଚନ୍ଦ୍ର ସରକାରଙ୍କ ଦ୍ୱାରା ଲିଖିତ ପଦ୍ମମାଳୀ । ପଦ୍ମମାଳୀର କଥାବସ୍ତୁ ଇତିହାସସମ୍ମତ । ଲେଖକ ସୁଦୂର ଅତୀତର କୌଣସି ଘଟଣାକୁ ନ ନେଇ ତାଙ୍କର ନିକଟ ଅତୀତ ବା ଉନବିଂଶ ଶତାବ୍ଦୀର ପ୍ରଥମ ଭାଗର ଏକ ଘଟଣାକୁ ଅବଲମ୍ବନ କରି ଉପନ୍ୟାସର କଥାବସ୍ତୁ ଗଢ଼ିଛନ୍ତି ।

ଠିକ୍ ସେହିପରି ଓଡ଼ିଆ ଉପନ୍ୟାସର ଜନକ ଫକୀରମୋହନଙ୍କ 'ଲଛମା' ଉପନ୍ୟାସ । ମୋଗଲ ମରହଟ୍ଟା ସଂଘର୍ଷ ନବାବ ଆଲିବର୍ଦ୍ଦିର୍ଖାଁଙ୍କ ସହିତ ମରହଟ୍ଟା ସେନାପତି ଭାସ୍କର ପଣ୍ଡିତଙ୍କର ନିରବଚ୍ଛିନ୍ନ ସଂଗ୍ରାମର ବିବରଣୀ, ଲଛମାରେ ମୁଖ୍ୟ ଭାବରେ ଉପସ୍ଥାପିତ । ବାଦଲ ସିଂ ନିଜର ବୀରତ୍ୱ, ବୁଦ୍ଧି ଓ ସାହସ ବଳରେ ନବାବଙ୍କର ପ୍ରୀତି ଭାଜନ ହୋଇଛି । ନିଜ ଉଦ୍ଦେଶ୍ୟ ସିଦ୍ଧି ନିମନ୍ତେ ସେ ଭାସ୍କର ପଣ୍ଡିତଙ୍କୁ ଗୁପ୍ତ ଭାବରେ ହତ୍ୟା କରିବା ପାଇଁ ନବାବଙ୍କ ସହିତ ଗୁପ୍ତ ପରାମର୍ଶ କରିଛି । ନବାବ ତାର ପରାମର୍ଶକୁ ସ୍ୱୀକୃତି ପ୍ରଦାନ କରିଛନ୍ତି । ଫଳରେ ସେ ତା'ର ଉଦ୍ଦେଶ୍ୟ ମୁତାବକ ଭାସ୍କର ପଣ୍ଡିତଙ୍କୁ ନିଜ ଛାଉଣୀକୁ ଆଣି ହତ୍ୟା କରିଛି । ଘଟଣା ଇତିହାସ ସମ୍ମତ । ମହତାବ ନିରବଧି ଭାବେ ଗବେଷକ ରହିଛନ୍ତି । ନୂଆ ନୂଆ ତଥ୍ୟ ସଂଗ୍ରହ କରି ତାକୁ ଲୋକଲୋଚନକୁ ଆଣିବା ପାଇଁ ସେ ଗବେଷକମାନଙ୍କୁ ବାରମ୍ବାର ଅନୁରୋଧ ଓ ଆହ୍ୱାନ କରିଛନ୍ତି । ଗବେଷଣାର ଅର୍ଥ ହେଉଛି ପୁନଃ ପୁନଃ ଅନୁସନ୍ଧାନ । ଏବଂ ଏହି ଅନୁସନ୍ଧାନ ଆବଶ୍ୟକ କରେ ଅଧ୍ୟବସାୟ ଓ ଯୁକ୍ତି ଯୁକ୍ତ ନିଷ୍କକ୍ଷ ବିଚାର । ସେ ରାମାୟଣର ଗବେଷଣାକୁ ନାପସନ୍ଦ କରିଛନ୍ତି ଓ କହିଛନ୍ତି, "ବାସ୍ତବିକ କୌଣସି ପୁରାଣକୁ ଇତିହାସ ବୋଲି ଧରିନେଇ ତା'ର ବୈଜ୍ଞାନିକ ଗବେଷଣା କରିବା ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ଏକ ଚିତ୍ତବିନୋଦନ ବା କର୍ମଯୋଗାଣର କାର୍ଯ୍ୟକ୍ରମ ହୋଇପାରେ, ମାତ୍ର ସେ ଗବେଷଣାର କୌଣସି ସାମାଜିକ ଆବଶ୍ୟକତା କୌଣସି ଦିଗରୁ ନାହିଁ । ଗବେଷଣା ସଂପର୍କରେ ନିଜର ସୁଚିନ୍ତିତ ମତ ଦେଇ ସେ କହିଛନ୍ତି, "ଯେ କୌଣସି ଐତିହାସିକ ବା ପ୍ରତ୍ନତାତ୍ତ୍ୱିକ ଗବେଷଣା ସଂପୂର୍ଣ୍ଣ ବିଦ୍ୱାନ୍‌ମଣ୍ଡଳୀରେ ଗୃହୀତ ହେବା ପୂର୍ବରୁ ସେ ବିଷୟରେ ସାଧାରଣରେ ପ୍ରଚାର କରିବା ଯୁକ୍ତିସଙ୍ଗତ ନୁହେଁ । ତା' ଦ୍ୱାରା ଯଥାର୍ଥ ଗବେଷଣା ବ୍ୟାହତ ହୁଏ ଏବଂ ଅଯଥା ବିଭ୍ରାନ୍ତି ସୃଷ୍ଟି ହୁଏ । ପୂର୍ବ ନିର୍ଦ୍ଧାରିତ ମତକୁ ଆଶ୍ରୟ କରି କୌଣସି ଗବେଷଣା ପରିଚାଳନା କରିବା ବିଚାରବିରୁଦ୍ଧ । ମୁକ୍ତମନରେ ଗବେଷଣାରୁ ଯେଉଁ ଉପାଦାନ ମିଳିବ, ସେଇଥିରୁ ମତ ପ୍ରଦାନ କରିବା ବାଞ୍ଛନୀୟ ।"

ମହତାବ ଝଙ୍କାରର ସଂପାଦକୀୟ ପୃଷ୍ଠାରେ ବହୁ ଐତିହାସିକ ବିଷୟ ଉପରେ ନିଜର ସ୍ୱମତ ପ୍ରଦାନ କରିବା ତାଙ୍କର ଐତିହାସିକ ବିଜ୍ଞତାର ପରିଚୟ ଦିଏ । ଲବ୍ଧପ୍ରତିଷ୍ଠ ଗବେଷକ ଭାବେ ଏକାଠିହୋଇ ନିଜ ନିଜର ଗବେଷଣା ସଂପର୍କରେ ଆଲୋଚନା କରିବାକୁ

ସେ ମଧ୍ୟ ସେମାନଙ୍କୁ ମୂଲ୍ୟବାନ ପରାମର୍ଶ ଦେଇଛନ୍ତି । ଐତିହାସିକ ଗବେଷଣାର ଉପାଦାନକୁ ବିଭିନ୍ନ ଦିଗରୁ ପରୀକ୍ଷା କରାଯିବା ଉଚିତ । ସେପରି ପରୀକ୍ଷା କରାଯାଇ ନପାରିଲେ, ଏହା ଗବେଷଣା ଦ୍ୱାରା ସିଦ୍ଧ ବୋଲି ପରିଗଣିତ ହେବ ନାହିଁ ବୋଲି ସ୍ପଷ୍ଟ ମତ ଦେଇଛନ୍ତି । ଯେଉଁଠାରେ ଐତିହାସିକ ସତ୍ୟତା ନଥାଇ କୌଣସି ବିଷୟର ଅବତାରଣା କରାଯାଇଛି ଏବଂ ମହତାବଙ୍କ ଦୃଷ୍ଟି ଗୋଚରକୁ ଆସିଛି, ତାହାକୁ ସେ ନମ୍ରତାର ସହିତ ସମାଲୋଚନା କରିଛନ୍ତି । ପ୍ରତିଷ୍ଠିତ ଶିଳ୍ପୀ ଉପେନ୍ଦ୍ର କିଶୋର ଦାସଙ୍କର କେତେକ ଚିତ୍ର ପ୍ରଦର୍ଶିତ ହେବା ସମୟରେ ଚିତ୍ରମାନଙ୍କୁ ବୁଝାଇବା ପାଇଁ କେତେକ ଟିପ୍‌ପଣୀ ସହ ପୁସ୍ତିକାଟିଏ ମୁଦ୍ରିତ ହୋଇଥିଲା । ସେଥିରେ ତଥ୍ୟ ଭ୍ରମାତ୍ମକ ଥିବାର ଦେଖି ମହତାବ ତାହାର ସମାଲୋଚନା କରି ମନ୍ତବ୍ୟ ଦେଇଥିଲେ, "ଉତ୍କର୍ଷର ପ୍ରଦର୍ଶନୀରେ ପ୍ରମାଦ ବିକୀର୍ଣ୍ଣ ହେବା ବାଞ୍ଛନୀୟ ନୁହେଁ ।"

ମହତାବ ସାହିତ୍ୟରେ ଇତିହାସର ସତ୍ୟତା ପ୍ରତି ଅତିବେଶୀ ଗୁରୁତ୍ୱ ଆରୋପ କରିଛନ୍ତି । 'କଳସା'ର କାଳ ନିରୂପଣ ସଂପର୍କରେ ପ୍ରବୀଣ ସାହିତ୍ୟିକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ଅଭିମତକୁ ଅଧ୍ୟାପକ ଶ୍ରୀ ଗୌରୀ କୁମାର ବ୍ରହ୍ମା ସମାଲୋଚନା କଲେ । ଏହି ବିଷୟରେ ଅଧ୍ୟାପକ ବଂଶୀଧର ମହାନ୍ତି ମଧ୍ୟ ତଥ୍ୟ ପ୍ରଦାନ କଲେ । ଏ ସଂପର୍କରେ ମହତାବ ଉଲ୍ଲେଖ କରି ଲେଖିଥିଲେ, "ବର୍ତ୍ତମାନ ଅବସ୍ଥାରେ ଏତିକି କୁହାଯାଇ ପାରେ ଯେ 'କଳସା'ର କାଳ ନିରୂପଣ ପ୍ରସଙ୍ଗରେ ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଆଲୋଚନା ପୂର୍ଣ୍ଣାଙ୍ଗ ନୁହେଁ ବୋଲି ଅଧ୍ୟାପକ ବ୍ରହ୍ମା ଆକ୍ଷେପ କରିବା ପରେ ସେ ନିଜେ ଏକ ଅମୀମାଂସିତ ବିଷୟ ଉପରେ ନିର୍ଭର କରି ନିଜର ଅନୁମାନକୁ 'ଏକାନ୍ତ ସଙ୍ଗତ' ବୋଲି ଦର୍ଶାଇବା ଯୁକ୍ତିଯୁକ୍ତ ହୋଇନାହିଁ । ଓଡ଼ିଆ ସାହିତ୍ୟର ଇତିହାସ ପ୍ରସଙ୍ଗରେ ଆଲୋଚନା କରିବାବେଳେ ଅନିସନ୍ଧିତ୍ସୁ ସମାଲୋଚକମାନେ କେବଳ ନିର୍ଭୁଲ ଐତିହାସିକ ତଥ୍ୟ ବ୍ୟତୀତ ଅନୁମାନସିଦ୍ଧ କିମ୍ବା ବିବାଦମୂଳକ ବିଷୟବସ୍ତୁ ଉପରେ ନିର୍ଭର କରିବା ନିରାପଦ ନୁହେଁ ।"

ଐତିହାସିକ ମହତାବ କେବଳ ଇତିହାସ ଗବେଷଣାରେ ନିଜକୁ ସୀମାବଦ୍ଧ ନକରି ସାହିତ୍ୟିକ ମହତାବରେ ରୂପାନ୍ତରିତ ହୋଇଛନ୍ତି । କାରଣ ତାଙ୍କ ବିଚାରରେ ସାହିତ୍ୟ ଓ ଇତିହାସ ମଧ୍ୟରେ ସଂପର୍କ ଅବିଚ୍ଛେଦ୍ୟ । ଏବଂ ଇତିହାସ ଯେତେ ସତ୍ୟ ଆବିଷ୍କାର କଲେ ମଧ୍ୟ, ସାହିତ୍ୟର ସାହାଯ୍ୟ ବ୍ୟତୀତ ତାହା ଜନସମାଜରେ ପ୍ରବେଶ କରିପାରିବ ନାହିଁ । ଇତିହାସ ଅସ୍ଥି ପିଞ୍ଜରା ହେବା ବେଳେ ସାହିତ୍ୟ ହେଉଛି ରକ୍ତ-ମାଂସ । ସାହିତ୍ୟ ଓ ଇତିହାସ ସଂପର୍କରେ ଉଲ୍ଲେଖ କରିବାକୁ ଯାଇ ସେ ଲେଖିଛନ୍ତି, "ଇତିହାସ ଗବେଷଣା କରି ଉପାଦାନ ନ ଯୋଗାଇଲେ ମଧ୍ୟ ଲୋକମୁଖରେ ଯାହାସବୁ ପ୍ରଚାରିତ ହୁଏ, ସେଥିରେ ଐତିହାସିକ ଉପାଦାନ ମଧ୍ୟ ଥାଏ ଏବଂ ଉପାଦାନ ସାହିତ୍ୟ ଦ୍ୱାରା ପୁଷ୍ଟ ହୋଇ ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରେ । ଏହାର ପ୍ରକୃଷ୍ଟ ଉଦାହରଣ ହେଉଛି, ଗୋପବନ୍ଧୁଙ୍କ 'ଧର୍ମପଦ' କାବ୍ୟ । "ବାରଶହ ବଢ଼େଇରେ ଦାଏ ନା ପୁଅରେ ଦାଏ", ଏହି ପ୍ରଚଳିତ ଲୋକଉକ୍ତିରୁ ଗୋପବନ୍ଧୁ ଯେଉଁ ସାହିତ୍ୟ ସୃଷ୍ଟି କଲେ ସେଥିରେ କୋଣାର୍କ ସହିତ ସେ ପୁଅର ମଧ୍ୟ କୀର୍ତ୍ତି ଘୋଷିତ ହେଲା । ସେ କାବ୍ୟର ଆଧାର ଉପରେ ବିଭିନ୍ନ ଭାଷାର ସାହିତ୍ୟ ସୃଷ୍ଟି ହୋଇଛି । ବର୍ତ୍ତମାନ ସାହିତ୍ୟର ପ୍ରଭାବରେ ଧର୍ମପଦ ଏକ ଐତିହାସିକ ବ୍ୟକ୍ତି । ଏଥିପାଇଁ ସାହିତ୍ୟିକ

ଗୋପବନ୍ଧୁ ଚିରସ୍ମରଣୀୟ ।"

ଧଉଳିଗିରିରେ ଅଶୋକଙ୍କ ଅନୁଶାସନ, ଖଣ୍ଡଗିରିରେ ଖାରବେଳଙ୍କ ସମୟର କୀର୍ତ୍ତି, ସୋମ, ଗଙ୍ଗ ଓ କେଶରୀ ବଂଶର କୀର୍ତ୍ତିରାଜି ମନ୍ଦିରଥିବା ଭୁବନେଶ୍ୱରଠାରେ ମୁସଲମାନ ରାଜତ୍ୱ, ଇଂରେଜ ରାଜତ୍ୱ ପରେ ମହତାବଙ୍କ ଦ୍ୱାରା ହିଁ ଲୋକଶାସନର ରାଜଧାନୀ ସ୍ଥାପିତ ହୋଇଥିଲା । କାରଣ ପଚିଶ ଶହ ବର୍ଷର ଇତିହାସର ଅବଶେଷ ଭୁବନେଶ୍ୱରଠାରେ ହିଁ ରହିଛି । ମହତାବ ଝଙ୍କାର ପୃଷ୍ଠାରେ ବହୁ ବିଷୟର ଅବତାରଣା କରି, ତାକୁ ଆଲୋଚନା କରିଛନ୍ତି ଓ ଅଧିକ ଆଲୋଚନା ପାଇଁ ଆହ୍ୱାନ ଦେଇଛନ୍ତି ।

ମହତାବ ଜଣେ ଉତ୍ତମ ଗବେଷକ ନ ହୋଇଥିଲେ, ଇତିହାସ ପ୍ରତି ଏତେ ବେଶୀ ଗୁରୁତ୍ୱ ଆରୋପ କରି ମୂଲ୍ୟବାନ ପରାମର୍ଶ ଦେଇନଥାନ୍ତେ । 'ଓଡ଼ିଶା ଇତିହାସ କଂଗ୍ରେସ' ଶୀର୍ଷକ ଏକ ସଂପାଦକୀୟରେ ସେ ଲେଖିଥିଲେ, ଓଡ଼ିଶାର ଯେଉଁ ଐତିହାସିକମାନେ ବିଭିନ୍ନ ବିଷୟରେ ଗବେଷଣା କରି ଡକ୍ଟରେଟ ପାଇଛନ୍ତି ବା ପାଇବାକୁ ଉଦ୍ୟମ କରୁଛନ୍ତି ସେମାନେ ଏ ଅଧିବେଶନରେ ଉପସ୍ଥିତ ନଥିଲେ । ଇତିହାସ ମଧ୍ୟ ଆଲୋଚନା ସମାଲୋଚନା ଆବଶ୍ୟକ କରେ । ତେଣୁ ଇତିହାସର ଯେକୌଣସି ବିଷୟ ସମ୍ବନ୍ଧରେ ଜଣଙ୍କର ଗବେଷଣା ଅନ୍ୟଜଣଙ୍କର ଆଲୋଚନାର ବିଷୟ ହେବା ଆବଶ୍ୟକ । ସମ୍ବଲପୁର ଓଡ଼ିଶା ଇତିହାସ କଂଗ୍ରେସ ଅଧିବେଶନରେ ଉକ୍ତ ତ୍ରୁଟି ପରେ ପରିଲକ୍ଷିତ ହେଲା, ଭୁବନେଶ୍ୱରଠାରେ ଅନୁଷ୍ଠିତ ଭାରତୀୟ ଇତିହାସ କଂଗ୍ରେସରେ ମଧ୍ୟ ସେହି ତ୍ରୁଟି ପରିଲକ୍ଷିତ ହେଲା । x x x ଇତିହାସ ଗଠନ ସମ୍ବନ୍ଧରେ ଯେଉଁ ମତଭେଦ ଜାତ ହୋଇଛି, ତାହା ମୌଳିକ ଗବେଷଣାରେ ବାଧା ନ ପହଞ୍ଚାଉ, ଏହା ଆମ୍ଭମାନଙ୍କର ଆଶା ।"

ବିଭିନ୍ନ ଦିଗରୁ, ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କଲେ ମହତାବ ଓଡ଼ିଶାର ଐତିହାସିକମାନଙ୍କ ମଧ୍ୟରେ ନିର୍ଦ୍ଦିଷ୍ଟ ସ୍ଥାନ ଓ ଗୌରବର ଅଧିକାରୀ ।

୨

# ସଂସ୍କାରକ ଓ ମାନବିକ ଅଧିକାରର ପ୍ରବକ୍ତା

ଡକ୍ଟର ମହତାବ ଜଣେ ରାଷ୍ଟ୍ରନୀତିଜ୍ଞ ଭାବେ ମାନବିକ ଅଧିକାର ପ୍ରତି ସଚେତନ ଥିଲେ । ମାନବିକ ଅଧିକାର ହେଉଛି ମାନବିକ ସଭ୍ୟତାର ଇତିହାସ । ମାନବିକ ଅଧିକାର ସଂପର୍କରେ ନିଜର ସ୍ପଷ୍ଟ ମତ ପ୍ରକାଶ କରି ସେ ଲେଖିଥିଲେ, "ପ୍ରତ୍ୟେକ ମନୁଷ୍ୟର ନିଜର ମତ ପୋଷଣ କରିବାର ଏବଂ ସେ ମତ ଅନୁସାରେ ଅନ୍ୟ ସହିତ ସଂଘର୍ଷରେ ନଆସି କାର୍ଯ୍ୟ କରିବାର, ଶାସନ ଦୃଷ୍ଟିରେ ପ୍ରତ୍ୟେକ ମନୁଷ୍ୟର ବ୍ୟକ୍ତିଗତ ସମ୍ମାନକୁ ସ୍ୱୀକାର କରି ବିନା ବିଚାରରେ ଅଭିଯୁକ୍ତକୁ ସ୍ୱପକ୍ଷ ସମର୍ଥନ କରିବାକୁ ସୁବିଧା ନଦେଇ କୌଣସି ଦଣ୍ଡ ବିଧାନ ନକରିବା, ମୋଟ କଥା, ମନୁଷ୍ୟର ମନୁଷ୍ୟତ୍ୱକୁ ସବୁକ୍ଷେତ୍ରରେ ସ୍ୱୀକାର କରିବା ଓ ସେ ସ୍ୱୀକୃତି ପାଇଁ ଦାବି କରିବା ହେଉଛି ତଥା କଥିତ ମାନବିକ ଅଧିକାର । ଏହି ମାନବିକ ଅଧିକାର ପରିସର ମଧ୍ୟରେ ବଞ୍ଚିବାର ଅଧିକାର, ଶିକ୍ଷାର ଅଧିକାର, ସ୍ୱାସ୍ଥ୍ୟର ଅଧିକାର, କାମ କରିବାର ଅଧିକାର ପ୍ରଭୃତି ମଧ୍ୟ ଅଙ୍ଗାଙ୍ଗୀ ଭାବେ ଜଡିତ । ମନୁଷ୍ୟର ମୌଳିକ ଅଧିକାର ଯେଉଁଠି ଯେଉଁଠି କ୍ଷୁଣ୍ଣ ହୋଇଛି ମହତାବଙ୍କ ସ୍ୱର ହୋଇ ଉଠିଛି କଠିନ, ତୀବ୍ର ଓ ସଂଗ୍ରାମ ପାଇଁ ପ୍ରେରଣାପ୍ରଦ । ରାଜନୈତିକ ଜୀବନରେ ବହୁ ଗୁରୁତ୍ୱପୂର୍ଣ୍ଣ ପଦପଦବୀ ମଣ୍ଡନ କରି ସୁଦ୍ଧା, ତାଙ୍କର ସ୍ପଷ୍ଟବାଦିତା ଓ ବିଚାରଭଙ୍ଗୀ ଜନମାନସରେ ଆଲୋଡ଼ନ ସୃଷ୍ଟି କରିଥିଲା ।

କୋରାପୁଟରେ ପୂର୍ବବଙ୍ଗରୁ ପଳାଇ ଆସିଥିବା ଶରଣାର୍ଥୀଙ୍କ ଉପରେ ଗୁଳିଚାଳନା, ସମ୍ବଲପୁର ଚାଷୀଙ୍କଠାରୁ ଜୋର ଜବରଦସ୍ତ ଜଳକର ଆଦାୟ, ଖଡ଼ିଆଳରେ ଦୁର୍ଭିକ୍ଷ ଜନିତ ପରିସ୍ଥିତି, ରାୟଗଡ଼ା ଗୁଳିଚାଳନା, ତେଲେଙ୍ଗାନା ହିଂସାକାଣ୍ଡ, ଶିକ୍ଷକ ଓ ଛାତ୍ର ସମସ୍ୟା, ପୋଲିସ କାର୍ଯ୍ୟକ୍ରମ ଓ ବ୍ୟବହାରକୁ ବିରୋଧ, ଆଦ୍ରା ଷ୍ଟେସନରେ ପୋଲିସ ବ୍ୟବହାରର ନିନ୍ଦା, ରିଲିଫରେ ପାତର ଅନ୍ତର, ହିଂସାକୁ ପ୍ରଶୟ ଦେଉଥିବା ରାଜନୈତିକ ବ୍ୟକ୍ତିଙ୍କୁ ନିନ୍ଦାକରିବା, ଡାକ୍ତରଖାନାରେ ରୋଗୀମାନଙ୍କ ପ୍ରତି ପୋଲିସର ଅମାନୁଷିକ ଅତ୍ୟାଚାର, ହରିଜନମାନଙ୍କ ପ୍ରତି ସବର୍ଣ୍ଣ ହିନ୍ଦୁମାନଙ୍କର ର୍ଦୁବ୍ୟବହାର, ଜରୁରୀ ପରିସ୍ଥିତିର ବିରୋଧ, ଶାସନରେ ବିଶୃଙ୍ଖଳା ଇତ୍ୟାଦି ବିଭିନ୍ନ ତତ୍‌କାଳୀନ ବିଷୟକୁ ନେଇ ଗାଁ ମଜଲିସ୍ ସ୍ତମ୍ଭରେ ନିଜର ସ୍ୱର ଉତ୍ତୋଳନ କରିଛନ୍ତି । ଯେଉଁଠାରେ ମାନବିକ ଅଧିକାର କ୍ଷୁଣ୍ଣ ହୋଇଛି, ତାହାର ଦୃଷ୍ଟାନ୍ତ ଦେଇ ଗାଁ ମଜଲିସ୍‌ରେ କ୍ଷୋଭ ପ୍ରକାଶ ପାଇଛି । କେବଳ ସେତିକି ନୁହେଁ, ମାନବିକ ଅଧିକାର ପ୍ରତି ସଚେତନତା ସୃଷ୍ଟି କରିବା ପାଇଁ ଆବେଦନ କରିଛନ୍ତି ଏବଂ ସେପ୍ରକାରର ଆନ୍ଦୋଳନ ଅନିବାର୍ଯ୍ୟ ହେଲାଣି ବୋଲି ମତ ଦେଇ କହିଛନ୍ତି, "ଲୋକେ ଯଦି

ନିଜ ଅଧିକାର ସମ୍ବନ୍ଧରେ ସଚେତନ ନ ହୁଅନ୍ତି, ସେମାନଙ୍କୁ ସଚେତନ କରାଇବା ପାଇଁ ବହୁ ବ୍ୟକ୍ତି ଉଦ୍ୟମ କରିବେ, ଏହାକୁ କେହି ବନ୍ଦ କରିବେ ନାହିଁ." ।

ସ୍ୱାଧୀନତା ସଂଗ୍ରାମ ଓ ପରବର୍ତ୍ତୀ ଅବସ୍ଥାର ସ୍ମୃତି ରୋମନ୍ଥନ କରି, ଆପଦ୍‌କାଳୀନ ଅବସ୍ଥାକୁ ଲକ୍ଷ୍ୟ କରି ସେ ଲେଖିଥିଲେ, "ଏପରି ପରିସ୍ଥିତି ଦେଶରେ ସୃଷ୍ଟିହେଲା, ଯେଉଁଥିରେ ମାନବିକ ଅଧିକାରଠାରୁ କର୍ତ୍ତବ୍ୟ ଗୁରୁତର ବୋଲି ମନେ କରାହେଲା । ସଂପୂର୍ଣ୍ଣ ଗଣତାନ୍ତ୍ରିକ ସ୍ୱାଧୀନତା ଭାରତର ଅବସ୍ଥା ଦୃଷ୍ଟିରୁ ଏକ ଉପଯୋଗୀ ଶାସନ ବ୍ୟବସ୍ଥା ନୁହେଁ ବୋଲି ବିଚାର କରାହେଲା । ଆପତ୍‌କାଳୀନବ୍ୟବସ୍ଥା ଜାରି ହେଲା । ସମ୍ବିଧାନର ବ୍ୟାପକ ପରିବର୍ତ୍ତନ କରାହେଲା । କଥା କହିଲା ବେଳେ, କିଛି ଲେଖିଲା ବେଳେ, ଚାରିଆଡ଼କୁ ଚାହିଁ ଭୟେ ଭୟେ ଚଳିବାକୁ ହେଉଛି । ଶାସନ ଜନତାର ପ୍ରତିନିଧି ନହୋଇ ଏହା ଜନତାର ନିୟାମକ ହୋଇଗଲା ।" "ପ୍ରଜାମାନଙ୍କୁ ପରାକ୍ରମ ଦେଖାଇବା ପାଇଁ ରାଜାମାନେ ପୋଲିସ ବା ସୈନ୍ୟମାନଙ୍କୁ ସାଙ୍ଗରେ ନିଅନ୍ତି । ଆଜିତ ରାଜା ନାହାଁନ୍ତି, ପ୍ରଜାମାନେ ତ ଭୋଟ ଦାତା । ଗଣତନ୍ତ୍ର ପଦ୍ଧତି ସହିତ ଏ ପ୍ରକାର ବିରାଟ ନିରାପତ୍ତା ବ୍ୟବସ୍ଥା ଖାପ ଖାଉନାହିଁ । ଭୟଭୀତ ଜନତାକୁ ଆହୁରି ଭୟଭୀତ କରିବା ପାଇଁ ବ୍ୟବସ୍ଥା ନିତାନ୍ତ ରୁଚି ବିରୁଦ୍ଧ କାର୍ଯ୍ୟ । ଏଥିପାଇଁ ପୋଲିସ ଦାୟୀ ନୁହଁନ୍ତି । ଦାୟୀ ଯେ ପୋଲିସ ସାହାଯ୍ୟରେ ନିଜର ବିଭବ ଓ କ୍ଷମତା ପ୍ରଦର୍ଶନ କରିବାକୁ ଚାହାଁନ୍ତି ସେମାନେ ।" ଭୋଟଦାତାଙ୍କ ଭୂମିକା କେବଳ ଦର୍ଶକ ହେଲେ ଚଳିବ ନାହିଁ । ସେମାନେ ମଧ୍ୟ ଅଭିନୟରେ ସକ୍ରିୟ ଅଂଶ ଗ୍ରହଣ କରିବାକୁ ପ୍ରସ୍ତୁତ ହେବା ଆବଶ୍ୟକ । ସେମାନଙ୍କର ଭୂମିକା ଉପରେ ନିର୍ଭର କରେ ସେମାନଙ୍କର ଏବଂ ଦେଶର ଅବସ୍ଥା ।"

"ଇମରଜେନସିରେ କ୍ଷତି ଘଟିଛି ଏ ବିଶାଳ ଜାତିର ନୈତିକତାରେ । ଶାସନର ଭୟରେ ସାଧାରଣ ଜନତା ମ୍ରିୟମାଣ ହୋଇ ନୈତିକ ସାହସଟିକୁ ହରାଇ ଦେଇଛି । ଗୋଟିଏ ବିଦେଶୀ ରାଷ୍ଟ୍ର ଅନ୍ୟ ରାଷ୍ଟ୍ରକୁ ଦଖଲ କରିନେବା ପରେ ସୈନ୍ୟବାହିନୀ ଯେପରି ଲୁଟତରାଜ କରନ୍ତି, ସେହିପରି ଅବସ୍ଥା ହୋଇଗଲା । ଭାରତ ସରକାରଙ୍କ ବାହୁ ଛାୟାତଳେ ପୂର୍ବତନ କେତୋଟି ଗଡ଼ଜାତରେ ତତ୍‌କାଳୀନ ରାଜ ଦରବାରୀମାନେ ଯେପରି ଅତ୍ୟାଚାର କରିଥିଲେ, ସେହିପରି ଇମରଜେନ୍‌ସି ଛାୟା ତଳେ ଅସାଧୁ ଶାସକମାନେ କରିଗଲେ । କେହି ପ୍ରତିବାଦ କରି ପାରିଲେ ନାହିଁ ।" ମହତାବ ଗାଁ ମଜଲିସ୍ ମାଧ୍ୟମରେ ମାନବିକ ଅଧିକାର ଯେଉଁଠି ଯେପରି ଭାବରେ ଉଲ୍ଲଙ୍ଘନ ହେଉଥିଲା, ତାହାର ବିଶଦ୍ ବିବରଣୀ ପ୍ରଦାନ କରି ତା'ବିରୋଧରେ ଜନମତ ଜାଗ୍ରତ କରିବାର ଆହ୍ୱାନ କରୁଥିଲେ । ଗାଁ ମଜଲିସ ବ୍ୟତୀତ ପ୍ରଜାତନ୍ତ୍ର ସଂପାଦକୀୟ ମଧ୍ୟ ନିଜର ନିର୍ଭୀକ ଓ ନିରପେକ୍ଷ ମତ ଦେବାରେ ଆଦୌ ପଛାଉ ନଥିଲା । ଆହଲ୍ଲାବାଦ ହାଇକୋର୍ଟରେ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ନିର୍ବାଚନ ରଦ୍ଦ ହୋଇଯିବା ପରେ ତାଙ୍କର ଇସ୍ତଫା ପାଇଁ ଜନମତ ପ୍ରକାଶ ପାଇଲା । ମହତାବ ଗାଁ ମଜଲିସ୍‌ରେ 'ଶ୍ରୀମତୀଙ୍କ ମାମଲା' ଶୀର୍ଷକରେ ଏକ ଆଲୋଚନା କରିଥିଲେ । ଏହି ଆଲୋଚନା ଏକ ଅକ୍ଷମଣୀୟ ଅପରାଧ ବୋଲି ବିବେଚନା କରାଯାଇ ମହତାବଙ୍କୁ ମିସାରେ ଗିରଫ କରାଗଲା ।

ମହତାବ ଥିଲେ ଷ୍ଟେଟସ୍‌ମ୍ୟାନ । ତେଣୁ ତାଙ୍କର ଦୂର ଦୃଷ୍ଟି ଥିଲା ସୁଦୂରପ୍ରସାରୀ । ତାହା ସୀମା ସରହଦ ମଧ୍ୟରେ ମଧ୍ୟ ସୀମିତ ନଥିଲା । ଏମରଜେନ୍‌ସି ପୂର୍ବରୁ ଜୟ

ପ୍ରକାଶ ନାରାୟଣ ଯେଉଁ ଆନ୍ଦୋଳନ ଆରମ୍ଭ କରିଥିଲେ, ତାହାର ଯଥାର୍ଥତାକୁ ସେ ଉପଲବ୍ଧି କରିଥିଲେ । କାରଣ ମାନବିକ ଅଧିକାରର ଯେତେବେଳେ ଉଲ୍ଲଙ୍ଘନ ହୁଏ, ତାହାର ସୁରକ୍ଷା ପାଇଁ ଜନ ଆନ୍ଦୋଳନ ହିଁ ଏକମାତ୍ର ବିକଳ୍ପ ଓ ମଝି ମଝିଆ କିଛି ନାହିଁ ବୋଲି ସେ ନିଜ ଜୀବନରେ ଅନୁଭୂତି ଓ ଅଭିଜ୍ଞତାରୁ ଶିକ୍ଷା ଲାଭ କରିଥିଲେ । ତେଣୁ ଗାଁ ମଜଲିସ୍‌ରେ ସେ 'ଜୟପ୍ରକାଶଙ୍କ ବନ୍ୟାର ପ୍ରକୋପ' ଶୀର୍ଷକ ଲେଖାରେ ଉଲ୍ଲେଖ କରିଥିଲେ, 'ଜୟ ପ୍ରକାଶଙ୍କ ଆନ୍ଦୋଳନ ସାରା ଦେଶରେ ଯେଉଁ ପ୍ରବଳ ବନ୍ୟା ସୃଷ୍ଟି କରିଛି, ସେଥିରେ କେତେ ଯାଗାରେ ଯେ କୂଳ ଖାଇଯିବ, କେତେ ଯାଗାରେ ପଠା ସୃଷ୍ଟି ହୋଇଯିବ, କେତେ କେତେ ବଡ଼ ବଡ଼ ପୁରୁଣା ଗଛ ଉପୁଡ଼ି ପଡ଼ିବ, କେତେ ନୂଆ ନୂଆ ଧାର ସୃଷ୍ଟି ହୋଇଯିବ, ତା'ର ଠିକଣା ନାହିଁ । ଧୀରସ୍ଥିର ହୋଇ କୌଣସି ରାଜନୈତିକ ଦଳ ସ୍ଥିର ହୋଇ ରହିପାରିବ ନାହିଁ । ରାଜନୈତିକ ଦଳ ବାହାରେ ଯେଉଁମାନେ ଗାନ୍ଧୀଙ୍କ ଆଦର୍ଶ ଅନୁସାରେ ରଚ଼ନାତ୍ମକ କାର୍ଯ୍ୟ କରୁଥିଲେ, ସେମାନେ ମଧ୍ୟ ସ୍ଥିର ହୋଇ ରହି ପାରିବେ ନାହିଁ । ଏହା ଏକ ପ୍ରବଳ ବନ୍ୟା ।"

ମାନବିକ ଅଧିକାର ଲୋକଶିକ୍ଷାର ଏକ ଅଂଶ ବିଶେଷ । ସେହି ଲୋକଶିକ୍ଷା ପାଇଁ ମହତାବ ଗାଁ ମଜଲିସ୍ ସ୍ତମ୍ଭକୁ ବ୍ୟବହାର କରିଛନ୍ତି । ଗାଁଲୋକମାନେ ବୁଝନ୍ତୁ, ଭାବନ୍ତୁ ଓ କହି ଶିଖନ୍ତୁ ଏଥିପାଇଁ ସେ ନିରବଚ୍ଛିନ୍ନ ଭାବରେ, ନିରନ୍ତର ଓ ଅତ୍ୟନ୍ତ ନିର୍ମୋହ ହୋଇ ଚ଼େଷ୍ଟା କରିଛନ୍ତି । କାରଣ ସେ ବିଶ୍ୱାସ କରିଛନ୍ତି, "ଶାସନ ଚାଲିବା ଯେପରି ଦରକାରୀ, ଲୋକେ ମଧ୍ୟ ଶାସନକୁ ଚ଼ଳାଇ ଶିଖିବା ସେହିପରି ଦରକାରୀ । ଲୋକେ ଯଦି ଶାସନ ଚ଼ଳାଇ ନଶିଖିବେ, ତେବେ ଶାସନଟା ଖାଲି ଶୂନ୍ୟରେ ଚ଼ାଲି ପାରିବ ନାହିଁ । ଭୋଟ ପାଇଯାଇ ମନ୍ତ୍ରୀ ହୋଇ ଗଲେ ଲୋକଶାସନ ହୁଏ ନାହିଁ । ଶାସନର ପ୍ରତି କ୍ଷେତ୍ରରେ କ'ଣ ହେଉଛି ବୁଝିବା ଓ କେଉଁଠି କ'ଣ ହେବା ଉଚ଼ିତ, ସେ ବିଷୟରେ ମତ ଦେବା, ଏସବୁ ଲୋକଶାସନ ପାଇଁ ଅତି ଦରକାରୀ ।"

ମହତାବ ଅଧିକାରବାଦ ସଂପର୍କରେ ନିଜର ଠୋସ୍ ମତ ବ୍ୟକ୍ତ କରିଛନ୍ତି । କାରଣ ଅଧିକାରବାଦ ହେତୁ ସମାଜରେ ସମାନ ଅଧିକାର ପ୍ରବର୍ତ୍ତନରେ ବାଧା ଜନ୍ମେ । ଏଠାରେ ମହତାବ ସଂସ୍କାରକର ଭୂମିକାରେ ନିଜକୁ ସ୍ଥାନିତ କରିଛନ୍ତି । ଅଧିକାରବାଦ ବର୍ଣ୍ଣାଶ୍ରମରୁ ସୃଷ୍ଟି ହେଲା । ବର୍ଣ୍ଣାଶ୍ରମ ମଧ୍ୟ ସୃଷ୍ଟିକଲା ଜାତିବାଦ । ରାଜନୀତିରେ ମଧ୍ୟ ଜାତି ବିଚାର କାର୍ଯ୍ୟ କରୁଛି ବୋଲି ସେ କ୍ଷୋଭ ପ୍ରକାଶ କରିଛନ୍ତି । ସେ ଲେଖିଥିଲେ, "ଭାରତର ରାଜନୈତିକ ଦଳ କ୍ରମେ ବର୍ଣ୍ଣାଶ୍ରମରେ ଜାତିର ସ୍ଥାନ ନେବାକୁ ବସିଛି । ଏବଂ ତା'ଦ୍ୱାରା ସମାଜ ଆଉ ଏକ ବନ୍ଧନ ଭିତରକୁ ଗତି କରୁଛି । ଭାରତୀୟ ସମାଜ ଜାତି ବିଚାର ଫାଶରେ ଏପରି ଜଡ଼ିତ ଯେ ଗୌତମ ବୁଦ୍ଧଙ୍କଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଯେତେ ଉଦ୍ୟମ କରା ହେଲାଣି, ସବୁ ସେ ଫାଶରୁ ସମାଜକୁ ମୁକ୍ତ କରିପାରିନାହାଁନ୍ତି । ଧର୍ମ ଦିନେ ପାଶ୍ଚାତ୍ୟ ଦେଶମାନଙ୍କରେ ଯେପରି ରାଜନୀତି କ୍ଷେତ୍ରରେ ପ୍ରତିବନ୍ଧକ ହୋଇଥିଲା, ଭାରତରେ ଜାତିପ୍ରଥା ମଧ୍ୟ ଦିନେ ଯେପରି ରାଜନୀତିକୁ ବିପର୍ଯ୍ୟସ୍ତ କରିଥିଲା, ଆଜି ସେହିପରି ଜାତିପ୍ରଥାର ସୂକ୍ଷ୍ମରୂପ ରାଜନୈତିକ ଦଳମାନଙ୍କ ଭିତରେ ପ୍ରବେଶ କରି ଦେଶର ରାଜନୀତିକୁ ବିପଥ ଗାମୀ କରାଉଛି ।"

ମହତାବ ମନ୍ଦିରରେ ପ୍ରଚଳିତ ବଳି-ପ୍ରଥା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ତା୨-10-85 ରେ ଗାଁ ମଜଲିସ୍‌ରେ "ଛାଗମାନଙ୍କ ବିପତ୍ତି" ଶୀର୍ଷକ ଲେଖା କଟକ ଚଣ୍ଡୀ ଦେବୀଙ୍କ ନିକଟରେ ଦଶହରା ଦିନ ଛାଗବଳି ଓ ବଳି ପାଇଁ ଧାର୍ଯ୍ୟ ଫିସ ସଂପର୍କରେ ଯେଉଁ ବିଜ୍ଞାପନ ପ୍ରକାଶ ପାଇଥିଲା, ଏ ଲେଖାଥିଲା ତାହାର ପ୍ରତିକ୍ରିୟା । ବିଜ୍ଞାପନରେ ଆହୁରି ମଧ୍ୟ କୁହାଯାଇଥିଲା ଯେ ମନ୍ଦିର କର୍ତ୍ତୃପକ୍ଷ ଯଦିଓ ବଳିପ୍ରଥା ବନ୍ଦ କରିବାକୁ ଚାହାଁନ୍ତି, ତଥାପି 'ଲୋକେ ଚାହିଁବାରୁ' ଏହାକୁ ଚଳେଇ ରଖାଯାଇଛି । ମହତାବଙ୍କର ଲେଖା ଥିଲା ଇନ୍ଦ୍ରଙ୍କ ବଜ୍ରଠାରୁ ଆହୁରି ଶକ୍ତ । ସେ ସେହି ଲେଖାରେ ପଚାରି ଥିଲେ, "କେଉଁ ଶ୍ରେଣୀର ଲୋକେ ଚାହାଁନ୍ତି ? ତନ୍ତ୍ରର ପଞ୍ଚମକାର ସାଧନା ଅନୁସରଣ କରି ମଦ୍ୟ ଓ ମୈଥୁନର ପ୍ରଚଳନ କଲେ ବହୁଲୋକ ଏଥିପ୍ରତି ଆକୃଷ୍ଟ ହେବେ । ଚଣ୍ଡୀମନ୍ଦିର ପାଖରେ ଏକ ମଦ ଦୋକାନ ଏବଂ କେତେଘର ବେଶ୍ୟାଙ୍କୁ ରଖିଲେ ବହୁ ଭକ୍ତ ଚଣ୍ଡୀ ଦର୍ଶନ ପାଇଁ ଯିବେ ଏବଂ ଯୁବକମାନଙ୍କର ବହୁତ ଲାଭ ହେବ । ଏପରି ଯୁକ୍ତି ଯେପରି ନିନ୍ଦନୀୟ, ଛାଗବଳି ପାଇଁ ବିଜ୍ଞାପନ ସେହିପରି ନିନ୍ଦନୀୟ ।" ପୁନଶ୍ଚ ସେ ଆହ୍ୱାନ କରିଥିଲେ, "କଟକ ଚଣ୍ଡୀଠାରେ ବଳି-ପ୍ରଥା ବନ୍ଦ ପାଇଁ ଜନ ଆନ୍ଦୋଳନ ହେବା ଉଚିତ ।" ମହତାବ ଏତିକିରେ ସନ୍ତୁଷ୍ଟ ନହୋଇ ଏଣ୍ଡାଉମେଣ୍ଟ କମିସନରଙ୍କ ସହ ଆଲୋଚନା କଲେ । ତହିଁରୁ କିଛି ସୁଫଳ ନମିଳିବାରୁ 16 ତାରିଖ ସଂଧ୍ୟାରେ ଜଷ୍ଟିସ ହରିହର ମହାପାତ୍ରଙ୍କ ଅଧ୍ୟକ୍ଷତାରେ କଟକ ସହର ନାଗରିକମାନଙ୍କର ଏକ ବୈଠକ ବସି 500 ସତ୍ୟାଗ୍ରହୀ ମହାଷ୍ଟମୀ ଦିନ କଟକ ଚଣ୍ଡୀ ସମ୍ମୁଖରେ ଧାରଣା ଦେବାର ସ୍ଥିର ହେଲା । ମହତାବ ପ୍ରଜାତନ୍ତ୍ର ମାଧ୍ୟମରେ ଜନମତ ଜାଗ୍ରତ କରିବାରେ ଲାଗିପଡି ଏହି ପ୍ରଥା ବନ୍ଦ କରି ପାରିଥିଲେ । ପୁରୀ ଶ୍ରୀମନ୍ଦିର, ଯାଜପୁରର ଶ୍ରୀ ବିରଜା, ବାଙ୍କି ଚର୍ଚ୍ଚିକା ଓ ବଡ଼ମ୍ବା ଭଟ୍ଟାରିକାଠାରେ ବଳି ପ୍ରଥା ବନ୍ଦ ପାଇଁ ମହତାବଙ୍କ ପ୍ରଜାତନ୍ତ୍ର ମାଧ୍ୟମରେ ଆହ୍ୱାନ ଥିଲା ଦୁଃସାହସିକ ପଦକ୍ଷେପ ।

ଶ୍ରୀ ଜଗନ୍ନାଥ ମନ୍ଦିର ମଧ୍ୟରେ ଥିବା ବିମଳାଙ୍କ ନିକଟରେ ବଳି ପଡ଼ିବା ସଂପର୍କରେ ଶ୍ରୀ ଗୋପାଳ ଚନ୍ଦ୍ର ତ୍ରିପାଠୀ ଏକ ପ୍ରବନ୍ଧ ଲେଖି ପ୍ରଜାତନ୍ତ୍ରକୁ ପଠାଇଲେ । ପ୍ରବନ୍ଧଟିର ନାମ ଥିଲା "ଶ୍ରୀକ୍ଷେତ୍ରରେ ଶାକ୍ତ ଗୁଣ୍ଡିଚା ବା ଦେବୀ ଗୁଣ୍ଡିଚା" । ଏହି ପ୍ରବନ୍ଧରେ ଶ୍ରୀ ତ୍ରିପାଠୀ ବିଭିନ୍ନ ଯୁକ୍ତି ଦେଇ ଶ୍ରୀ ଜଗନ୍ନାଥଙ୍କ ବଳି ପ୍ରତି ଅନୁମୋଦନ ରହିଥିବାର ଉଲ୍ଲେଖ କରିଥିଲେ ।

ମହତାବ ଏହି ପ୍ରବନ୍ଧ ପ୍ରକାଶ ପାଇବାର ପରଦିନ ପ୍ରଜାତନ୍ତ୍ରରେ ଲେଖିଥିଲେ, "ଗୋପାଳ ଚନ୍ଦ୍ର ତ୍ରିପାଠୀଙ୍କୁ ଅଶେଷ ଧନ୍ୟବାଦ ଯେ ସେ ଜଗନ୍ନାଥ ମନ୍ଦିରରେ ଗୋପନରେ ଚାଲିଥିବା ଜୀବବଳି ପ୍ରଥାକୁ ପ୍ରକାଶ କରିଛନ୍ତି ।. . . ଏ ଅଧର୍ମ ଚାଲିଛି । ଜଗନ୍ନାଥଙ୍କ ଅନୁମତି ଥିଲେ ଜଗନ୍ନାଥଙ୍କ ମନ୍ଦିର ବାରମ୍ବାର ଲୁଣ୍ଠିତ ହୋଇଥାନ୍ତା ନାହିଁ କି ଜଗନ୍ନାଥଙ୍କୁ ମନ୍ଦିରରୁ ନେଇ ଅନ୍ୟତ୍ର ଲୁଚାଇ ରଖିବା ହୋଇଥାନ୍ତା ନାହିଁ । ଜଗନ୍ନାଥଙ୍କ ଏ ଦୁର୍ଦ୍ଦିନ ଭୁଲିଯିବାର ନୁହେଁ । ଜଗନ୍ନାଥଙ୍କ ସମ୍ବନ୍ଧରେ ଏତିକି ସେବକମାନେ ଜାଣନ୍ତୁ, ମୂର୍ତ୍ତି ଜୀବନ୍ତ ରହନ୍ତି ସେବକମାନଙ୍କ ଧର୍ମନିଷ୍ଠା ଯୋଗେ, ସେବକମାନେ ଧର୍ମଛଡ଼ା ହେଲେ ମୂର୍ତ୍ତି କେବଳ ମୂର୍ତ୍ତି ହୋଇ ରହନ୍ତି । ପରମାତ୍ମାଙ୍କ ସତ୍ତା ତାଙ୍କ ମଧ୍ୟରୁ ଅନ୍ତର୍ହିତ ହୁଏ ।"ସେ ସେବକମାନଙ୍କୁ ଆହ୍ୱାନ କରି ଲେଖିଥିଲେ, "ଧର୍ମଜ୍ଞାନରେ ସାହସର ସହିତ ବଳିପ୍ରଥା ବନ୍ଦ କରି ମନ୍ଦିରକୁ, ପୁରୁଷୋତ୍ତମଙ୍କୁ ଆବାହନ କରନ୍ତୁ ।"

ମହତାବ ରଣପୁରଠାରେ ତିନିଗୋଟି ସ୍କୁଲ ଛାତ୍ରଙ୍କୁ ବଳି ଦିଆଯିବା ଘଟଣାରେ, ଦୋଷୀ ବ୍ୟକ୍ତିମାନେ ଧରା ନ ପଡ଼ିଥିବାରୁ କ୍ଷୋଭ ପ୍ରକାଶ କରି ଲେଖିଥିଲେ, "ଶାସନର ଅପାରଗତାର ପୂର୍ଣ୍ଣ ପ୍ରମାଣ ମିଳିଲା । ଯଦି ଅନୁସନ୍ଧାନରୁ ବଳି ଦେବା ଲୋକ ଧରା ନ ପଡ଼ିଲା, ତେବେ ସେ ଅଞ୍ଚଳରେ ପିଟୁଣି ଟିକସ ବସାଇବା ଉଚିତ ଥିଲା । ଅପରାଧକୁ ଯେଉଁ ଅଞ୍ଚଳ ଲୁଚାଏ, ସେ ଅଞ୍ଚଳ ଆବଶ୍ୟକ କରେ ସାମୂହିକ ଦଣ୍ଡ ।"

ସାମାଜିକ କୁସଂସ୍କାର ବିରୋଧରେ ସମାଜର ପରିବର୍ତ୍ତନ ପାଇଁ ମାନସିକ ପ୍ରସ୍ତୁତି କରାଇବା ଓ ଜନସାଧାରଣଙ୍କ ମନରେ ବିପ୍ଳବର ବୀଜ ରୋପଣ କରିବା ପାଇଁ ଯେଉଁ ଶକ୍ତିଶାଳୀ ନେତୃତ୍ୱର ଆବଶ୍ୟକ ଥିଲା, ତାହା ମହତାବଙ୍କ ଦ୍ୱାରା ହିଁ ସମ୍ଭବ ହୋଇ ପାରିଥିଲା । ସେଥିପାଇଁ ସେ ଗାନ୍ଧୀ, ନେହେରୁ, ଗୋପବନ୍ଧୁଙ୍କ ପରି ରାଜନୀତି ସାଙ୍ଗେ ସାଙ୍ଗେ ସାହିତ୍ୟ ସହିତ ଅତୁଟ ସଂପର୍କ ସ୍ଥାପନ କରିଥିଲେ । ଏବଂ ସାହିତ୍ୟ ମାଧ୍ୟମରେ ରାଷ୍ଟ୍ରନୀତିର ପରିପୋଷକ ଓ ସଂସ୍କାରକ କାର୍ଯ୍ୟ କରିବାରେ ଥିଲେ ଅଗ୍ରଗଣ୍ୟ ।

ମହତାବଙ୍କର ଅନ୍ୟ ଏକ ନିର୍ଭୀକ ମତବାଦ ଥିଲା ହରିଜନମାନଙ୍କର ଶ୍ରୀ ମନ୍ଦିରରେ ପ୍ରବେଶ କରିବାର ଅଧିକାର । ଏଥିପାଇଁ ପ୍ରଜାତନ୍ତ୍ରର ତା 20-4-1948 ରେ 'ଧର୍ମାଚାର ଓ ଶାସନ' ଶୀର୍ଷକ ସଂପାଦକୀୟରେ କୁହାଯାଇଥିଲା, "ଧର୍ମାଚାର ସାଙ୍ଗରେ ଶାସନର ସଂପର୍କ ନାହିଁ ଭାବିବା ମୂର୍ଖତା । ଯେଉଁ ସଂସ୍କାର ନ୍ୟାୟାନୁମୋଦିତ, ସମାଜ ଦ୍ୱାରା ସମର୍ଥିତ ତାହା ହିଁ ଶାସନ ଜାରି କରିପାରିବ, ଅନ୍ୟଥା ନୁହେଁ । ଅସ୍ପୃଶ୍ୟତା ନିବାରଣ ଠିକ୍ ସେହିପରି ଏକ ସଂସ୍କାର ଯାହା ନ୍ୟାୟାନୁମୋଦିତ, ଜନସାଧାରଣଙ୍କ ଦ୍ୱାରା ସମର୍ଥିତ, ମାତ୍ର ମୁଷ୍ଟିମେୟ ପ୍ରତିକ୍ରିୟାଶୀଳ ବ୍ୟକ୍ତିଙ୍କ ଦ୍ୱାରା ଆଜି ସୁଦ୍ଧା ବିଫଳୀକୃତ । ସେଇଠି ଶାସନ ହସ୍ତକ୍ଷେପ କରିବ ଓ ସଂସ୍କାରକୁ ଜାରି କରିବ । ଅସ୍ପୃଶ୍ୟତା ନିବାରଣର ପ୍ରତୀକ ହେଉଛି ମନ୍ଦିର ପ୍ରବେଶ । ଏଣୁ ସାଧାରଣ ମନ୍ଦିର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ ରଖିବାକୁ ହେବ ।" ହରିଜନମାନଙ୍କର ମନ୍ଦିରରେ ପ୍ରବେଶ ଦ୍ୱାରା ଜଗନ୍ନାଥ ମତବାଦ ଓ ଗାନ୍ଧୀ ମତବାଦର ମିଳନ ଘଟିବ, ଏହା ଥିଲା ମହତାବଙ୍କର ବିଶ୍ୱାସ । ଭଗବାନଙ୍କ ନାଁରେ ଏପରି ଏକ ସାମାଜିକ ବ୍ୟାଧି ବିରୋଧରେ ମହତାବ ବାରମ୍ବାର ଲେଖିଛନ୍ତି ।

ସମାଜରୁ ଗୋହତ୍ୟାକୁ ବନ୍ଦ କରିବା ପାଇଁ ସେ ସଂପର୍କରେ ଏକ ତାତ୍ତ୍ୱିକ ଆଲୋଚନା କରି ଗୋହତ୍ୟାକୁ ଜୀବହତ୍ୟା ଦୃଷ୍ଟିରୁ ବର୍ଜ୍ଜନୀୟ ବୋଲି କହିଥିଲେ । ମହତାବ ସମାଜରୁ ନିଶାଦ୍ରବ୍ୟ ଦୂର କରିବା ପାଇଁ ଗାଁ ମଜଲିସ ସ୍ତମ୍ଭରେ ବହୁଲେଖା ଲେଖିଥିଲେ । ସେ ନିଜର ମନୋଭାବକୁ ବ୍ୟକ୍ତ କରିବାକୁ ଯାଇ ଲେଖିଥିଲେ, "ଗାନ୍ଧିଜୀଙ୍କ ଆନ୍ଦୋଳନ ପୂର୍ବରୁ ଦେଶରେ ସମାଜରେ ନିଶା ପ୍ରଚଳନ ଥିଲା । ତାଡ଼ି ମଦ ଗାଁ ଗହଳରେ ଚାଲୁଥିଲା । ଅତି ଉପର ମହଲାରେ ଯେଉଁମାନେ ସାହେବ ସୁହବାଙ୍କ ସଂପର୍କରେ ଆସୁଥିଲେ, ସେମାନେ ବିଲାତି ମଦ ବ୍ୟବହାର କରୁଥିଲେ । କିନ୍ତୁ ସମାଜରେ ମଦ ଚାଲୁଥିଲେ ମଧ୍ୟ ଏହାର ସମ୍ମାନ ଜନକ ସ୍ଥାନ ନଥିଲା । "ଶାସନର ଉପରସ୍ତରରୁ ତଳସ୍ତର ପର୍ଯ୍ୟନ୍ତ ମଦର ପ୍ରାଧାନ୍ୟ କିପରି ବୃଦ୍ଧି ପାଇଛି ତାହା ଉଲ୍ଲେଖ କରିବା ସହିତ ନିଶାବନ୍ଦ ପାଇଁ ତାଙ୍କର ପ୍ରସ୍ତାବ ଥିଲା, "ବ୍ୟକ୍ତିଗତ ନିଶା ବ୍ୟବହାର ବନ୍ଦ କରିବା ପାଇଁ ଆଇନକୁ କାର୍ଯ୍ୟକାରୀ କରିବାକୁ ହେଲେ ଆଗେ ଶାସନ କ୍ଷେତ୍ରରେ-ଯେଉଁମାନେ ଅଛନ୍ତି, ସେମାନେ ନିଜେ ନିଶା ବ୍ୟବହାର କରିବେ

ନାହିଁ ଓ ନିଶା ପାଇଁ ସରକାରୀ ଖର୍ଚ୍ଚ ଆଦୌ ହେବ ନାହିଁ ।"... ଦେଶୀ ମଦ ପାଇଁ ମଧ୍ୟ ସେହିପରି ପରମିଟ ଓ ଲାଇସେନ୍ସ ଦେଲେ ଚୋରା ମଦକୁ ଆୟତ୍ତ କରିହେବ, ଅନ୍ୟଥା ନୁହେଁ ।... ଚୋରା ମଦ ବ୍ୟବସାୟୀମାନେ ଛାତ୍ରଙ୍କୁ ସାହାଯ୍ୟ, ମନ୍ଦିର, କ୍ଲବ ପ୍ରଭୃତିକୁ ସାହାଯ୍ୟ, ସ୍କୁଲ କଲେଜକୁ ସାହାଯ୍ୟ ଓ ରାଜନୈତିକ ଦଳକୁ ପ୍ରଚୁର ପରିମାଣରେ ସାହାଯ୍ୟ କରି ସମାଜରେ ପ୍ରତିଷ୍ଠିତ ବ୍ୟକ୍ତି ହୋଇ ବସିଛନ୍ତି । ଜନମତ ଲାଇସେନ୍ସ ବିରୋଧରେ ନ ହୋଇ ମଦ ବିରୋଧରେ ହେଉ ।

ସମାଜରୁ ସବୁ ପ୍ରକାର କୁସଂସ୍କାର ଓ ସାମାଜିକ ବ୍ୟାଧି ଦୂର କରିବା ପାଇଁ ମହତାବଙ୍କର ଜନଚେତନା ଜାଗ୍ରତ କରିବାର ସଂଗ୍ରାମର ପଟାନ୍ତର ନାହିଁ ଓ ଓଡ଼ିଶାରେ ଅନ୍ୟ କେହି ରାଜନୈତିକ ନେତା ଏ ଦିଗରେ ପ୍ରଚେଷ୍ଟା କରିବାର ଉଦାହରଣ ମଧ୍ୟ ଦେଖିବାକୁ ମିଳେ ନାହିଁ । ରାଜା ରାମମୋହନ ରାୟ, ସ୍ୱାମୀ ଦୟାନନ୍ଦ ଇତ୍ୟାଦିଙ୍କ ପରି ହୁଏତ ସେ ସମାଜ ସଂସ୍କାରକ ନଥିଲେ, କିନ୍ତୁ ସ୍ୱାଧୀନୋତ୍ତର ସମାଜରେ କୁସଂସ୍କାର ବିରୋଧରେ ସେ କରିଛନ୍ତି ଶକ୍ତ କୁଠାରାଘାତ ।

10

# ମହତାବଙ୍କ ରାଜନୈତିକ ଦର୍ଶନ

ରାଜନୀତି ସହିତ ମହତାବ ଓତପ୍ରୋତ ଭାବେ ଜଡିତ ଥିଲେ । ତାଙ୍କର ରାଜନୈତିକ ଦର୍ଶନ ସମୟକୁ ଧରି ଅଗ୍ରସର ହୋଇଥିଲେ ମଧ୍ୟ ସେ ପ୍ରଥମରୁ ଗାନ୍ଧୀ ଦର୍ଶନର ଥିଲେ ଏକାନ୍ତ ଅନୁରକ୍ତ । ରାଜନୈତିକ ଜୀବନର ବହୁମୁଖୀ କାର୍ଯ୍ୟକ୍ରମ ମଧ୍ୟରେ ସେ ଗାନ୍ଧିଜୀଙ୍କର ଅହିଂସା ମାର୍ଗରେ ଆନ୍ଦୋଳନଠାରୁ କେତେବେଳେ ହେଲେ ନିଜକୁ ଦୂରେଇ ନାହାଁନ୍ତି । ମାତ୍ର 21 ବର୍ଷ ବୟସରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଭାରତରେ ରାଜନୈତିକ ସଂଗ୍ରାମରେ ଅବତୀର୍ଣ୍ଣ ହୋଇ ସମଗ୍ର ଓଡ଼ିଶାରେ ଗାନ୍ଧୀ ଆନ୍ଦୋଳନକୁ ସଫଳ ରୂପ ଦେବାର ରୂପକାର ହେଉଛନ୍ତି ମହତାବ ।

କନିକା ଆନ୍ଦୋଳନ, ପ୍ରଜାମଣ୍ଡଳ ଦ୍ୱାରା ନୀଳଗିରି, ଢେଙ୍କାନାଳ, ତାଳଚେର ଓ ରଣପୁର ଆନ୍ଦୋଳନରେ ତାଙ୍କର ସକ୍ରିୟ ସହଯୋଗ ଏବଂ ଗାନ୍ଧିଜୀଙ୍କ ମାର୍ଗ ଦ୍ୱାରା ଏହି ଆନ୍ଦୋଳନର ପରିଚାଳନା, ଲବଣ ସତ୍ୟାଗ୍ରହ, ବ୍ୟକ୍ତିଗତ ସତ୍ୟାଗ୍ରହ, ରଚ଼ନାତ୍ମକ କାର୍ଯ୍ୟକ୍ରମରେ ଖଦୀ ଓ ଚ଼ରଖାର ପ୍ରସାର, ସତ୍ୟାଗ୍ରହ ଓ ଅହିଂସା ଦର୍ଶନ ଦ୍ୱାରା ହିଁ ପ୍ରଭାବିତ ।

ସ୍ୱାଧୀନତା ପରେ ଭାରତବର୍ଷରେ ଗଣତନ୍ତ୍ରକୁ ମଜଭୁତ କରିବା ପାଇଁ ଗଡ଼ଜାତ ରାଜ୍ୟମାନଙ୍କର ମିଶ୍ରଣ ତାଙ୍କର ସର୍ବଶ୍ରେଷ୍ଠ ଅବଦାନ । ରାଷ୍ଟ୍ରର ବିକାଶ ସହିତ ଗଣତନ୍ତ୍ର ଓତପ୍ରୋତ ଜଡ଼ିତ । 'ଜନତାର ସେବା' ଗଣତନ୍ତ୍ରର ମୁଖ୍ୟ ଆଧାର । ସେ କ୍ଷମତାରେ ଥିବାବେଳେ କ୍ଷମତା ବାହାରେ କାର୍ଯ୍ୟ କଲାବେଳେ ଗଣତନ୍ତ୍ର ପ୍ରତି ଯେତେବେଳେ ବିପଦ ଦେଖାଦେଇଛି, ନିଜର ବଳିଷ୍ଠ ସ୍ୱରକୁ ଉତ୍ତୋଳନ କରିଛନ୍ତି । ଏ କ୍ଷେତ୍ରରେ ସେ ଅତ୍ୟନ୍ତ ନିର୍ଭୀକ ଓ ସ୍ୱାଭିମାନୀ ।

ମନ୍ମଥନାଥ ଦାସ ଲେଖିଛନ୍ତି, "ସଂକୀର୍ଣ୍ଣ ସ୍ୱାର୍ଥ ପାଇଁ ପଦ, ପଦବୀ, ପଦନୀତ ପାଇଁ ଯେଉଁମାନେ ସତ୍‌ସାହସ ବିସର୍ଜନ ଦିଅନ୍ତି, ସେମାନେ ଉଚ୍ଚସ୍ଥାନରେ ରହିଲେ ମଧ୍ୟ ସେମାନଙ୍କ ଦ୍ୱାରା ଗଣତନ୍ତ୍ରର ମେରୁଦଣ୍ଡ ସବଳ ହେବା ସମ୍ଭବ ନୁହେଁ କିନ୍ତୁ ମହତାବଙ୍କ ପରି ସ୍ୱାଧୀନଚ଼େତା ବ୍ୟକ୍ତିମାନେ ଗଣତନ୍ତ୍ରର ସମ୍ମାନ ରକ୍ଷା କରିପାରିଛନ୍ତି ।" (ପ୍ରଜାତନ୍ତ୍ର ସାପ୍ତାହିକୀ, 13.1.1987)

ଗଣତନ୍ତ୍ରର ଶାସନ ବ୍ୟବସ୍ଥାରେ ନିଜମତ ପ୍ରତି ଜିଦ୍ ନଧରି ଅନ୍ୟର ମତ ପ୍ରତି ଗୁରୁତ୍ୱ ଦେଇ ଶାସନ କରିବା ଉପରେ ମହତାବ ଗୁରୁତ୍ୱ ଦେଇଛନ୍ତି । ତାଙ୍କର ରାଜନୈତିକ

ଦର୍ଶନର ମୁଖ୍ୟ ଆୟୁଧ ହୋଇଛି 'ଗାଁ ମଜଲିସ୍' ସ୍ତମ୍ଭ । ସେ ଯେଉଁଥିରେ ବିଶ୍ୱାସ କରି ଯେଉଁ ମୂଲ୍ୟବୋଧକୁ ଆଧାର କରି ରାଜନୈତିକ ଜୀବନ ଆରମ୍ଭ କରିଥିଲେ, ସେହି ମୂଲ୍ୟବୋଧର ପ୍ରତିଷ୍ଠା, ପରାକାଷ୍ଠା ଓ ପାରଦର୍ଶିତା ପ୍ରତି ଆଞ୍ଚ ଆସିବା ମାତ୍ରେ ସେ ନିଜର ନିର୍ଭୀକ ମତ ଉପସ୍ଥାପିତ କରିଛନ୍ତି । ସେଇଥିପାଇଁ ସେ ମତ ଦେଇ କହିଛନ୍ତି, "ଜନତାର ମତ ଖୁବ୍ ଜୋରରେ ପ୍ରକାଶ ନ ପାଇଲେ କୌଣସି ରାଜନୈତିକ ଦଳ ହାତରେ ଜନତାର ସ୍ୱାର୍ଥ ନିରାପଦ ନୁହେଁ ।"

ଗଣତନ୍ତ୍ର ବ୍ୟବସ୍ଥାକୁ ଭଙ୍ଗ କରି ଯେତେବେଳେ ଆପଦକାଳୀନପରିସ୍ଥିତି ଜାରି କରାଯାଇଛି ମହତାବ ତା'ବିରୋଧରେ ମତ ଦେଇ ଜେଲ ଯାଇଛନ୍ତି । 'ଗାଁ ମଜଲିସ୍' ଲୋକମାନଙ୍କର ଯାବତୀୟ ସମସ୍ୟାକୁ ପ୍ରମୁଖ ସ୍ଥାନ ଦେଇଛି ।

ଗଣତନ୍ତ୍ର ଶାସନ ବ୍ୟବସ୍ଥାରେ ସମ୍ବାଦ ପତ୍ରର ଏକ ପ୍ରମୁଖ ଭୂମିକା ରହିଛି ଏହି ବିଶ୍ୱାସରେ ମହତାବ ପ୍ରଜାତନ୍ତ୍ର ଆରମ୍ଭ କରିଥିଲେ ଏବଂ ପ୍ରଜାତନ୍ତ୍ର ସଜାଗ ପ୍ରହରୀ ଭଳି କାର୍ଯ୍ୟ କରିଛି । ଗଣତନ୍ତ୍ର ଶାସନ ବ୍ୟବସ୍ଥା ସଂପର୍କରେ ସଚେତନ ମହତାବ ଆଞ୍ଚଳିକ ତାରତମ୍ୟ ଦୂରୀକରଣ ଉପରେ ଗୁରୁତ୍ୱ ଦେବା ସହିତ ଧର୍ମନିରପେକ୍ଷତା, ସମ୍ବିଧାନ ପ୍ରତି ଅନୁରକ୍ତି ଉପରେ ସଦାସର୍ବଦା ଗୁରୁତ୍ୱ ଦେଇଛନ୍ତି ।

ଦଳଗତ ରାଜନୀତିରୁ ଅପସରି ଯାଇଥିଲେ ମଧ୍ୟ ସେ ରାଜନୀତିରୁ ଅଲଗା କେବେ ହୋଇ ନାହାଁନ୍ତି । ତାଙ୍କୁ ରାଜନୀତିର ଚାଣକ୍ୟ ବୋଲି କୁହାଯାଇଛି । ସେ ନିଜର ନିରବଚ୍ଛିନ୍ନ ରାଜନୈତିକ ଜୀବନଧାରା ମଧ୍ୟରେ ରାଜନୈତିକ ଚେତନାକୁ ରଶ୍ମିମନ୍ତ କରିଛନ୍ତି । ତାହା ହେଉଛି ଦେଶକୁ ସୁସ୍ଥ ସବଳ ଓ ସମୃଦ୍ଧ କରି ଗଢ଼ିବା ପାଇଁ ସ୍ୱପ୍ନ ଓ ସଂକଳ୍ପ । ରାଜନୀତି କ୍ଷେତ୍ରରେ ଭାଗବତ ବାଣୀ, କରି କରାଇଥାଏ ମୁହିଁ । ମୋ ବିନୁ ଅନ୍ୟଗତି ନାହିଁ ।" ତାହା ଓଡ଼ିଶା ରାଜନୀତିର ଅନେକ ମଙ୍ଗୁଆଳ ତାଙ୍କ ପ୍ରତି ପ୍ରୟୋଗ କରିଛନ୍ତି ।

ମହତାବ ନିଜ ପାଇଁ ନିଜେ ବାଛି ନେଇଥିଲେ ଗୋଟିଏ ଦର୍ଶନ । ଏବଂ ସେହି ଦର୍ଶନ ଆଦୌ ସ୍ଥିତିଶୀଳ ନଥିଲା । କାରଣ ତାଙ୍କର ମନ ଅତିଭୌତିକ ବିଦ୍ୟା ସହିତ ବନ୍ଧା ହୋଇ ନଥିଲା । ସେ କଥା ଓ କାର୍ଯ୍ୟ ମଧ୍ୟରେ ତତ୍ତ୍ୱ ଓ ତା'ର ପ୍ରୟୋଗ ସଂପର୍କରେ ଅନୁଶୀଳନ କରୁଥିଲେ । ତାଙ୍କର ଦର୍ଶନ ବହୁ ଦର୍ଶନର ସମାହାର ଥିଲା । ଜୀବନର ଦର୍ଶନ, ମନୁଷ୍ୟର ଦର୍ଶନ, ଜାତୀୟତାବାଦର ଦର୍ଶନ, ବିପ୍ଳବର ଦର୍ଶନ, ଗାନ୍ଧୀବାଦର ଦର୍ଶନ ପରସ୍ପର ପରସ୍ପର ସହିତ ଯୋଡ଼ି ହୋଇ ଯାଉଥିଲେ ।

## 11

# ସତ୍ୟବାଦୀର ସାଧକମାନଙ୍କ ସହିତ ସଂପର୍କ

ଛାତ୍ର ଜୀବନରୁ ମହତାବ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ସେ ନିଜର ଆତ୍ମଜୀବନୀରେ ଲେଖିଛନ୍ତି, "ସେତେବେଳେ ଆମେ ଶୁଣିଥିଲୁ ଯେ, ପଣ୍ଡିତ ଗୋପବନ୍ଧୁ ଦାସ କଂଗ୍ରେସ ଅଧିବେଶନରେ ଯୋଗ ଦେବା ପାଇଁ ଯାଇଛନ୍ତି ଓ ପୁରୀରେ ତତ୍‌କାଳୀନ ବିହାର ପ୍ରାଦେଶିକ କଂଗ୍ରେସ କମିଟୀ ଅଧୀନରେ ଗୋଟିଏ ଜିଲ୍ଲା କଂଗ୍ରେସ କମିଟୀ ସ୍ଥାପିତ ହୋଇଛି । ପଣ୍ଡିତ ଗୋପବନ୍ଧୁ ଦାସ ସତ୍ୟବାଦୀର ଯେଉଁ ବିଦ୍ୟାଳୟ ସ୍ଥାପନ କରିଥିଲେ, ସେ ସମ୍ବନ୍ଧରେ ବହୁକଥା ଆମ କାନକୁ ଆସୁଥାଏ । ସେହି ସ୍କୁଲର ବହୁଛାତ୍ର କଲେଜରେ ପଢୁଥାନ୍ତି । ଆମ ମେସ୍‌ରେ ସେହି ସ୍କୁଲର ଗୁଣନିଧି ସାହୁ ନାମକ ଜଣେ ଛାତ୍ର ଆମର ଭାରି ଅନ୍ତରଙ୍ଗ ବନ୍ଧୁ ଥାଆନ୍ତି । ଆଚାର୍ଯ୍ୟ ହରିହର ଓ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ଭୂୟସୀ ପ୍ରଂଶସା ଶୁଣୁଥାଉଁ । ସେତେବେଳେ ଗୋପବନ୍ଧୁଙ୍କ ଦ୍ୱାରା ସଂପାଦିତ ସାପ୍ତାହିକ 'ସମାଜ' କାଗଜ ଆମେ ପଢୁଥାଉଁ । ତା'ର ଭାଷା ଓ ଭାବ ଆମ ମନକୁ ଖୁବ୍ ଘେନୁଥାଏ । ପୁରୀର ଦୁର୍ଭିକ୍ଷ ବ୍ୟାପାରରେ ତତ୍‌କାଳୀନ ସ୍ଥାନୀୟ ସରକାରୀ କର୍ମଚାରୀମାନଙ୍କ ନିନ୍ଦନୀୟ ଅବହେଳା ସମ୍ବନ୍ଧରେ ଯେଉଁ ଆନ୍ଦୋଳନ ଗୋପବନ୍ଧୁ ଚଳାଇଥିଲେ, ତାହା ଆମ ଉପରେ ଖୁବ୍ ପ୍ରଭାବ ପକାଇଥିଲା । ମୋର ମନେ ହୁଏ, ଓଡ଼ିଶାରେ ସେବାଭାବର ପ୍ରଥମ ପ୍ରବର୍ତ୍ତକ ପଣ୍ଡିତ ଗୋପବନ୍ଧୁ ।"

1920 ମସିହା ଡିସେମ୍ବର ମାସରେ ନାଗପୁର କଂଗ୍ରେସରୁ ଫେରି ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଓଡ଼ିଶାର କଂଗ୍ରେସ ନେତାମାନେ ନିଜ ନିଜ ଅଞ୍ଚଳରେ କଂଗ୍ରେସର ଅସହଯୋଗ ଆନ୍ଦୋଳନର ପ୍ରଚାର କଲେ । ସଂଗଠିତ ଭାବରେ କାର୍ଯ୍ୟ କରିବା ପାଇଁ କଟକର ସାହେବଜାଦା ବଜାରସ୍ଥ "ସତ୍ୟବାଦୀ ମେସ୍" ଘରେ କଂଗ୍ରେସ ସଂଗଠନ ଉଦ୍ଦେଶ୍ୟରେ କର୍ମୀମାନଙ୍କର ଏକ ସଭା 1921 ମାର୍ଚ୍ଚମାସ 13 ତାରିଖରେ ବସିଥିଲା । ଏଥିରେ ଗୋପବନ୍ଧୁ ଦାସ ସଭାପତି ଓ କାର୍ଯ୍ୟକାରୀ କମିଟୀରେ ବାଲେଶ୍ୱରରୁ ଶ୍ରୀ ହରେକୃଷ୍ଣ ମହତାବ ରହିଥିଲେ । ଏହି ମେସ୍ ଘର କଂଗ୍ରେସର ମୁଖ୍ୟ ପ୍ରାଦେଶିକ କାର୍ଯ୍ୟାଳୟରେ ପରିଣତ ହେଲା ଏବଂ 'ସ୍ୱରାଜ ଆଶ୍ରମ' ନାମରେ ନାମିତ ଓ ପରିଚିତ ହେଲା ।

ନାଗପୁର କଂଗ୍ରେସଠାରେ ଗୋପବନ୍ଧୁଙ୍କ ସହିତ ମହତାବଙ୍କର ପ୍ରଥମ ପରିଚୟ ହୋଇଥିଲା । ସେ ତାଙ୍କର କୋମଳ ଓ ଅନୁକମ୍ପାଭରା ହୃଦୟ ଦେଖି ବିସ୍ମିତ ହୋଇଥିଲେ । କଂଗ୍ରେସ କମିଟୀର ସଭାପତି ହେବା ପରେ ସମଗ୍ର ଓଡ଼ିଶାର ବିଭିନ୍ନ ଅଞ୍ଚଳ ଗସ୍ତ କରି

ଗୋପବନ୍ଧୁ ଅସହଯୋଗର ବାର୍ତ୍ତା ପ୍ରଚାର କଲେ । 1921 ମସିହା ଏପ୍ରିଲ 21 ତାରିଖରେ ସମ୍ବଲପୁର ଯିବା ବାଟରେ ବାଲେଶ୍ୱରଠାରେ ଓହ୍ଲାଇ ମହତାବଙ୍କ ଦ୍ୱାରା ପ୍ରତିଷ୍ଠିତ ସ୍ୱରାଜ୍ୟ ମନ୍ଦିରରେ ରହିଥିଲେ । 22 ତାରିଖଦିନ ସକାଳେ ସ୍ୱେଚ୍ଛାସେବକ ଓ ପ୍ରଚାରକମାନଙ୍କୁ ବହୁ ଉପଦେଶ ଦେଇଥିଲେ । ଉପରବେଳା ପରମିଟ୍ ପଡ଼ିଆରେ ଏକ ସାଧାରଣ ସଭା ହୋଇଥିଲା । ପଣ୍ଡିତ ଗୋପବନ୍ଧୁ କଂଗ୍ରେସ ବାର୍ତ୍ତା, ଅରଟ ପ୍ରଚାର, ତିଳକ ସ୍ୱରାଜ୍ୟ ପାଣ୍ଠି ସମ୍ବନ୍ଧରେ ଅନେକ କଥା କହିଥିଲେ । ମୁସଲମାନଙ୍କ ସଭାରେ ଖିଲାଫତ ସମ୍ବନ୍ଧରେ ମଧ୍ୟ କହିଥିଲେ । ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟୀ ବୈଠକରେ ମଧ୍ୟ ଉଦ୍‌ବୋଧନ ଦେଇଥିଲେ ।

ଏ ସମସ୍ତ ସଭାର ଆୟୋଜକ ଥିଲେ ମହତାବ । 1922 ମସିହାରେ କନିକା ରାଜାଙ୍କର ଲୋମହର୍ଷକ ଅତ୍ୟାଚାର ବିରୋଧରେ ପ୍ରଜାମେଳ ହେଉଥାଏ । କନିକା ରାଜା ଏହାକୁ କଂଗ୍ରେସ ଲୋକମାନଙ୍କର କାମ ବୋଲି ସରକାରଙ୍କୁ ବୁଝାଇ ଦେବା ଫଳରେ ସରକାର ଲୋକମାନଙ୍କ ବିରୋଧରେ ଯାଇ ଏହାକୁ ଦମନ କରିବାକୁ ଲାଗିଲେ । କନିକା ଆନ୍ଦୋଳନର ନେତୃତ୍ୱ ନେଉଥାନ୍ତି ମହତାବ । ଗୋପବନ୍ଧୁ ଭଦ୍ରକରେ ଏକ ସମ୍ମିଳନୀରେ ଯୋଗ ଦେବାକୁ ଆସୁଥାନ୍ତି । ଭଦ୍ରକ ଷ୍ଟେସନରେ ରେଳଗାଡ଼ି ପହଞ୍ଚିବା ମାତ୍ରକେ 144 ଧାରା ଜାରି ହେଲାଯେ ଏମାନେ ଗାଡ଼ିରୁ ଓହ୍ଲାଇ ପାରିବେ ନାହିଁ । ନୋଟିସ ଜାରି ହେବା ପୂର୍ବରୁ ସେମାନେ ଗାଡ଼ିରୁ ଓହ୍ଲାଇ ପଡ଼ିଥିଲେ ଓ ମହତାବ ତାଙ୍କୁ ଭଦ୍ରକ ଆଶ୍ରମକୁ ନେଇ ଯାଇଥିଲେ ।

କନିକା ଉପରେ କୌଣସି ସଭାସମିତି ହୋଇ ପାରିବ ନାହିଁ ବୋଲି ନିଷେଧାଦେଶ ଥିବାରୁ ମହତାବ ପୋଲିସ ସାହେବ ମିଃ ହଡ଼ସନ୍‌ଙ୍କୁ ବୁଝାଇ ଏହା ଏକ ହତାବନ୍ଦୀ ସଭା ଓ ନିର୍ଦ୍ଦିଷ୍ଟ ସଂଖ୍ୟକ ସଭ୍ୟମାନଙ୍କୁ ନେଇ ହେବ ବୋଲି କହି ରାଜି କରାଇଥିଲେ । ସ୍ୱରାଜ୍ୟାଶ୍ରମ ସାମନାରେ ଥିବା ଏକ ମସ୍‌ଜିଦର ହତାରେ ସଭା ହେଲା । ଏହି ସଭାରେ ମହତାବ କନିକା ଅତ୍ୟାଚାର ସଂପର୍କରେ ଏକ ନିନ୍ଦା ପ୍ରସ୍ତାବ ଆଗତ କଲେ । ଗୋପବନ୍ଧୁଙ୍କ ଭାଷଣ ଲୋକମାନଙ୍କୁ ଭାବ ବିହ୍ୱଳ କରି ପକାଇଲା । କିନ୍ତୁ ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟୀର ସଭ୍ୟମାନେ କନିକା ବ୍ୟାପାରରେ ମହତାବଙ୍କର ପୋଲିସ ସହିତ ସଂପର୍କକୁ ନାପସନ୍ଦ କରୁଥିଲେ । ଏ ନେଇ ସଭାପରେ ଜିଲ୍ଲା କଂଗ୍ରେସ ବୈଠକରେ କର୍ମୀମାନଙ୍କ ମଧ୍ୟରେ ପ୍ରବଳ ବାକ୍ ବିତଣ୍ଡା ହୋଇ ମହତାବଙ୍କ ବିରୋଧରେ ଏକ ନିନ୍ଦା ପ୍ରସ୍ତାବ ଅଣାଯିବାର ଚେଷ୍ଟା ହେଲା । କିନ୍ତୁ ମହତାବ ଏହାକୁ ପ୍ରାଦେଶିକ କମିଟୀ ବିଚାର କରୁ ବୋଲି କହିବାରୁ ବିଷୟଟିକୁ ବିଚାର କରିବା ପାଇଁ ପ୍ରାଦେଶିକ କଂଗ୍ରେସ କମିଟୀକୁ ଦିଆଗଲା । ବାଲେଶ୍ୱରଠାରେ ପ୍ରାଦେଶିକ କଂଗ୍ରେସ କମିଟୀର ବୈଠକ ଚାଲିଲା । ବୈଠକରେ ମହତାବ ନିଜର କାର୍ଯ୍ୟକୁ ସମର୍ଥନ କରି ବକ୍ତବ୍ୟ ରଖିଲେ । ଏଥିପାଇଁ ଭୋଟ ନେବାକୁ ପଡ଼ିଲା । ମହତାବଙ୍କ ସପକ୍ଷ ଓ ବିପକ୍ଷରେ ସମାନ ଭୋଟ ହେବାରୁ ସଭାପତି ଗୋପବନ୍ଧୁ ମତ ଦେଇ କହିଲେ ଯେ ହରେକୃଷ୍ଣ ନିଜ ଆଚରଣ ଦ୍ୱାରା ପ୍ରମାଣ କରୁଛନ୍ତି ଯେ ସମସ୍ତ କାର୍ଯ୍ୟକଳାପ ମୂଳରେ ତାଙ୍କର ଉଦ୍ଦେଶ୍ୟ ସାଧୁ ଥିଲା । ତେଣୁ ନୀତିରେ କିଛି ବ୍ୟାଘାତ ଘଟିଥିଲେ ମଧ୍ୟ ତାହା ମାର୍ଜନୀୟ. ଏକଥା ଏଇଠି ମେଣ୍ଟିଗଲା ।

ଗୋପବନ୍ଧୁଙ୍କ ସମୟରୁ ହିଁ କଂଗ୍ରେସ ମଧ୍ୟରେ ଦୁଇଟି ଗୋଷ୍ଠୀ ରହିଥିଲେ । ପ୍ରଥମତଃ ଗୋପବନ୍ଧୁଙ୍କ କାର୍ଯ୍ୟଧାରା ସହିତ ମୂଳରୁ ସଂପୃକ୍ତ ଥିବା ସତ୍ୟବାଦୀ ଗୋଷ୍ଠୀ ଓ ତାଙ୍କର ଅନୁଗାମୀମାନେ ଥିଲେ ଓ ଦ୍ୱିତୀୟତଃ ଅସହଯୋଗ ଆନ୍ଦୋଳନର ଆରମ୍ଭରୁ ଗୋପବନ୍ଧୁଙ୍କ ସହିତ ସଂପୃକ୍ତ ଥିଲେ ଗୋପବନ୍ଧୁ ଚୌଧୁରୀ, ମହତାବ, ଭାଗୀରଥି ମହାପାତ୍ର, ପ୍ରାଣକୃଷ୍ଣ

ପଢ଼ିଆରୀ ପ୍ରଭୃତିଙ୍କ ପରି ଏକ ଶିକ୍ଷିତ ଯୁବଗୋଷ୍ଠୀ । ଗୋପବନ୍ଧୁ କିନ୍ତୁ କଂଗ୍ରେସ ସଂଗଠନରେ ସମଷ୍ଟିଗତ ଜୀବନ ଓ ପାରସ୍ପରିକ ସଦ୍‌ଭାବ ବଜାୟ ରଖିବାକୁ ଚେଷ୍ଟା କରି ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ନେତା ଥିଲେ । ଏବଂ ଗୋପବନ୍ଧୁଙ୍କ ସହିତ ମହତାବଙ୍କର କେତେକ ନିର୍ଦ୍ଦିଷ୍ଟ ବିଷୟରେ ମତଭେଦ ରହୁଥିଲେ ମଧ୍ୟ, ସେ ତାଙ୍କୁ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରି କାର୍ଯ୍ୟ କରୁଥିଲେ ।

ଗୋପବନ୍ଧୁ ବଞ୍ଚିଥିବା ପର୍ଯ୍ୟନ୍ତ ମହତାବଙ୍କର ତାଙ୍କ ପ୍ରତି ସମ୍ମାନ ଓ ଶ୍ରଦ୍ଧା ଥିଲା । ସତ୍ୟବାଦୀ ଗୋଷ୍ଠୀର ଅନ୍ୟମାନଙ୍କ ସହିତ ମହତାବଙ୍କର ସେପରି କିଛି ସୁସଂପର୍କ ନଥିଲା । ବିଶେଷ କରି ରାଜନୀତି କ୍ଷେତ୍ରରେ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଭାବରେ ପଣ୍ଡିତ ନୀଳକଣ୍ଠଙ୍କ ସହିତ ତାଙ୍କର ମନାନ୍ତର ଓ ମତାନ୍ତର ଲାଗିରହିଥିଲା । ଯଦିଓ 1957 ଦ୍ୱିତୀୟ ସାଧାରଣ ନିର୍ବାଚନରେ ପଣ୍ଡିତ ନୀଳକଣ୍ଠ ମହତାବଙ୍କ ଅନୁରୋଧ କ୍ରମେ ଓଡିଶା ବିଧାନ ସଭାର ବାଚସ୍ପତି ଆସନ ଅଳଙ୍କୃତ କରିଥିଲେ । 1938 ମସିହାରେ ପଣ୍ଡିତ ନୀଳକଣ୍ଠ ଉତ୍କଳ ପ୍ରାଦେଶିକ କଂଗ୍ରେସର ସଭାପତି ଥିଲେ । ଏହି ନିର୍ବାଚନରେ କଂଗ୍ରେସ 36 ଟି ଆସନ ଲାଭ କରିଥିଲା । 36 ଜଣ କଂଗ୍ରେସ ସଭ୍ୟଙ୍କ ମଧ୍ୟରୁ 21 ଜଣ ସଭ୍ୟଙ୍କ ସମର୍ଥନ ପାଇ ମଧ୍ୟ ସେ ନେତା ନିର୍ବାଚିତ ହୋଇ ପାରିନଥିଲେ ଓ ବିଶ୍ୱନାଥ ଦାସ ନେତା ହେଲେ । ତାଙ୍କୁ ନେତା ନ କରାଇବା ଗୋଷ୍ଠୀରେ ମହତାବ ଥିବା କଥା ନୀଳକଣ୍ଠଙ୍କର ବିଶ୍ୱାସ ଥିଲା ।

1947 ମସିହାରେ ନୀଳକଣ୍ଠ କେନ୍ଦ୍ର ଆସେମ୍ବ୍ଲିକୁ ଯିବାପାଇଁ ଶହେଟଙ୍କାର ଚେକ୍ ଫିସ୍ ଆକାରରେ ଦେଇ ଦରଖାସ୍ତ ପଠାଇଥିଲେ । କେତେଦିନ ପରେ ସେହି ଦରଖାସ୍ତର ଉତ୍ତର ଶ୍ରୀ ହରେକୃଷ୍ଣ ମହତାବ ଲେଖିଥିଲେ, "ଆପଣ ଆସେମ୍ବ୍ଲିକୁ ଆସିଲେ ମୁଁ ବଡ଼ ଖୁସି ହେବି ସନ୍ଦେହ ନାହିଁ । କିନ୍ତୁ ଦୁଃଖର କଥା ବଲ୍ଲଭ ଭାଇ ପଟେଲ ସଫା ମନା କରି ଲେଖିଛନ୍ତି ଆପଣଙ୍କୁ କୌଣସି ଆସେମ୍ବ୍ଲି କାଉନ୍‌ସିଲକୁ ଆସିବାକୁ ମନାକରି ଲେଖିବା ପାଇଁ । ମୋର ଚାରା କ'ଣ ! ଏଇଥିରୁ ମୋ ଅସୁବିଧା ବୁଝିବେ ।" ଏପରିକି ଫୈଜପୁରା କଂଗ୍ରେସରେ ପଣ୍ଡିତ ନୀଳକଣ୍ଠଙ୍କ ନାମ କଂଗ୍ରେସ କାର୍ଯ୍ୟକାରୀ କମିଟୀକୁ ମହାତ୍ମାଗାନ୍ଧୀଙ୍କ ଦ୍ୱାରା ପ୍ରସ୍ତାବିତ ହୋଇଥିଲେ ହେଁ ଶ୍ରୀ ହରେକୃଷ୍ଣ ମହତାବ ଅନ୍ୟଦ୍ୱାରା ପ୍ରସ୍ତାବିତ ହୋଇ କାର୍ଯ୍ୟକାରୀ କମିଟୀକୁ ଯାଇଥିଲେ ।

ବୋଧହୁଏ ରାଜନୀତିର ଏହି କାରଣ ଯୋଗୁଁ ମହତାବ ଓ ନୀଳକଣ୍ଠଙ୍କର ସୁସଂପର୍କ ନଥିବା ସୁସ୍ପଷ୍ଟ । ମହତାବ ପଣ୍ଡିତ ନୀଳକଣ୍ଠଙ୍କ ସଂପର୍କରେ ଅଗଷ୍ଟ 1983, ଝଙ୍କାରରେ ଲେଖିଥିଲେ, "ବ୍ୟକ୍ତି ବିଶେଷଙ୍କର ଜୀବନୀ ପର୍ଯ୍ୟାଲୋଚନା କଲେ ତାଙ୍କର ବ୍ୟକ୍ତିତ୍ୱର ବିଶେଷତ୍ୱ ପ୍ରତି ଦୃଷ୍ଟି ଦିଆଯିବା ଆବଶ୍ୟକ । ସେହିପରି ନୀଳକଣ୍ଠଙ୍କର ବ୍ୟକ୍ତିତ୍ୱର ବିଶେଷତ୍ୱ ହେଉଛି ସେ ଜଣେ ସାହିତ୍ୟିକ । ତାଙ୍କ ରାଜନୈତିକ ଜୀବନର ଗୁରୁତ୍ୱ ତୁଳନାରେ ତାଙ୍କର ସାହିତ୍ୟିକ ଜୀବନର ଗୁରୁତ୍ୱ ବହୁ ଗୁଣରେ ବେଶି । ଏକମାତ୍ର ନୀଳକଣ୍ଠ ଯେ ଖାରବେଳଙ୍କୁ ଓଡ଼ିଆ ସାହିତ୍ୟ ଭିତରକୁ ଆଣିଛନ୍ତି । ତାଙ୍କ ପୂର୍ବରୁ ବା ପରେ ଆଉ କେହି ତାହା କରିନାହାଁନ୍ତି । କୋଣାର୍କ ସମ୍ବନ୍ଧରେ ସାହିତ୍ୟ ସୃଷ୍ଟିହେବାରେ ଲାଗିଛି । କିନ୍ତୁ ନୀଳକଣ୍ଠ କୋଣାର୍କ ମନ୍ଦିରର ପ୍ରତିଷ୍ଠାତା ନରସିଂହ ଦେବଙ୍କୁ ସାହିତ୍ୟ କ୍ଷେତ୍ରକୁ ଆଣିଛନ୍ତି । ଆଉ କେହି ପୂର୍ବେ ବା ପରେ ତାହା କରି ନାହାଁନ୍ତି । ଏତଦ୍‌ବ୍ୟତୀତ ତାଙ୍କର ବିଭିନ୍ନ ପ୍ରବନ୍ଧ ଓ

ରଚ଼ନାର ଭାବ ଓ ଭାଷା ବର୍ତ୍ତମାନ ସୁଦ୍ଧା ଅଦ୍ୱିତୀୟ ହୋଇ ରହିଛି । ଓଡ଼ିଶାର ଦୁର୍ଭାଗ୍ୟ ଯେ ସେ ଗୋପବନ୍ଧୁଙ୍କର ଉତ୍ତରାଧିକାରୀ ହୋଇ ପାରିଲେ ନାହିଁ; ହୋଇଥିଲେ ଆଜି ସମାଜିକ ଭାବଧାରା ଆହୁରି ଉନ୍ନତ ହୋଇଥାନ୍ତା ।"

ରାଜନୀତି କ୍ଷେତ୍ରରେ ସମାସ୍କନ୍ଧ ଓ ସମଯୋଦ୍ଧା ବ୍ୟକ୍ତିବିଶେଷ ବୋଧହୁଏ ଏକତ୍ର ରହିପାରନ୍ତି ନାହିଁ । ଏବଂ ନୀଳକଣ୍ଠ ଓ ମହତାବଙ୍କ କ୍ଷେତ୍ରରେ ତାହାହିଁ ଘଟିଛି । ସତ୍ୟବାଦୀ ଗୋଷ୍ଠୀର ଅନ୍ୟ ତିନିଜଣଙ୍କ ସହ ମହତାବଙ୍କର ସେତେବେଶୀ ସଂପର୍କ ଥିବାର କୌଣସିଠାରେ ଉଲ୍ଲେଖ ନାହିଁ ।

# 12

# ଅନ୍ୟମାନଙ୍କ ଦୃଷ୍ଟିରେ

ମହତାବ ଥିଲେ ଉଚ୍ଚାଙ୍ଗ ରାଜନୀତିଜ୍ଞ ଓ ଦେଶପ୍ରେମୀ । ଏହା ଭାରତର ବହୁ କୃତବିଦ୍ୟ ରାଜନୈତିକ ନେତା, ପ୍ରଶାସକ ଓ ସାହିତ୍ୟିକମାନେ ସମସ୍ୱରରେ ଗ୍ରହଣ କରିଛନ୍ତି । ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ମହତାବଙ୍କ ନିକଟକୁ 11 ନଭେମ୍ବର 1949 ରେ ଚିଠିଲେଖି ତାଙ୍କୁ ଅଭିନନ୍ଦନ ଜଣାଇଥିଲେ ।

" A true patriot is that who loves Orissa, loves India more, a political statesman and a born leader of men Mahatab has carved out for himself a name which will live in Orissa's history."

"He has written how more than ten years ago he conceived a future for Orissa which he had the good fortune to realise in his life time ...he was the living spirit in that drama, his was the enthusiasm which triumphed over difficulties and his was the persistence which at last succeded. I am happy that I helped him to realise what was not only his dream and ambition of all oriyas. I am happier still that it was that backward province as they call it, which led the way for the rest of India to follow."

ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ଲେଖିଥିଲେ, "In the post-independence political history of Orissa, Mr. Mahtab will occupy a distinct place for his achievement."

ଲେଡି ମାଉଣ୍ଟବ୍ୟାଟେନ ମହତାବଙ୍କ ଭୂମିକାକୁ ପ୍ରଶଂସା କରି ଲେଖିଥିଲେ, "Few men in India better deserved the highest recognition from friends and admirers more than Orissa's Prime Minister Mr. Mahatab whose contribution to the freedom and progress of the whole of India as well known and widely recognised."

ପଣ୍ଡିତ ନେହେରୁ ମହତାବଙ୍କୁ ଏକ ପତ୍ରରେ ଲେଖିଥିଲେ,"A letter from you is quite a rare event and I was glad to have it.

I am happy to find that Orissa, under your able and energetic leadership

is making good progress. That is more than can be said of most other provinces."

1956 ଅକ୍ଟୋବର ପହିଲାରେ ତତ୍କାଳୀନ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ ମହତାବଙ୍କ ନିକଟକୁ ଏକ ପତ୍ର ଲେଖିଥିଲେ, "I need hardly assure you how much we have appreciated your service as the governer of the big state of Bombay. The time when you have shouldered this heavy responsibility has not been free from trouble, and gives me great pleasure to be able to congratulate you on the way in which you have discharged your heavy responsibility."

ସାଥୀ ଓ ସଂଗ୍ରାମୀ ନନ୍ଦ କିଶୋର ଦାସ କହିଛନ୍ତି, "ଯେଉଁ କେତେ ଜଣ ସାଥୀ ଏବେ ମଧ୍ୟ ଜୀବିତରହି ଜାତିକୁ ବଳିଷ୍ଠ ନେତୃତ୍ୱ ପ୍ରଦାନ କରୁଛନ୍ତି, ସେମାନଙ୍କ ମଧ୍ୟରେ ଡକ୍ଟର ହରେକୃଷ୍ଣ ମହତାବ ସର୍ବାଗ୍ରଗଣ୍ୟ । ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ଜୀବନ ବ୍ୟାପୀ ସେବା ତାଙ୍କୁ ଗଣ ହୃଦୟରେ ଯେଉଁ ସମ୍ମାନଜନକ ସ୍ଥାନ ଦେଇଛି, ସେଥିରୁ ତାଙ୍କୁ କେହି ହଟାଇ ପାରିବେ ନାହିଁ ।" ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଭାଷାରେ "ଅନ୍ୟକୁ ନେତୃତ୍ୱ ଶିକ୍ଷା ଦେବା ପାଇଁ ସେ (ମହତାବ) ଅଭିପ୍ରେତ ।"

ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଚିନ୍ତାମଣି ମିଶ୍ର ତାଙ୍କର ଅର୍ଦ୍ଧଶତାବ୍ଦୀର ଅନୁଭୂତିରେ ମହତାବଙ୍କ ସଂପର୍କରେ ଯାହା ଲେଖିଛନ୍ତି, ତାହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେ ଲେଖିଛନ୍ତି, "ଆଜି ସନ୍ଧ୍ୟାରେ ମହତାବଙ୍କ ସଙ୍ଗରେ ଦେଖା ହେଲା । ତାଙ୍କଠାରୁ ମୁଁ ଯେଉଁ ଶ୍ରଦ୍ଧା ଓ ସହାନୁଭୂତି ପାଇଥିଲି, ତାହ ଅନ୍ୟକାହାଠାରୁ ଆଜି ପର୍ଯ୍ୟନ୍ତ ପାଇ ନାହିଁ ବୋଧହୁଏ । ପଣ୍ଡିତ ନୀଳକଣ୍ଠଙ୍କ ସଙ୍ଗେ ଏକ ସମୟରେ ଖୁବ୍ ଭାବ ଥିଲା । କିନ୍ତୁ ସବୁବେଳେ ମନେ ହେଉଥିଲା, ମୁଁ ତାଙ୍କର ଉପକାରରେ ଲାଗିବି ବୋଲି ସେ ମୋ ସାଙ୍ଗେ ସଦ୍‌ଭାବ ରଖିଥିଲେ । ମୋ ଦ୍ୱାରା ତାଙ୍କର କେତେ ଲାଭ ହେଉଛି, ତାହା ତାଙ୍କ ଶ୍ରଦ୍ଧା ଅଶ୍ରଦ୍ଧାର ମାପକାଠି ଥିଲା । ଅନ୍ତତଃ ଏକଥା ବୁଝିବାକୁ ମୁଣ୍ଡ ଘୂରେଇବା ଦରକାର ହେଉନଥିଲା । ମହତାବ ଯଦିବା ସ୍ୱାର୍ଥ ଦୃଷ୍ଟିରେ ପରର ମଙ୍ଗଳ କରୁଥିବେ, ସେକଥା ସହଜରେ ଜାଣିହୁଏ ନାହିଁ । ସନ୍ଦେହ ହେଲେ ତାହା ଦୂର କରିବାକୁ ସେ ଖୁବ୍ ଚେଷ୍ଟା କରନ୍ତି । ଅନ୍ତତଃ ପକ୍ଷେ ପଣ୍ଡିତ ନୀଳକଣ୍ଠଙ୍କଠାରୁ ୟାଙ୍କର ପୁରୋଦୃଷ୍ଟି ବେଶୀ ବୋଲି ମୋର ମୋଟାମୋଟି ଧାରଣା । x x x ମୋର ପୂର୍ଣ୍ଣ ବିଶ୍ୱାସ ନୀଚ୍‌ସ୍ୱାର୍ଥ ମହତାବଙ୍କଠାରେ ନାହିଁ । ସେ ଖାଲି ନିଜ ପାଇଁ କିଛି କରନ୍ତି ନାହିଁ । x x x କେତେକଙ୍କଠାରୁ ଶୁଣିଛି, ମୁଁ ମହତାବଙ୍କର ପକ୍ଷବୋଲି ନବବାବୁ ବିମନା । ଖାଲି ଏତିକିରେ ବିମନା ହେଲେ ମୁଁ ନାଚାର । ପ୍ରକୃତରେ ମୁଁ ବିଶ୍ୱାସ କରୁଛି ମୂଳରୁ, ନବବାବୁଙ୍କ ଅପେକ୍ଷା ମହତାବ ରାଜ୍ୟର ମୁଖ୍ୟମନ୍ତ୍ରୀ ହେବାକୁ ବହୁ ଗୁଣରେ ଯୋଗ୍ୟ ।"

ବିଶିଷ୍ଟ ହାସ୍ୟ ଓ ବ୍ୟଙ୍ଗ ଲେଖକ ଫତୁରାନନ୍ଦ ମହତାବଙ୍କୁ ଓଡ଼ିଶାର ଷ୍ଟିନ୍ ବୋଲର ଭାବେ ଚିତ୍ରିତ କରି ମୁଖ୍ୟମନ୍ତ୍ରୀ ମହତାବଙ୍କ ସହିତ ତାଙ୍କର ଥରକର ସାକ୍ଷାତ ସଂପର୍କରେ ଉଲ୍ଲେଖ କରି କହିଛନ୍ତି , "ସେ ଯେତେବେଳେ ତାଙ୍କୁ ଭେଟିବାକୁ ଗଲେ ମହତାବବାବୁ ଅଧଘଣ୍ଟା ମଧ୍ୟରେ ଆସିବାକୁ କହି ବସାଇ ଦେଇ ଚାଲିଗଲେ । ପ୍ରାୟ ଦୁଇଘଣ୍ଟା ପରେ ଫେରି ତାଙ୍କ ସହିତ କଥାହୋଇ ମହତାବବାବୁ କହିଲେ, ଆପଣଙ୍କୁ କ୍ଷମା ମାଗିନେବାଟା ମୋର ପ୍ରଥମ କର୍ତ୍ତବ୍ୟ । ଜଣେ ଲେଖକକୁ ଏପରି ଭାବରେ ଅନାହାରରେ ବସାଇବା ଅତି ଗର୍ହିତ କଥା । ବାହାରେ କାମ ସାରୁ ସାରୁ ବିଳମ୍ବ ହୋଇଗଲା । ବିଳମ୍ବ ହେବ ବୋଲି

ଜାଣିଥିଲେ ମୁଁ ଆପଣଙ୍କର ସମସ୍ତ ବ୍ୟବସ୍ଥା କରିଦେଇ ଯାଇଥାନ୍ତି । ଆପଣ କିଛି ଖରାପ ଭାବିବେ ନାହିଁ । ମୁଁ ନାଚାର ।"

ମୁଁ ବହି ଦିଓଟି ଦେଲି । ଆଗ୍ରହର ସହିତ ଖୋଲି ସେ ପ୍ରତ୍ୟେକରୁ ଦି, ଚାରିଧାଡ଼ି ପଢ଼ି ଦେଲେ । ବହି ବିଷୟରେ ଦି ଚାରିକଥା ପଚାରିବା ପରେ ସେ ଜଣେ କର୍ମଚାରୀକୁ କହିଲେ, "ଦେଖିଲ କେତେ ଟଙ୍କା ଅଛି । "ସେ କହିଲା, "ଆଜ୍ଞା; କାଲିଠୁଁ ସବୁ ସରିଗଲାଣି ।" ମହତାବ କହିଲେ- ଏପରି କହିଲେ କିପରି ଚ଼ଳିବ । କେଉଁଠୁ ହେଲେ ଧାର କରି ଶହେ ଟଙ୍କା ଆଣ । କିଛି ସମୟ ପରେ ସେ ଶହେ ଟଙ୍କା ନେଇ ଆସିଲେ । ସେ ମୋ ହାତରେ ସେତକ ଧରାଇ ଦେଇ କହିଲେ, "ଆପଣଙ୍କୁ ବେଶୀ ଦେଇ ପାରିଲି ନାହିଁ ବୋଲି ମୁଁ ବଡ଼ ଲଜ୍ଜିତ । ବହି ଦିଓଟି ମୁଁ ଭଲ ଭାବରେ ପଢ଼ିବି ।"

"ମହତାବଙ୍କଠେଇଁ ଲେଖକର ଜୀବନ ବି ଥିଲା ବୋଲି ସେ ଜଣେ ଲେଖକକୁ ଆଦର କଲେ । ଯାହାଠି ତାହା ନାହିଁ, ସେ ପଚାରିବ କିଆଁ ? ଢିଙ୍କି ସ୍ୱର୍ଗକୁ ଗଲେ ଧାନ କୁଟେ । ସେମିତି ମହତାବ ଯେଉଁଠି ରୁହନ୍ତୁନା କାହିଁକି ଲେଖକମାନଙ୍କୁ ପଚାରିବେ ହିଁ ପଚାରିବେ ।"

## 13

# ମହାନ୍‌ର ମହାଯାତ୍ରା

ଜାନୁଆରୀ 2 ତାରିଖ 1987 । ମହତାବଙ୍କ କର୍ମମୟ ଜୀବନର ଅବସାନ ଘଟିଲା । ସେ ବିସ୍ମୟ ପ୍ରତିଭା ଓଡ଼ିଶାର ଅଗଣିତ ନରନାରୀଙ୍କଠାରୁ ଚିରଦିନ ପାଇଁ ବିଦାୟ ଘେନି ଗଲେ । 1986 ମସିହା ନଭେମ୍ବର 21 ତାରିଖ ଦିନ ତାଙ୍କର 88 ତମ ସ୍ୱନକ୍ଷତ୍ର ଦିବସ ପାଳିତ ହେବାର ଠିକ୍ ଚାଳିଶ ଦିନ ପରେ ମୃତ୍ୟୁକୁ ଜୟ କରି ସେ ଅମରତ୍ୱ ପ୍ରାପ୍ତି ହେଲେ । ମୃତ୍ୟୁକୁ ଆଦୌ ଭୟ କରୁନଥିବା ମହତାବ ତାଙ୍କର 77ତମ ଜନ୍ମ ଦିବସରେ 'ଜନ୍ମଦିନ' ଶୀର୍ଷକ ଏକ କବିତାରେ ଲେଖିଥିଲେ,

"ମରାଣାନ୍ତେ ଜଣାସିନା ଭଲ ଅବା ମନ୍ଦ
ଆଗରୁ ଅସ୍ଥିର କିପାଁ ଜନ୍ମଟାକୁ ଘେନି ?
ମୃତ୍ୟୁହୀନ ଏ ଜୀବନ, ଅସୀମ କାହାଣୀ ତା'ର
ମରଣତ ମାତ୍ର ଏକ ଅଧ୍ୟାୟ ସମାପ୍ତି ।"

ଗୋଟିଏ ଆଧ୍ୟାୟର ସମାପ୍ତି ସିନା ହେଲା କିନ୍ତୁ ସେ ଚିରକାଳ ଓଡ଼ିଆ ଜନଚେତନାରେ ସଜୀବ ହୋଇ ରହିଲେ । ସମଗ୍ର ଭାରତର ବିଭିନ୍ନ ପ୍ରାନ୍ତରୁ ଶୋକବାର୍ତ୍ତାମାନ ଖବର କାଗଜର ପୃଷ୍ଠା ମଣ୍ଡନକଲା ।

"ତାଙ୍କ ମୃତ୍ୟୁ ସହିତ ଏକ ମହାନ ଯୁଗର ଅବସାନ ଘଟିଲା । ଡକ୍ଟର ମହତାବ ଥିଲେ ଆଧୁନିକ ଭାରତର ଜଣେ ନିର୍ମାତା ଏବଂ ସ୍ୱାଧୀନତା ସଂଗ୍ରାମୀଙ୍କ ମଧ୍ୟରେ ଜଣେ ଅଗ୍ରଦୂତ ।'

(ରାଷ୍ଟ୍ରପତି ଜ୍ଞାନୀ ଜୈଲସିଂହ)

"ସ୍ୱାଧୀନତା ସଂଗ୍ରାମର ଗୌରବୋଜ୍ଜ୍ୱଳ ଦିନଗୁଡ଼ିକ ସହିତ ଆମର ଯୋଗସୂତ୍ର ଛିଡ଼ିଗଲା ।"

(ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ)

"ସମସ୍ତ ସମସ୍ୟା ପ୍ରତି ମାନବିକ ଦୃଷ୍ଟିଭଙ୍ଗୀ ଓ ସମାଜର ଦୁର୍ବଳ ଶ୍ରେଣୀର ଲୋକଙ୍କ ପାଇଁ ସହାନୁଭୂତି ପ୍ରକାଶ ହିଁ ହେଉଛି ଡକ୍ଟର ମହତାବଙ୍କ ପରିଚୟ ।"

(ଉପରାଷ୍ଟ୍ରପତି ଭେଙ୍କଟରମଣ)

"ମହତ୍ମାଗାନ୍ଧୀ 1920 ମସିହାରେ ଯେଉଁ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଥିଲେ, ସେଥିରେ ସ୍ୱର୍ଗୀୟ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହ ଯେଉଁ କେତେଜଣ ପ୍ରଥମେ କାର୍ଯ୍ୟ କରିବାକୁ ବାହାରିଥିଲେ, ସେମାନଙ୍କ ମଧ୍ୟରେ ଡକ୍ଟର ମହତାବ ଥିଲେ ଅଗ୍ରଣୀ । ସେ ଓଡ଼ିଶାର ଇତିହାସ ଲେଖିଯାଇଛନ୍ତି ଓ ତାଙ୍କ ଜୀବନ ମଧ୍ୟ ଓଡ଼ିଶାର ଇତିହାସ । ତାଙ୍କରି

ସଂଗ୍ରାମୀ ମନୋଭାବ ଯୁବସମାଜକୁ ଚିରଦିନ ପ୍ରେରଣା ଯୋଗାଇବ ।” (ସମାଜ ସଂପାଦକ-ରାଧାନାଥ ରଥ)

ବହୁ ବ୍ୟକ୍ତିବିଶେଷଙ୍କଠାରୁ ଆରମ୍ଭ କରି ଅନୁଷ୍ଠାନ ପର୍ଯ୍ୟନ୍ତ ଶୋକ ବ୍ୟକ୍ତ କରିବାରେ ବାଦ୍ ପଡ଼ିନଥିଲେ । ବିଶିଷ୍ଟ ସମାଜବାଦୀ ନେତା ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ କହିଥିଲେ ଡକ୍ଟର ହରେକୃଷ୍ଣ ମହତାବଙ୍କ ମୃତ୍ୟୁରେ ଏକ ବିରାଟ ବଟବୃକ୍ଷ ଉପୁଡ଼ି ପଡ଼ିଲା । ଅଗଣିତ ନରନାରୀଙ୍କର ଭରସା ଉଡ଼ିଗଲା । ଓଡ଼ିଶାର ରାଜନୈତିକ ଓ ସାଧାରଣ ଜୀବନରେ ତାଙ୍କର ଅଖଣ୍ଡ ପ୍ରଭାବ ପ୍ରତିଷ୍ଠା ମୃତ୍ୟୁ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା । ରାଜନୀତି କ୍ଷେତ୍ରରେ ସେ ଥିଲେ ଜଣେ ବିବାଦୀୟ ବ୍ୟକ୍ତିତ୍ୱ । ମାତ୍ର ସେ ଥିଲେ ସମସ୍ତଙ୍କର ଶ୍ରଦ୍ଧାଭାଜନ, ସମ୍ମାନାସ୍ପଦ । ଦେଶୀୟ ରାଜ୍ୟର ମିଶ୍ରଣ ତାଙ୍କର ଏକ ଅକ୍ଷୟ କୀର୍ତ୍ତି ଏବଂ ସେଥିଯୋଗୁଁ ଭାରତୀୟ ରାଜନୀତିରେ ସେ ଉଚ୍ଚସ୍ଥାନ ଲାଭ କରିଥିଲେ ଏବଂ ତାଙ୍କର କୀର୍ତ୍ତି ଓ ଯଶ ଭାରତ ଓ ଭାରତ ବାହାରେ ଫୁଟି ଉଠିଥିଲା । ଏପରି ବିବିଧ କର୍ମରେ କୁଶଳୀ ଓ ନିପୁଣ ବ୍ୟକ୍ତି ଭାରତରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ ।” ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଶ୍ରୀ ସୁରେନ୍ଦ୍ର ମହାନ୍ତି ଲେଖିଥିଲେ, “ଡକ୍ଟର ହରେକୃଷ୍ଣ ମହତାବଙ୍କର ବିୟୋଗରେ ଓଡ଼ିଶାର ସାଧାରଣ ଜୀବନ ତଥା ସାହିତ୍ୟ ବହୁ ପରିମାଣରେ ନିଷ୍ପ୍ରଭ ହୋଇଗଲା । ସ୍ୱାଧୀନତା ଆନ୍ଦୋଳନ ବେଳର ଜନନେତାମାନଙ୍କର କର୍ମ ସାଧନାରେ ରାଜନୀତି, ସାହିତ୍ୟ, ସାମ୍ବାଦିକତା ଓ ଜନସେବା ବା ଲୋକ ସଂଗ୍ରହ ସବୁ ଏକ ଓ ଅଭିନ୍ନ ସତ୍ତାଥିଲା । ଡକ୍ଟର ମହତାବ ସେହି ଶ୍ରେଣୀର ଜନନେତା ଥିଲେ । ତାଙ୍କର କର୍ମସାଧନାରେ ସେ ଏଥି ମଧ୍ୟରୁ ପ୍ରତ୍ୟେକଟି କ୍ଷେତ୍ରକୁ ଋଦ୍ଧିମନ୍ତ କରି ଯାଇଛନ୍ତି । ଡକ୍ଟର ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବାବେଳେ 1957 ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ସ୍ଥାପିତ ହୋଇଥିଲା । ସେ ନିଜେ ମଧ୍ୟ କିଛିଦିନ ଏହାର ସଭାପତି ପଦରେ ରହିଥିଲେ । ସାଂପ୍ରତିକ ଓଡ଼ିଆ ସାହିତ୍ୟକୁ ସାର୍ବିକ ଦୃଷ୍ଟିରୁ ଋଦ୍ଧିମନ୍ତ କରିବା ପାଇଁ ତାଙ୍କର ପ୍ରଚୁର ଆଗ୍ରହ ରହିଥିଲା । ମୋ ପରି ଲେଖକ ଓ ସେଦିନର ବହୁ ତରୁଣ ଲେଖକ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଝଙ୍କାର ସାହିତ୍ୟ ପତ୍ରିକାରେ ଆତିଥ୍ୟ ଓ ପୃଷ୍ଠପୋଷକତା ଲାଭକରି ସାହିତ୍ୟ କ୍ଷେତ୍ରରେ ଆତ୍ମପ୍ରତ୍ୟୟ ପାଇ ପାରିଥିଲେ । ବସ୍ତୁତଃ ଓଡ଼ିଶାର ଲେଖକମାନଙ୍କ ପାଇଁ ସେ ଏକ ପ୍ରକାର ମୁରବି ପରି ଥିଲେ ।”

ଓଡିଶାର ସର୍ବପ୍ରାଚୀନ ସାହିତ୍ୟ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜ ଲେଖିଥିଲେ, “ସେ ଉତ୍କଳ ସାହିତ୍ୟ ସମାଜର ବରେଣ୍ୟ ସଦସ୍ୟ ଥିଲେ । ତାଙ୍କ ବିୟୋଗରେ ଉତ୍କଳ ସାହିତ୍ୟ ସମାଜ ଜଣେ ମୁରବିଙ୍କୁ ହରାଇଲା ।”

“ଓଡ଼ିଶା ଲଳିତକଳା ଏକାଡ଼େମୀର ପ୍ରଥମ ସଭାପତି ଭାବେ ଚାରୁକଳାର ବିକାଶ କ୍ଷେତ୍ରରେ ଡକ୍ଟର ମହତାବ ଥିଲେ ଜଣେ ପଥ ପ୍ରଦର୍ଶକ ।” ଏହା ଥିଲା ଓଡ଼ିଶା ଲଳିତ କଳା ଏକାଡ଼େମୀର ସଭାପତି ଶ୍ରୀ ଅସୀତ ମୁଖାର୍ଜୀଙ୍କର ବକ୍ତବ୍ୟ ।

ସମାଜବାଦୀ ନେତା ଶ୍ରୀ ବାଙ୍କ ବିହାରୀ ଦାସ ଲୁହର ଶ୍ରଦ୍ଧାଞ୍ଜଳି ଜଣାଇ ଲେଖିଥିଲେ, “ସେ ଇତିହାସର ପୁରୁଷ । ସେ ଦୃଷ୍ଟିରୁ କେବଳ ଇତିହାସର ସୃଷ୍ଟି ନୁହଁନ୍ତି, ଇତିହାସର ଶିଳ୍ପୀ । ସେ ଜଣେ ମଣିଷ ସୃଷ୍ଟି କରିବାର ଯନ୍ତ୍ର । ଯନ୍ତ୍ର ସିନା ଜଡ଼ବସ୍ତୁ ତିଆରି କରେ, କିନ୍ତୁ ଇତିହାସରେ ବହୁତ କମ୍ ମହାନ ବ୍ୟକ୍ତି ମଣିଷ ସୃଷ୍ଟି କରନ୍ତି । କିଏ ନ ଜାଣେ ଜଣେ ବ୍ୟକ୍ତି ଓଡ଼ିଶାରେ ଚାରି ଚାରିଜଣ ମୁଖ୍ୟମନ୍ତ୍ରୀଙ୍କୁ ମୂଳରୁ ତିଆରିକରି ସିଡ଼ିର ଶେଷ ପର୍ଯ୍ୟନ୍ତ

ହେଉ ବା ବହୁଦୂର ପର୍ଯ୍ୟନ୍ତ ହେଉ ସେ ଚ଼ହ୍ଲାଇ ନେଇ ନାହାଁନ୍ତି । x x x ସେଥିପାଇଁ କେତେକ କହିଲେ, ଓଡ଼ିଶାରେ ଏକ ମହାଦ୍ରୁମ ଉପୁଡ଼ି ପଡ଼ିଲା । ଏହା ଆଦୌ ଅତ୍ୟୁକ୍ତି ନୁହେଁ । କିନ୍ତୁ ଏହି ମହାଦ୍ରୁମର ଏକ ବିଶିଷ୍ଟତା ଥିଲା । ମହାଦ୍ରୁମ ମାଟିର ସବୁସାର ଗ୍ରହଣ କରି ମହାନ ହୁଏ । ନିଜର ବ୍ୟାପକତା ଫଳରେ ଭୂଇଁରେ ସୂର୍ଯ୍ୟାଲୋକ ସ୍ପର୍ଶ କରାଇବାକୁ ଦିଏନା, ଘାସ ମଧ୍ୟ କଅଁଳେନା । କିନ୍ତୁ ମହତାବଙ୍କ ଭଳି ମହାଦ୍ରୁମର ଛାଇରେ ବହୁ ଦ୍ରୁମ ମଧ୍ୟ ମୁଣ୍ଡଟେକି ଠିଆହୋଇ ପାରିଲେ । ଏକଥା କେହି ଅସ୍ୱୀକାର କରିପାରିବେ ନାହିଁ । ସେଥିପାଇଁ ସେ ମହାନ, ସେଥିପାଇଁ ତ ସମାଜର ସବୁ କ୍ଷେତ୍ରର ଲୋକେ ତାଙ୍କୁ ଝୁରୁଛନ୍ତି ଓ ଝୁରିବେ ।"

ଓଡ଼ିଆ ସାହିତ୍ୟର ପ୍ରଖ୍ୟାତ ସ୍ରଷ୍ଟା ସଚ୍ଚିଦାନନ୍ଦ ରାଉତରାୟଙ୍କ ମତରେ, " ଜଣେ ସାହିତ୍ୟ ସ୍ରଷ୍ଟା ଓ ସାହିତ୍ୟ ପ୍ରଯୋଜକ ଭାବେ ଡକ୍ଟର ମହତାବଙ୍କର ବହୁମୁଖୀ କର୍ମ ଧାରା ଓ ଜାଗ୍ରତ ପ୍ରତିଭା ସାହିତ୍ୟ କ୍ଷେତ୍ରରେ ତାଙ୍କର ଯେଉଁ ଚ଼ିତ୍ର ପ୍ରତିମା ତିଆରି କରିଥାଏ, ସମୟର ମାନଚ଼ିତ୍ର ଓ ମାନଦଣ୍ଡରେ ତାହାଯେ ଅଧିକ ସ୍ଥାୟୀ, ଏଥିରେ କୌଣସି ସନ୍ଦେହର ଅବକାଶ ନାହିଁ ।"

ବିଶିଷ୍ଟ କବି ଶ୍ରୀ ରମାକାନ୍ତ ରଥ ତାଙ୍କର ବ୍ୟକ୍ତିତ୍ୱକୁ ସ୍ଥିତପ୍ରଜ୍ଞ ଭାବେ ଉଲ୍ଲେଖ କରିଛନ୍ତି । "ସ୍ଥିତପ୍ରଜ୍ଞ ଭଳି ଗୋଟିଏ ଭୂମିକାନ୍ତରେ, ଅନାୟସରେ ଏବଂ ବାରମ୍ବାର ଅବତରଣ କରିବାରେ ତାଙ୍କର ପାରଙ୍ଗମତାର ପଟାନ୍ତର ନାହିଁ ଏବଂ ମୋପରି ଅସଂଖ୍ୟ ଲୋକ ବଞ୍ଚିଥିବା ଯାଏଁ ତାଙ୍କୁ କୃତଜ୍ଞତାର ସହିତ ସ୍ମରଣ କରୁଥିବେ ।"

ସାମ୍ବାଦିକ ଶ୍ରୀ ଜାକୀର ଅଖତାର ତାଙ୍କୁ 'ଏ ଯୁଗର ଦୁର୍ଲ୍ଲଭ ପୁରୁଷ' କହିଥିବା ବେଳେ ନବଭାରତ ଟାଇମସ୍‌ରେ ପ୍ରକାଶ ପାଇଥିଲା, "25 ବର୍ଷକି ଉମ୍ରମେ ଡାଃ ମହତାବନେ ରାଷ୍ଟ୍ରୀୟ ପହଚାନ ବନା ଲୀ ଥୀ ।"

ଶୋକୋଚ୍ଛ୍ୱାସ ଓ ହୃଦୟର ଆବେଗର ଶେଷ ନାହିଁ ଭାଷାରେ, ବକ୍ତବ୍ୟରେ । ଏବଂ ପରିଶେଷରେ ତେଜ ଓ ସତେଜର ମହାମିଳନ ଘଟିଲା ।

"ସାଳନ୍ଦୀର ଦିଗ୍‌ବଳୟରେ ଚତୁର୍ଥୀର ଚ଼ନ୍ଦ୍ର ପ୍ରତୀକ୍ଷିତ ରାମମନ୍ଦିରର ଚୂଡ଼ାରେ ଅସ୍ତାୟମାନ ସୂର୍ଯ୍ୟର ଶେଷ ଝଲକ । ୪୭ ଜାନୁଆରୀ ତିନି ତାରିଖ ସଂଧ୍ୟା ଛଅ ଉପକଣ୍ଠରେ ଉପନୀତ । ବାଜି ଉଠିଲା ସଶସ୍ତ୍ର ବାହିନୀର ବିଗୁଲ . . . , ଅସ୍ତ୍ରନତ ମୁଖ୍ୟବାହିନୀର ଜୱାନ ଓ ଅଫିସରଙ୍କର ଶେଷ ଅଭିବାଦନ, "ହରିନାମ ସତ୍ୟହେ, ରାମନାମ ସତ୍ୟହେ"- ମହତାବଜୀ ଅମର ରହେ- ପ୍ରକମ୍ପିତ ହୋଇ ଉଠିଲା । ଅଗରପଡ଼ା କର୍ମମନ୍ଦିର ପରିସର । ଉଦ୍‌ବେଳିତ ହୋଇଉଠିଲା ହଜାର ହଜାର ନୟନର ଅଶ୍ରୁସାଗର । ହାତରେ ମୁଖାଗ୍ନି ଧରି ଆଗେଇ ଯାଉଥିଲେ ପୁତ୍ର ଭର୍ତ୍ତୃହରି ମହତାବ । ଚ଼ିତାସନରେ ଚିରନିଦ୍ରାରେ ଶାୟିତ ନୂତନ ଓଡ଼ିଶାର ଭୀଷ୍ମପିତାମହ ମହତାବଜୀଙ୍କ ଶାନ୍ତ ନିଷ୍ଟଳ ମୁଖମଣ୍ଡଳ ଉପରୁ ସାୟାହ୍ନ ସୂର୍ଯ୍ୟର ଶେଷ ଝଲକ ଅପସରି ଯିବା ସଙ୍ଗେ ସଙ୍ଗେ ମୁଖାଗ୍ନି ପ୍ରଜ୍ୱଳିତ ହୋଇଉଠିଲା । . . . ଆଉ ତା ସଙ୍ଗେ ସଙ୍ଗେ ଜଳି ଉଠିଲା ଏହି କର୍ମମନ୍ଦିରର କର୍ମର ଯାତ୍ରା ଆରମ୍ଭ କରିଥିବା ଇତିହାସ ପୁରୁଷ କର୍ମଯୋଗୀ ଡକ୍ଟର ହରେକୃଷ୍ଣ ମହତାବଙ୍କର ଭୌତିକ ମର ଶରୀର । ଶେଷ . . . ସବୁ ଶେଷ ହୋଇଗଲା । ଅଗ୍ନିର ତେଜୀୟାନ ପୁରୁଷକାରର ନଶ୍ୱର ବିଭୂତି ଖାଲି କାରୁଣ୍ୟ ଓ ହାୟ । ମହତାବର କ୍ରନ୍ଦନ ଭିତରେ ଶୀତଳ ସଂଧ୍ୟା ଶୀତଳତର ହୋଇ ଆସୁଥିଲା ।"

# 14

# ଉପସଂହାର

ମହତାବଙ୍କର ବ୍ୟକ୍ତିତ୍ୱର ଆକଳନ ନକଲେ ତାଙ୍କର ଜୀବନୀ ପୂର୍ଣ୍ଣାଙ୍ଗ ହେବ ନାହିଁ । ତାଙ୍କ ଜୀବନରେ ସେ ବହୁ ଘାତ ପ୍ରତିଘାତ ମଧ୍ୟ ଦେଇ ଗତି କରିଛନ୍ତି କିନ୍ତୁ କେବେ ହେଲେ ଦବି ଯାଇ ନାହାଁନ୍ତି କିମ୍ବା ଜୀବନ ପ୍ରତି ବୀତସ୍ପୃହ ହୋଇ ନାହାଁନ୍ତି । ସ୍ୱାମୀ ବିବେକାନନ୍ଦଙ୍କ ଦର୍ଶନ ଓ ଆହ୍ୱାନ ଦ୍ୱାରା ପ୍ରଭାବିତ ହୋଇ ଛାତ୍ର ଜୀବନରୁ ସେ ଦେଶର ସେବା ପାଇଁ ନିଜକୁ ଉତ୍ସର୍ଗ କରିଛନ୍ତି । ତ୍ୟାଗ ଓ ସେବା ତାଙ୍କ ଜୀବନର ହୋଇଛି ମହାମନ୍ତ୍ର । ସ୍ୱାଧୀନତା ସଂଗ୍ରାମରେ ନିଜେ ଝାସ ଦେବା ବେଳେ ପରିବାରକୁ ମଧ୍ୟ ସେଥିରେ ସାମିଲ କରିଛନ୍ତି । ତାଙ୍କର ରାଜନୈତିକ ଜୀବନରେ ଉତ୍‌ଥାନ, ପତନ, ରାଜଭୋଗ ଓ ପରାଭବର ସ୍ୱାଦକୁ ସେ ନୀଳକଣ୍ଠ ବିଷପାନ କରିବା ପରି ପାନ କରିଯାଇଛନ୍ତି ।

ସ୍ୱାଧୀନତା ସଂଗ୍ରାମରେ ସେ ଗାନ୍ଧିଜୀଙ୍କୁ ନିଜର ନେତା ଭାବରେ ଗ୍ରହଣ କରି ଗାନ୍ଧୀ ନୀତି ଦ୍ୱାରା, ଗାନ୍ଧିଜୀଙ୍କ ଆଦର୍ଶ ଦ୍ୱାରା ପରିଚାଳିତ ହେବାକୁ ଚେଷ୍ଟା କରିଛନ୍ତି । ରାଷ୍ଟ୍ର ତାଙ୍କ ନିକଟରେ ସବୁବେଳେ ମୁଖ୍ୟ ସ୍ଥାନ ଗ୍ରହଣ କରିଛି । ଛାତ୍ର ଜୀବନରୁ ଅକୁଣ୍ଠ ପରିଶ୍ରମ, ଅଧ୍ୟବସାୟ ପ୍ରତି ଆଗ୍ରହ, ଦେଶସେବା ପାଇଁ ଐକାନ୍ତିକ ମନୋବଳ ହେତୁ ସେ ସାହିତ୍ୟ ଓ ଇତିହାସ ପ୍ରତି ନିଜର ଆଗ୍ରହ ପ୍ରକାଶ କରି ତାହାକୁ ସାକାର ରୂପ ଦେଇ ଯଶସ୍ୱୀ ସାହିତ୍ୟ ସ୍ରଷ୍ଟା ଓ ଐତିହାସିକ ହେବାର ଗୌରବ ମଧ୍ୟ ଅର୍ଜନ କରିଛନ୍ତି ।

ଓଡ଼ିଶାକୁ ଭାରତ ମଧ୍ୟରେ ପରିଚିତ କରାଇବା ଓ ଏକ ଉନ୍ନତ ରାଜ୍ୟ ଭାବରେ ତିଆରି କରାଇବା ପାଇଁ ତାଙ୍କର ପଦକ୍ଷେପ, ଏ ଜାତି ଇତିହାସରେ ଚିରଦିନ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିବ । ରାଜନୈତିକ କ୍ଷମତାକୁ ସେ ରାଷ୍ଟ୍ରଗଠନରେ ବିନଯୋଗ କରିଛନ୍ତି । କ୍ଷମତା ତାଙ୍କୁ ନିୟନ୍ତ୍ରଣ କରିନାହିଁ; ସେ କ୍ଷମତାକୁ ନିୟନ୍ତ୍ରଣ କରି ସୁସ୍ଥ ଗଣତାନ୍ତ୍ରିକ ପରମ୍ପରା ଓ ଲୋକଶାସନ ପ୍ରତିଷ୍ଠା କରିବାରେ ବ୍ରତୀ ହୋଇଛନ୍ତି । ରାଜନୈତିକ କ୍ଷେତ୍ରରେ ଗଣତନ୍ତ୍ରକୁ ଶକ୍ତ, ସୁଦୃଢ଼ ଓ ଲୋକାଭିମୁଖୀ କରିବା ପାଇଁ ଯେତେ ପ୍ରକାର ପରୀକ୍ଷା ନିରୀକ୍ଷା କରାଯାଇପାରେ, ତାହା ସେ କରିବାକୁ ପଶ୍ଚାତ୍‌ପଦ ବା ପରାଙ୍ମୁଖ ହୋଇନାହାଁନ୍ତି । ସେଥିପାଇଁ ତାଙ୍କୁ ଅନେକ କଷ୍ଟ ସ୍ୱୀକାର କରିବାକୁ ପଡ଼ିଛି ।

ସମାଜବ୍ୟବସ୍ଥାରେ ଲାଗି ଯାଉଥିବା ଘୁଣ ପ୍ରତି ସଚେତନତା ସୃଷ୍ଟି କରି ଲୋକମାନଙ୍କ ମୁହଁରେ ଭାଷା, କର୍ମରେ ଶକ୍ତି ଓ ମନରେ ସଂଗ୍ରାମ ମନୋଭାବ ଜାଗ୍ରତ କରିବା ପାଇଁ ସେ 'ପ୍ରଜାତନ୍ତ୍ର' ଖବର କାଗଜ ପ୍ରକାଶ କରି ଗଣତନ୍ତ୍ରରେ ନିର୍ଭୀକ, ନିରପେକ୍ଷ ସମ୍ବାଦ ଉପରେ

ଗୁରୁତ୍ୱ ଦେଇଛନ୍ତି । ସାହିତ୍ୟିକ, କବି, ଲେଖକ, ନାଟ୍ୟକାର, କଳାକାରମାନଙ୍କୁ ଦେଶ ଗଠନରେ ନିଜ ନିଜର ବୈଶିଷ୍ଟ୍ୟତା ପ୍ରତିପାଦନ କରିବାର ଗୌରବ ପ୍ରଦାନ କରିବା ପାଇଁ ସେ ଆରମ୍ଭ କରିଛନ୍ତି 'ବିଷୁବ ମିଳନ' ପରି ଏକ ସାରସ୍ୱତ ମଞ୍ଚ ।

ମହତାବ ସ୍ୱାଧୀନତା ସଂଗ୍ରାମୀ, ରାଷ୍ଟ୍ରନୀତିଜ୍ଞ, ରାଷ୍ଟ୍ରନିର୍ମାଣକାରୀ, ସାହିତ୍ୟିକ, ଐତିହାସିକ, ସମାଜସଂସ୍କାରକ ଏବଂ ସର୍ବୋପରି ସାଧାରଣ ମଣିଷର ବନ୍ଧୁ, ସଖା, ସହଚର ଓ ମୁରବି ଭାବେ ସର୍ବବ୍ୟାପୀ ଗ୍ରହଣୀୟ ଓ ସ୍ୱୀକୃତ ।

ଅହିଂସାରେ ଅଖଣ୍ଡ ଓ ଅକୁଣ୍ଠ ବିଶ୍ୱାସ ରଖୁଥିବା ମହତାବ ସାଂପ୍ରଦାୟିକ ସଂପ୍ରୀତି, ଗଣତନ୍ତ୍ରବାଦ, କୁସଂସ୍କାରର ବିଲୋପ ପାଇଁ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ଅହରହ ସଂଗ୍ରାମ କରିଛନ୍ତି ।

ତାଙ୍କ ସଂଗ୍ରାମର ଦୁଇଟି ଅସ୍ତ୍ର ଅସି ଓ ମସି । ଅହିଂସା ମାଧ୍ୟମରେ ଜନଚେତନା ଜାଗ୍ରତ କରି ସଂଗ୍ରାମ କରିବା ଓ ସାମାଜିକ ପରିବର୍ତ୍ତନରେ ନୂଆ ରୂପ ଆଣିବାକୁ ସେ ସଫଳଭାବେ ପ୍ରୟୋଗ କରିଛନ୍ତି ଏବଂ ସେଥିରେ ତାଙ୍କର ବଳିଷ୍ଠ ଲେଖନୀ ତାଙ୍କୁ ସାହାଯ୍ୟ କରିଛି । ସେ ତାଙ୍କର ଲେଖନୀକୁ ସାମାଜିକ ପରିବର୍ତ୍ତନ ପାଇଁ, ସୁସଂହତ ସମାଜ ବ୍ୟବସ୍ଥା ପାଇଁ ଓ ସାହିତ୍ୟ, ଇତିହାସ ଏବଂ ସଂସ୍କୃତି ମାଧ୍ୟମରେ ଭାରତୀୟ ସଭ୍ୟତା, ଉତ୍କଳୀୟ ସଭ୍ୟତା ଓ ପରମ୍ପରାକୁ ମଜଭୁତ କରିବା ପାଇଁ ପ୍ରୟୋଗ କରିଛନ୍ତି । ମହତାବ ନିର୍ଭୀକ, ସ୍ପଷ୍ଟବାଦୀ, ଉଚ୍ଚ ମୂଲ୍ୟବୋଧର ପ୍ରତିଷ୍ଠାତା । ସେ ଗଣତନ୍ତ୍ର ପ୍ରେମୀ । ସେ ସାରସ୍ୱତ ସାଧକ । ସାମାଜିକ ଅଙ୍ଗୀକାରବଦ୍ଧ ସ୍ରଷ୍ଟା ମଧ୍ୟ । ସେ ନୂତନ ଓଡ଼ିଶାକୁ ନିର୍ମାଣ କରିଛନ୍ତି, ପୁଷ୍ଟ କରିଛନ୍ତି ଏବଂ ତା'ର ଧମନୀରେ ସଂସ୍କୃତିର ଧାରାକୁ ଅବିରତ ପ୍ରବାହିତ ହେବାର ମାର୍ଗ ମଧ୍ୟ ଉନ୍ମୋଚନ କରିଛନ୍ତି । ସେ ନିଜମାଟିକୁ, ରାଜ୍ୟକୁ ଓ ଦେଶକୁ ଗଭୀର ଭାବରେ ଭଲପାଇଛନ୍ତି । ସେହି ଭଲପାଇବାର ଗଭୀରତା ହିଁ ତାଙ୍କୁ ମହାନ ଜନନାୟକ, ରାଷ୍ଟ୍ରନାୟକ, ସଂସ୍କୃତିର ବାହକ ହେବାର ଗୌରବ ପ୍ରଦାନ କରିଛି ।

ମହତାବ କେନ୍ଦ୍ରମନ୍ତ୍ରୀ, ରାଜ୍ୟପାଳ ଓ ମୁଖ୍ୟମନ୍ତ୍ରୀ ହୋଇଛନ୍ତି । କଂଗ୍ରେସ ଦଳ ଗଠନରେ ସ୍ୱାଧୀନତା ସଂଗ୍ରାମ ବେଳୁ ନିଜକୁ ନିୟୋଜିତ କରି ସ୍ୱାଧୀନତା ପରେ କଂଗ୍ରେସ ପରିତ୍ୟାଗ କରି ନୂଆ ଦଳ ଗଠନ କରିଛନ୍ତି । କଂଗ୍ରେସରୁ ଦଳ ବିରୋଧୀ କାର୍ଯ୍ୟରେ ବହିଷ୍କାର ମଧ୍ୟ ହୋଇଛନ୍ତି । ପ୍ରଥମ ମିଳିତ ମନ୍ତ୍ରୀମଣ୍ଡଳ ଗଠନ କରି ଇତିହାସ ସୃଷ୍ଟି କରିଛନ୍ତି । ସେ ସ୍ୱାଧୀନତା ବେଳେ ଜେଲ ଯାଇଥିଲେ, ସ୍ୱାଧୀନତା ପରେ ଇମରଜେନସୀ ସମୟରେ ଜେଲ ବରଣ କରିଛନ୍ତି । ରାଜନୈତିକ ଜୀବନରେ ସେ ସୁଖ ଅପେକ୍ଷା ଦୁଃଖକୁ ବେଶି ଗ୍ରହଣ କରିଛନ୍ତି ।

ତାଙ୍କର 'ସାମାଜିକ ଜୀବନ' ଦିଗନ୍ତବ୍ୟାପୀ ପ୍ରସାରିତ । ପ୍ରଜାତନ୍ତ୍ର ପ୍ରଚାର ସମିତି ଠାରୁ ଆରମ୍ଭ କରି ସେ ବହୁ ଅନୁଷ୍ଠାନ ଗଢ଼ିଛନ୍ତି । କଳା, ସାହିତ୍ୟ, ସଂସ୍କୃତି, କ୍ରୀଡ଼ାଠାରୁ ଆରମ୍ଭକରି ରାଜ୍ୟର ବିକାଶ ପାଇଁ ଯାହା ଆବଶ୍ୟକ, ତାହା ତାଙ୍କ ଦୃଷ୍ଟିକୁ ଏଡ଼ାଇ ପାରିନାହିଁ । ସାମାଜିକ ଜୀବନର ବାସ୍ତବତା ହେଉଛି ଜନ ସଚେତନତା ଜାଗ୍ରତ କରିବା । ଏହା କରିବାରେ ସେ ନିଜର ସିଦ୍ଧହସ୍ତତା ଓ ମାନବିକତାର ପୂର୍ଣ୍ଣପରିଚୟ ଦେଇଛନ୍ତି ।

ତାଙ୍କର ସାହିତ୍ୟିକ ଓ ସାଂସ୍କୃତିକ ଜୀବନର କଳନା କରିବା ସାଧ୍ୟାତୀତ । ପୁରସ୍କାର, ଉପଢୌକନ, ମାନପତ୍ର ତାଙ୍କ ପଛରେ ଗୋଡ଼ାଇଛି । ୧୯୫୩ ମସିହାରେ 'ଗାଁ ମଜଲିସ୍'

ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ତରଫରୁ ପୁରସ୍କାର ତାଙ୍କୁ ଏକ ବିଶେଷ ଉତ୍ସବରେ ଭୁବନେଶ୍ୱର ଠାରେ ପ୍ରଦାନ କରାଯାଇଥିଲା । ସେ ଓଡ଼ିଶାର ଇତିହାସ ରଚ଼ନା କରି ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ସମ୍ମାନ ସୂଚ଼କ ପି. ଏଚ.ଡ଼ି. ଉତ୍କଳ ବିଶ୍ୱବିଦ୍ୟାଳୟରୁ 1955 ମସିହାରେ ଡି.ଲିଟ୍ ଓ ସାଗର ବିଶ୍ୱବିଦ୍ୟାଳୟରୁ ପି.ଏଚ଼.ଡ଼ି ଉପାଧି ପାଇଛନ୍ତି । ସେ ନିଜେ ସ୍ରଷ୍ଟା ହୋଇ ସାହିତ୍ୟ ସୃଷ୍ଟି କରିବା ସହିତ ସାହିତ୍ୟିକ ସୃଷ୍ଟି କରିଛନ୍ତି ।

ମହତାବ ପ୍ରଶଂସା ପାଇଛନ୍ତି, ନିନ୍ଦା ମଧ୍ୟ ପାଇଛନ୍ତି । ନିନ୍ଦା, ପ୍ରଶଂସା, ପୁରସ୍କାର, ତିରସ୍କାର ମଧ୍ୟରେ ତାଙ୍କର ବ୍ୟକ୍ତିତ୍ୱ ମଳିନ ପଡ଼ିଯାଇ ନାହିଁ । ବରଂ ତାହା ବେଶୀ ବେଶୀ ଉଜ୍ଜ୍ୱଳ ହୋଇ ଉଠିଛି ।

ମହତାବ ବାସ୍ତବରେ ହୋଇ ପାରିଛନ୍ତି ବିବେକାନନ୍ଦ, ଗାନ୍ଧି ଓ ଗୋପବନ୍ଧୁଙ୍କର ପ୍ରକୃତ ଅନୁଗାମୀ ।

# ପରିଶିଷ୍ଟ

**(କ) ମହତାବଙ୍କ ଜୀବନର କ୍ରମିକ ଘଟଣାବଳୀ :**

| | |
|---|---|
| ଜନ୍ମ | 21 ନଭେମ୍ବର 1899 |
| ମୃତ୍ୟୁ | 7 ଜାନୁଆରୀ 1987 |
| ଜନ୍ମସ୍ଥାନ | ଅଗରପଡ଼ା, ଭଦ୍ରକ |
| ପିତା | କୃଷ୍ଣଚନ୍ଦ୍ର ଦାସ |
| ମାତା | ତୋହଫା ବିବି |
| ପୋଷ୍ୟ ପିତା | ଜଗନ୍ନାଥ ମହତାବ |
| ପତ୍ନୀ | ସୁଭଦ୍ରା ଦେବୀ |
| ପତ୍ନୀ ବିୟୋଗ | 1978 |
| ଶିକ୍ଷା | 1917 - ମାଟ୍ରିକ- ଭଦ୍ରକ ହାଇସ୍କୁଲ |
| | 1919 - ଆଇ ଏସସି - ରେଭେନସା କଲେଜ |
| | ବି.ଏ. ପଢ଼ିବା ବେଳେ ସକ୍ରିୟ ରାଜନୀତିରେ ଯୋଗଦାନ |
| 1920 | ନାଗପୁର କଂଗ୍ରେସ ଅଧିବେଶନରେ ଯୋଗଦାନ |
| 1921 | ଅସହଯୋଗ ଆନ୍ଦୋଳନରେ ଯୋଗଦେଇ କାରାବରଣ |
| 1924 | ବାଲେଶ୍ୱର ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ ଭାବେ ନିର୍ବାଚିତ |
| 1926 | ବିହାର - ଓଡ଼ିଶା କାଉନସିଲକୁ ସଦସ୍ୟ ନିର୍ବାଚିତ |
| 1929 | ମହତାବଙ୍କ ସଭାପତିତ୍ୱରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟୀ ଗଠନ । |
| 1930 | ଜାତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟୀକୁ ନିମନ୍ତ୍ରିତ ସଭ୍ୟ<br>ଲବଣ ସତ୍ୟାଗ୍ରହରେ ଅଂଶ ଗ୍ରହଣ ଓ ଜେଲ |
| 1934 | ଗାନ୍ଧିଜୀଙ୍କ ସହିତ ପୁରୀରୁ ଭଦ୍ରକ ପର୍ଯ୍ୟନ୍ତ ପଦଯାତ୍ରା |
| 1937 | ଉତ୍କଳ ପ୍ରଦେଶ କଂଗ୍ରେସ କମିଟୀର ସଭାପତି |
| 1938 | ଗଡ଼ଜାତ ଅନୁସଂଧାନ କମିଟୀର ଅଧ୍ୟକ୍ଷ |
| 1939 | ବେଜେଲଗେଟ୍ ହତ୍ୟାକାଣ୍ଡ ମକଦମାରେ ଅଭିଯୁକ୍ତ ଓ ସେଥିରୁ ମୁକ୍ତ |

| | |
|---|---|
| 1940 | ବ୍ୟକ୍ତିଗତ ସତ୍ୟାଗ୍ରହ ଓ କାରାବରଣ |
| 1942 | 'ଭାରତ ଛାଡ଼' ଆନ୍ଦୋଳନରେ ଯୋଗ ଦେଇ କାରାବରଣ ଓ ଅହମ୍ମଦନଗର ଫୋର୍ଟରେ 1945 ପର୍ଯ୍ୟନ୍ତ ବନ୍ଦୀ; 'ଓଡ଼ିଶା ଇତିହାସ' ରଚନା । |
| 1945 | ସମ୍ବଲପୁର ଜେଲକୁ ସ୍ଥାନାନ୍ତର ଓ କାରାମୁକ୍ତି |
| 1946-50 | ଓଡ଼ିଶାର ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ |
| 1948 ଡିସେମ୍ବର 15 | ଓଡ଼ିଶା ସହିତ ଗଡ଼ଜାତର ମିଶ୍ରଣ |
| 1950-1954 | କେନ୍ଦ୍ରରେ ଶିଳ୍ପ ଓ ବାଣିଜ୍ୟ ବିଭାଗର କ୍ୟାବିନେଟ ମନ୍ତ୍ରୀ |
| 1952-54 | କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ସେକ୍ରେଟାରୀ ଜେନେରାଲ |
| 1955-56 | ବମ୍ବେର ରାଜ୍ୟପାଳ |
| 1956-61 | ଓଡ଼ିଶାର ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ |
| 1962-67 | ଲୋକସଭା ସଦସ୍ୟ- ଲୋକସଭା ପାର୍ଲାମେଣ୍ଟ ଦଳର ଉପଦଳପତି |
| 1967 | କଂଗ୍ରେସ ତ୍ୟାଗ ଓ ଜନ କଂଗ୍ରେସ ଗଠନ |
| 1971 | ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ |
| 1974 | ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ |
| 1975 | ଜରୁରୀକାଳୀନ ପରିସ୍ଥିତିକୁ ବିରୋଧ କରି କାରାବରଣ |
| 1983 | 'ଗାଁ ମଜଲିସ୍' ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ । |

**(ଖ) ମହତାବଙ୍କ ପ୍ରକାଶିତ ପୁସ୍ତକ ତାଲିକା :**

**ଉପନ୍ୟାସ ଓ ଗଳ୍ପ :**

| | | |
|---|---|---|
| 1. | ଅଜବ ଦୁନିଆ | 1930 |
| 2. | ନୂତନ ଧର୍ମ | 1935 |
| 3. | ପ୍ରତିଭା | 1946 |
| 4. | ଟାଉଟର | 1946 |
| 5. | ଅବ୍ୟାପାର | 1946 |
| 6. | ତୃତୀୟ ପର୍ବ | 1977 |
| 7. | ୧୯୭୫ | 1979 |
| 8. | ତୃତୀୟ ପର୍ବ (ହିନ୍ଦୀ) | 1994 |

9 . ସ୍ୱର୍ଗରେ ଇମରଜେନ୍‌ସି (ଗଳ୍ପ) 1977

**ଆତ୍ମଜୀବନୀ :**

10 . ସାଧନାର ପଥେ 1948

11 . ଆରବ ସାଗରରୁ ଚିଲିକା : 1987

**ପ୍ରବନ୍ଧ ଓ ରମ୍ୟରଚନା :**

12 . ଗାଁ ମଜଲିସ୍ - 1ମ ଖଣ୍ଡ 1957

13 . ଗାଁ ମଜଲିସ୍ - 2ୟ ଖଣ୍ଡ 1972

14 . ଗାଁ ମଜଲିସ୍ - 3ୟ ଖଣ୍ଡ 1978

15 . ଗାଁ ମଜଲିସ୍ - 4ର୍ଥ ଖଣ୍ଡ 1981

16 . ଗାଁ ମଜଲିସ୍ - 5ମ ଖଣ୍ଡ : 1985

17 . ଦଶବର୍ଷର ଓଡ଼ିଶା : 1935

18 . ଗାନ୍ଧିଜୀ ଓ ଓଡ଼ିଶା : 1969

19 . ଓଡ଼ିଶାରେ ସାଧୁସଙ୍ଗ : 1994

20 . ଶେଷ ଅଶ୍ରୁ (ଏକାଙ୍କିକା ଓ ଗଦ୍ୟ) 1948

**କାବ୍ୟକବିତା ଓ କାବ୍ୟନାଟିକା :**

21 . ନିଗଡ଼ ନିସ୍ୱନ 1947

22 . ପୁଣ୍ୟାତ୍ମା ଗୋପବନ୍ଧୁ, ଡ଼ଷାଭାଇ : 1928

23. ପଲାସୀ ଅବସାନେ (କାବ୍ୟ) 1930

24 . ବାଲ୍ମିକୀ ରାମାୟଣ, ଶ୍ରୀମଦ୍ ଭଗବତ ଗୀତା
(ଗଦ୍ୟାନୁବାଦ) 1930-32

25 . ଚାରିଚକ୍ଷୁ (କାବ୍ୟ) 1942-45

26 . କାବ୍ୟ ନାଟିକା 1947

27 . ଜୀବନ ସମସ୍ୟା 1947

28 . ଛାୟା ପଥର ଯାତ୍ରୀ (କବିତା) 1956

29 . ଆନନ୍ଦ ସଂଧାନେ (କବିତା) 1981

**ନାଟକ ଓ ଏକାଙ୍କିକା :**

30 . ସ୍ୱରାଜ ସାଧନ (ନାଟକ) 1930-31

31 . ଯୁଗ ସଂକେତ (ଏକାଙ୍କିକା ସଂଗ୍ରହ) 1990

32 . ରୂପାନ୍ତର 1953

33 . ଇତିହାସର ପରିଚୟ 1949

34 . ଗନ୍ତାଘର 1950

35 . ବାସ୍ତବିକା 1950

| | | |
|---|---|---|
| 36 . | ମୁକ୍ତି ଓ ମୁକ୍ତ | 1950 |
| 37 . | ପ୍ରବଞ୍ଚନା | 1953 |
| 38 . | ଯୁଗ ସଂକେତ | 1953 |
| 39 . | ଗୁପ୍ତ ପ୍ରଣୟ | 1950 |
| 40 . | ମମତାର ଅନୁତାପ | 1950 |
| 41 . | ଉତ୍ତରୋତ୍ତର | |
| 42 . | ଅନ୍ଧଯୁଗ | |

**ଆଲୋଚନା ଓ ଅଭିଭାଷଣ :**

| | | |
|---|---|---|
| 43. | ସାହିତ୍ୟ ଆଲୋଚନା | 1981 |
| 44. | ବିଷୁବ ଅଭିନନ୍ଦନ | 1987 |
| 45. | ସାହିତ୍ୟର ମାର୍ଗ ଉନ୍ମୋଚନ 1ମ ଖଣ୍ଡ | 1994 |
| 46. | ସାହିତ୍ୟର ମାର୍ଗ ଉନ୍ମୋଚନ 2ୟ ଖଣ୍ଡ | 1994 |
| 47. | ସାହିତ୍ୟର ମାର୍ଗ ଉନ୍ମୋଚନ 3ୟ ଖଣ୍ଡ | 1994 |

**ଶିଶୁ-କିଶୋର ସାହିତ୍ୟ :**

48 . ଶ୍ରୀ ଗଣେଶଙ୍କ ପାଠପଢ଼ା

49 . ବିଷ୍ଣୁପୁରର ଭିତିରି କଥା

**ଅନ୍ୟାନ୍ୟ ରଚନା :**

| | | |
|---|---|---|
| 50. | Beginning of the End | 1974 |
| 51. | While serving My Nation- Recolletion of a Congress Man | 1986 |
| 52. | Gandhi - The Political Leader | 1965 |

**ସଂପାଦିତ ସଂବାଦ ପତ୍ର ଓ ପତ୍ର ପତ୍ରିକା :**

ମଳୟ, ତଷ୍ଟବିନ (ଇଂରାଜୀ), ସ୍ୱରାଜ୍ୟ ସମାଚାର, ପ୍ରଜାତନ୍ତ, ଦି ଇଷ୍ଟର୍ଣ୍ଣ ଟାଇମସ୍, ଝଙ୍କାର ଓ ମୀନା ବଜାର ।

(ଗ) ଅନୁଷ୍ଠାନ :

ପ୍ରଜାତନ୍ତ୍ର ପ୍ରଚାର ସମିତି, ବିଷୁବ ମିଳନ

(ଘ) ଉପାଧି :

ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ସମ୍ମାନସୂଚକ ପି. ଏଚ୍. ଡ଼ି

ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡି. ଲିଟ୍

ସାଗର ବିଶ୍ୱବିଦ୍ୟାଳୟରୁ ପି. ଏଚ୍. ଡ଼ି

(ଙ) ସହାୟକ ଗ୍ରନ୍ଥସୂଚୀ :

1. ସାଧନାର ପଥେ
2. ଓଡ଼ିଶା ଇତିହାସ
3. ଗାଁ ମଜଲିସ୍, 1ମ ଠାରୁ 5ମ
4. ସାହିତ୍ୟର ମାର୍ଗ ଉନ୍ମୋଚନ - 1ମ, 2ୟ ଓ 3ୟ
5. Gandhi - The Political Leader
6. While serving My Nation : Recolletion of a Congress Man
7. ଦଶବର୍ଷର ଓଡ଼ିଶା
8. ମହତାବଙ୍କର ସମସ୍ତ ଉପନ୍ୟାସ, ଗଳ୍ପ, କାବ୍ୟ, ନାଟିକା
9. ପ୍ରଜାତନ୍ତ୍ର ରଜତ ଜୟନ୍ତୀ ବିଶେଷାଙ୍କ
10. ପ୍ରଜାତନ୍ତ୍ର ସାପ୍ତାହିକୀ - 13 - 1 - 1987
11. ପ୍ରଜାତନ୍ତ୍ର ସୁବର୍ଣ୍ଣ ଜୟନ୍ତୀ ସ୍ମାରକ ଗ୍ରନ୍ଥ
12. ମହତାବ ସୁବର୍ଣ୍ଣ ଜୟନ୍ତୀ ଅଭିନନ୍ଦନ ଗ୍ରନ୍ଥ
13. ସାହିତ୍ୟସାଧକ ମହତାବ - ଡ଼କ୍ଟର ରମାକାନ୍ତ ବେହେରା
14. ଉତ୍କଳର ଅର୍ଦ୍ଧଶତାବ୍ଦୀର ଇତିହାସ ଓ ତହିଁରେ ମୋ ସ୍ଥାନ - ଗୋଦାବରୀଶ ମିଶ୍ର
15. ଆତ୍ମଜୀବନୀ - ପଣ୍ଡିତ ନୀଳକଣ୍ଠ ଦାସ
16. ସ୍ମୃତି ଅନୁଭୂତି - ନୀଳମଣି ରାଉତରାୟ
17. ଶ୍ରୀ ନବକୃଷ୍ଣ ଚୌଧୁରୀ - ଏକ ଜୀବନୀ - ଚିତ୍ତରଞ୍ଜନ ଦାସ
18. ଅନିର୍ବାଣ - ପଦ୍ମଚରଣ ନାୟକ
19. ଝଙ୍କାର - ଫେବୃୟାରୀ 1987
20. ଓଡ଼ିଶାର ଷ୍ଟିନ୍ ବୋଲର - ଫତୁରାନନ୍ଦ
21. Harekrushna Mahatab and freedom struggle(1920-1947)-Somachand.
22. Harekrushna Mahatab - Prof. M.N.Das & Dr. C. P. Nanda
23. କୋଣାର୍କ- 114 ସଂଖ୍ୟା (ଅଗଷ୍ଟ-ଅକ୍ଟୋବର 1999) - ଓଡ଼ିଶା ସାହିତ୍ୟ ଏକାଡେମୀ ।
24. ପଥ ଓ ପୃଥିବୀ - ସୁରେନ୍ଦ୍ର ମହାନ୍ତି
25. ଆଧୁନିକତାର 'କ' 'ଖ' 'ଗ' ଓ ଅନ୍ୟାନ୍ୟ ଆଲୋଚନା - ଚିନ୍ତାମଣି ବେହେରା
26. ମୋ ଜୀବନ ସଂଗ୍ରାମ - ଅର୍ଦ୍ଧ ଶତାବ୍ଦୀର ସମାଜବାଦୀ ଆନ୍ଦୋଳନର କାହାଣୀ - ସୁରେନ୍ଦ୍ର ନାଥ ଦ୍ୱିବେଦୀ
27. ଭାରତ ଆବିଷ୍କାର - ପଣ୍ଡିତ ଜବାହରଲାଲ ନେହେରୁ
28. ହରେକୃଷ୍ଣ ମହତାବ - ବୈଷ୍ଣବଚରଣ ସାମଲ



ଡକ୍ଟର ହରେକୃଷ୍ଣ ମହତାବ (1899-1987) ଆଧୁନିକ ଓଡ଼ିଶାର ନିର୍ମାତା । ସେ ଏକାଧାରରେ ମହାନ୍ ସ୍ୱାଧୀନତାସଂଗ୍ରାମୀ, ରାଷ୍ଟ୍ରନାୟକ, ସମାଜସଂସ୍କାରକ, ଐତିହାସିକ, ସାମ୍ବାଦିକ ଓ ସାରସ୍ୱତ ସ୍ରଷ୍ଟା । ଓଡ଼ିଶାର ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଓ କେନ୍ଦ୍ରର କ୍ୟାବିନେଟ ମନ୍ତ୍ରୀ ଭାବରେ ନୂତନ ଓଡ଼ିଶା ଗଠନରେ ତାଙ୍କର ବଳିଷ୍ଠ ନେତୃତ୍ୱ ଅବିସ୍ମରଣୀୟ । ଓଡ଼ିଶାର ସାଧାରଣ ଜନତାକୁ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବାକୁ ଉଦ୍‌ବୁଦ୍ଧ କରିବାଠାରୁ ସ୍ୱାଧୀନତା ପରବର୍ତ୍ତୀ କାଳରେ ଏକ ପୁରୋଦୃଷ୍ଟିସଂପନ୍ନ ରାଷ୍ଟ୍ରନିର୍ମାତା ଭାବେ ଓଡ଼ିଶାକୁ ସାରା ଦେଶରେ ପରିଚିତ କରାଇବା, ସମୃଦ୍ଧ କରାଇବା ତଥା 'ପ୍ରଜାତନ୍ତ୍ର ପ୍ରଚାର ସମିତି' ମାଧ୍ୟମରେ ଏକ ସାଂସ୍କୃତିକ ପରିମଣ୍ଡଳ ସୃଷ୍ଟି କରାଇବାରେ ତାଙ୍କର ସକ୍ରିୟ ଭୂମିକା ଓଡ଼ିଶା ଇତିହାସରେ ଚିରଦିନ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିବ । ତାଙ୍କ କର୍ମମୟ ଜୀବନର ଇତିହାସ ହିଁ ତତ୍କାଳୀନ ଓଡ଼ିଶାର ଇତିହାସ । ପୁସ୍ତକଟିରେ ଡକ୍ଟର ମହତାବଙ୍କ ସାମଗ୍ରିକ ବ୍ୟକ୍ତିତ୍ୱର ଅନୁଶୀଳନ କରାଯାଇଛି ।

ଲେଖକ ଶ୍ରୀ ଗୌରୀବନ୍ଧୁ କର (1948) ଓଡ଼ିଆ ଭାଷାରେ ଜଣେ ବିଶିଷ୍ଟ ପ୍ରାବନ୍ଧିକ, ସାମ୍ବାଦିକ, ଜୀବନୀଲେଖକ ଓ ଅନୁବାଦକ ଭାବେ ସମ୍ମାନିତ । ବିବେକାନନ୍ଦ, ଗାନ୍ଧୀ ଓ ମାର୍କ୍‌ସଙ୍କ ଦର୍ଶନକୁ ଆଧାର କରି ତାଙ୍କର କେତୋଟି ପୁସ୍ତକ ପ୍ରକାଶିତ ହୋଇଛି । ସେ ସଂପ୍ରତି ଜଣେ ଶ୍ରମିକନେତା ଭାବେ ସେମାନଙ୍କ ସମସ୍ୟା ଓ ତା'ର ସମାଧାନ କର୍ମରେ ଭୁବନେଶ୍ୱରଠାରେ ନିୟୋଜିତ ।



ଟ. 55.00

ISBN 81-237-4475-7

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ